# ଯାଜପୁର
# ବିରଜା କ୍ଷେତ୍ର ପରିକ୍ରମା



—ଲେଖକ—
ପଣ୍ଡିତ ବୈଷ୍ଣବ ଚରଣ ଦାଶ
ସାହିତ୍ୟାର୍ଣ୍ଣ

# ଯାଜପୁର ବିରଜାକ୍ଷେତ୍ର ପରିକ୍ରମା


— ଲେ ଖ କ —

ପଣ୍ଡିତ ଶ୍ରୀ ବୈଷ୍ଣବ ଚରଣ ଦାଶ

ସାହିତ୍ୟାଚାର୍ଯ୍ୟ

ଚଣ୍ଡେଶ୍ୱର, ପୋ : ଦେବୀଦ୍ୱାର, ଯାଜପୁର

କଟକ

# ଯାଜପୁର ବିରଜାକ୍ଷେତ୍ର ପରିକ୍ରମା

ଲେଖକ
ପଣ୍ଡିତ ଶ୍ରୀ ବୈଷ୍ଣବ ଚରଣ ଦାଶ
ସାହିତ୍ୟାଚାର୍ଯ୍ୟ

ପ୍ରକାଶିକା
ଶ୍ରୀମତୀ ସରୋଜିନୀ ଦାଶ
C/o ଶ୍ରୀ ଶ୍ୟାମା ଚରଣ ଦାଶ
ଚଣ୍ଡେଶ୍ୱର, ପୋ : ଦେବୀଦ୍ୱାର
କଟକ

ମୁଦ୍ରଣ—
କଲ୍ୟାଣ ପ୍ରେସ
କଲ୍ୟାଣନଗର, କଟକ-୩



ପ୍ରଥମ ସଂସ୍କରଣ—୧୯୭୯
ଦ୍ୱିତୀୟ ସଂସ୍କରଣ—୧୯୮୩

ମୂଲ୍ୟ—୧୦ ଟଙ୍କା

# ଉତ୍ସର୍ଗ ପତ୍ର

ବାଲ୍ୟକାଳରୁ ଯାହାଙ୍କ ଅନାବିଳ ସ୍ନେହ, ଶ୍ରଦ୍ଧା କରୁଣାସିକ୍ତ ପରିବେଶ ମଧ୍ୟରେ ଲାଳିତ ପାଳିତ ହୋଇ ସଂସାର କ୍ଷେତ୍ରରେ ପୂର୍ଣ୍ଣ ବିଚରଣ କରିବାର ଶକ୍ତି ସଞ୍ଚୟ ନ କରୁଣୁ ଯେ ମୋତେ ଅନାଥ କରି ଅପ୍ରାପ୍ତ ବୟସରେ ଇହଲୀଳା ସାଙ୍ଗ କଲେ, ଜୀବଦ୍ଦଶାରେ ଯାହାଙ୍କ ପାଦ ବନ୍ଦନା କରିବା ସୁଯୋଗରୁ ବଞ୍ଚିତ ହେଲି, ଯାହାଙ୍କ ଅଲକ୍ଷିତ ଆଶୀର୍ବାଦ ପରମ୍ପରା-ବଳରେ ଜ୍ଞାନାଲୋକର ରେଖାମାତ୍ର ଲାଭ କରି ଜନସମାଜରେ ଯଥାତଥା ତିଷ୍ଠି ପାରୁଛି, ସେହି ପରମାରାଧ୍ୟ ପୂଜ୍ୟପାଦ ଋଷିପ୍ରତିମ ପିତୃଦେବ ପଣ୍ଡିତ ସ୍ୱର୍ଗତ କପିଳେଶ୍ୱର ଦାଶ ମହୋଦୟଙ୍କ କରକମଳରେ ମୋର ଏହି କ୍ଷୁଦ୍ର ପବିତ୍ର 'ବିରଜାକ୍ଷେତ୍ର ପରିକ୍ରମା' ନାମକ ପୁସ୍ତକଟିକୁ ପ୍ରଗାଢ଼ ଭକ୍ତିର ସହିତ ସାଶ୍ରୁନୟନରେ ଉତ୍ସର୍ଗ କଲି । ଇତି ।

ଅଧମପୁତ୍ର
ଲେଖକ



**ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ,** ଏମ୍. ଏ., ଡି. ଫିଲ୍.
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଇତିହାସ-
ବିଭାଗର ଭୂତପୂର୍ବ ପ୍ରଫେସର (ପଦ୍ମଶ୍ରୀ)

ପଣ୍ଡିତ ଶ୍ରୀ ବୈଷ୍ଣବ ଚରଣ ଦାଶ, ସାହିତ୍ୟାଚାର୍ଯ୍ୟଙ୍କ 'ଯାଜପୁର ବିରଜାକ୍ଷେତ୍ର ପରିକ୍ରମା'ର ପାଣ୍ଡୁଲିପିଟିକୁ ମୋଟାମୋଟି ଭାବରେ ପଢି-ସାରି ମନେମନେ ଭାବିଲି ଯେ ବିରଜାକ୍ଷେତ୍ର ସମ୍ବନ୍ଧରେ ମୁଁ ପ୍ରକୃତରେ କେତେ ଅଳ୍ପ କଥା ଜାଣେ । ୧୯୭୩ରେ ଯଦି ଏପରି ପୁସ୍ତକଟିଏ ପାଇଥାନ୍ତି, ତେବେ ଯାଜପୁରର ନରସିଂହ ଚଉଧୁରୀ ମହାବିଦ୍ୟାଳୟରେ ମୁଁ ଯେଉଁ ପ୍ରଥମ ବକ୍ତୃତାମାଳା ଦେଲି ଏବଂ ପରେ ଯାହା ପୁସ୍ତକାକାରରେ ପ୍ରକାଶିତ ହେଲା, ସେଥିରେ ମୁଁ ଆହୁରି ଅନେକ ବିଷୟ ଲେଖି ପାରିଥାନ୍ତି । ମୁଁ ବିରଜାକ୍ଷେତ୍ର ଏକାଧିକ ଥର ଦେଖିଥିଲେହେଁ ଏହି କ୍ଷେତ୍ର ସହିତ ମୋର ଘନିଷ୍ଠ ପରିଚୟ ନାହିଁ । ପଣ୍ଡିତ ମହାଶୟଙ୍କ ଏହା ସହିତ ଯେଉଁ ଘନିଷ୍ଠ ପରିଚୟ ଅଛି ଏବଂ ଏହି ପରିଚୟରୁ ତାଙ୍କର ଯେଉଁ ଦୀର୍ଘ ଅଭିଜ୍ଞତା ଜାତ ହୋଇଛି, ତାହାରି ବଳରେ ସେ ଏ ମହାକ୍ଷେତ୍ର ସମ୍ବନ୍ଧୀୟ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ବିବରଣୀ ଦେଇଛନ୍ତି, ତାହା ମୁକ୍ତିକାମୀ, ଧାର୍ମିକ, ଦର୍ଶକ, ପର୍ଯ୍ୟଟକ, ପ୍ରତ୍ନତାତ୍ତ୍ୱିକ, ଐତିହାସିକ ଇତ୍ୟାଦି ସର୍ବଶ୍ରେଣୀର ବ୍ୟବହାରରେ ଆସିବ । ମୁଁ ଏହି ପୁସ୍ତକର ବହୁଳ ପ୍ରଚାରର ଆଶା କାମନା କରୁଛି ।

୨୯ । ୧୧ । ୧୯୭୭

**କୃଷ୍ଣଚନ୍ଦ୍ର ପାଣିଗ୍ରାହୀ**

# ଅଭିମତ

ବେଦ ମହାଭାରତ ବିଖ୍ୟାତ ଶାକ୍ତପୀଠ ଯାଜପୁରର ମହାନ ପରମ୍ପରା, ଐତିହ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ, ଦେବଦେବୀ, ମଠ, ମନ୍ଦିର ପର୍ବପର୍ବାଣୀ ବିଷୟରେ ସମ୍ୟକ୍ ଧାରଣା ଓ ଜ୍ଞାନ ଲାଭ ପାଇଁ ଏକ ତଥ୍ୟ-ସମ୍ବଳିତ ସହାୟକ ଗ୍ରନ୍ଥର ଆବଶ୍ୟକତା ଯେ ସମସ୍ତଙ୍କ ପାଇଁ ରହିଛି, ଏଥିରେ ସନ୍ଦେହ ନାହିଁ । ଅନୁସନ୍ଧିତ୍ସୁ ଭ୍ରମଣକାରୀ, ଗୁଣଗ୍ରାହୀ, ଦର୍ଶକ, ପର୍ଯ୍ୟଟକ ଓ ଯାତ୍ରୀ ସେମାନଙ୍କ ସ୍ୱଳ୍ପ ଅବସ୍ଥିତିକାଳ ମଧ୍ୟରେ ବହୁ ତଥ୍ୟ ସଂଗ୍ରହ ଅଭିଳାଷ ପୋଷଣ କରିଥାନ୍ତି, କିନ୍ତୁ ପାରନ୍ତି ନାହିଁ । ସେମାନଙ୍କ ଇଚ୍ଛା ଅପୂର୍ଣ୍ଣ ଓ ଯାତ୍ରା ଅସମ୍ପୂର୍ଣ୍ଣ ରହିଯାଏ, ଆଉ ଅମୀମାଂସିତ ହୋଇ ରହିଯାଏ ଅନେକ ପ୍ରଶ୍ନ ଓ ସନ୍ଦେହାଚ୍ଛନ୍ନ ସମସ୍ୟା ।

ଏହି ପରିପ୍ରେକ୍ଷୀରେ ଗ୍ରନ୍ଥକାର ସାହିତ୍ୟାଚାର୍ଯ୍ୟ ପଣ୍ଡିତ ଶ୍ରୀ ବୈଷ୍ଣବ ଚରଣ ଦାଶଙ୍କ 'ଯାଜପୁର ବିରଜାକ୍ଷେତ୍ର ପରିକ୍ରମା' ଏକ ଅଭିନବ ଏବଂ ସାର୍ଥକ ସୃଷ୍ଟି । ବିରଜାକ୍ଷେତ୍ରର ଅଗଣିତ ନରନାରୀ ତଥା ଦେଶ ବିଦେଶର ସମସ୍ତ ଅନୁସନ୍ଧିତ୍ସୁ ଦର୍ଶକ, ପର୍ଯ୍ୟଟକ, ଗବେଷକ ଓ ଐତିହାସିକଙ୍କୁ ଏହି ଗ୍ରନ୍ଥ ଯେ ବହୁ ଉପାଦେୟ ଜ୍ଞାତବ୍ୟ ତଥ୍ୟ ଯୋଗାଇ-ବାରେ ସହାୟକ ହେବ, ଏଥିରେ ସନ୍ଦେହ ନାହିଁ । ଏହା ପୂର୍ବରୁ ଏଭଳି ଉଦ୍ୟମ ଯେ ହୋଇନାହିଁ ତାହା ନୁହେଁ ; କିନ୍ତୁ ପଣ୍ଡିତ ମହାଶୟ ନିଜର କଠୋର ଅଧ୍ୟବସାୟ, ଅକ୍ଳାନ୍ତ ଉଦ୍ୟମ ଏବଂ ସର୍ବସ୍ୱଦାନର ସାଧନା ଫଳରେ ଗ୍ରନ୍ଥଟିକୁ ସୁନିୟନ୍ତ୍ରିତ, ସର୍ବ ତଥ୍ୟ ସମ୍ବଳିତ ଏବଂ ସର୍ବାଙ୍ଗସୁନ୍ଦର କରି-ପାରିଛନ୍ତି । ବାରୁଣୀ, ମହାବାରୁଣୀ, ମହାମହା ବାରୁଣୀ, ମଧୁବାରୁଣୀ ପଞ୍ଚନୃସିଂହ, ସପ୍ତମାତୃକା, ସପ୍ତରେଖା ପରିଚୟ, ଅଷ୍ଟଭୈରବ, ଅଷ୍ଟଚଣ୍ଡୀ, ଅଷ୍ଟଶକ୍ତି, ନବଦୁର୍ଗା, ଦ୍ୱାଦଶଗଣେଶ, ସିଦ୍ଧଗଣେଶ, ୧୦୮ ଶିବଲିଙ୍ଗ, ୬୮ ତୀର୍ଥ ମାହାତ୍ମ୍ୟ, ଯାଜପୁରର ପର୍ବପର୍ବାଣି, ବିରଜାଙ୍କର ଷୋଡ଼ଶବିଧି-

ପୂଜା ଓ ରଥ ଭ୍ରମଣ, ମହାଦ୍ୱୋମ, ମହିଷବଳି ତାତ୍ପର୍ଯ୍ୟ, ଗୟାନାଭି ଶ୍ରାଦ୍ଧ, ବରାହ ମନ୍ଦିର, ଦଶାଶ୍ୱମେଧ ଘାଟ, ବୈତରଣୀ ଗଙ୍ଗା ସମ୍ବନ୍ଧରେ ପୁରାଣ, କିମ୍ବଦନ୍ତୀ, ଇତିହାସ ଓ ଜନଶ୍ରୁତି ମଧ୍ୟରେ ଅତ୍ୟାବଶ୍ୟକୀୟ ଯୋଗାଯୋଗ ରକ୍ଷାକରି ସେ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ କରିଛନ୍ତି, ତାହା ଅତ୍ୟନ୍ତ ବୋଧଗମ୍ୟ ଓ ସନ୍ଦେହମୋଚକ ହୋଇଅଛି । ପୁସ୍ତକଟି ବହୁ ଦିନର ଏକ ଆବଶ୍ୟକତା ବହୁଭାବରେ ପୂରଣ କରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ମୁଁ ଏହି ଗ୍ରନ୍ଥର ବହୁଳ ପ୍ରସାର ଓ ଉତ୍ତରୋତ୍ତର ଉନ୍ନତି କାମନା କରେ ।

ଇତି

ଶ୍ରୀ ରଘୁନାଥ ମିଶ୍ର
ଅନୁବିଭାଗୀୟ ଅଫିସର
ଯାଜପୁର
ତା ୧୮ । ୨ । ୭୭

= + =

# ଅଭିମତ

ଯାଜପୁର ମଣ୍ଡଳର ବିଶିଷ୍ଟ ସଂସ୍କୃତ ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ଅନ୍ୟତମ ପଣ୍ଡିତ ଶ୍ରୀ ବୈଷ୍ଣବ ଚରଣ ଦାଶ, ସାହିତ୍ୟାଗ୍ରର୍ଯ୍ୟ ମହୋଦୟଙ୍କ ଲିଖିତ 'ଯାଜପୁର ବିରଜାକ୍ଷେତ୍ର ପରିକ୍ରମା' ପୁସ୍ତକଟିର ପାଣ୍ଡୁଲିପି ଖଣ୍ଡି ଆମୂଳଚୂଳ ପାଠକରି ବିଶେଷ ପ୍ରୀତ ହେଲି । ଐତିହ୍ୟପୂର୍ଣ୍ଣ ଯାଜପୁର ମଣ୍ଡଳର ପ୍ରାଚୀନ ଇତିହାସ ରଚନା କ୍ଷେତ୍ରରେ ଏହା ଯେ ଏକ ଅଭିନବ ଉଦ୍ୟମ, ଏଥିରେ ସନ୍ଦେହର ଅବକାଶ ନାହିଁ । ଅବଶ୍ୟ ଏହା ପୂର୍ବରୁ କେତେକ ମନୀଷୀ ବିରଜାକ୍ଷେତ୍ର ସମ୍ବନ୍ଧରେ କିଞ୍ଚିତ ଆଲୋକପାତ କରି ଯାଇଛନ୍ତି । କିନ୍ତୁ ଶ୍ରୀଯୁକ୍ତ ଦାଶ ମହୋଦୟଙ୍କ ଭଳି ପୁରାଣ, କିମ୍ବଦନ୍ତୀ ଓ ଇତିହାସ ମଧ୍ୟରେ ଏକ ଯୌକ୍ତିକ ସମ୍ବନ୍ଧ ରଖି ବିରଜା ତୀର୍ଥର ବିଭିନ୍ନ ବିଭବ ଉପରେ ପ୍ରମାଣ ସିଦ୍ଧ ଆଲୋଚନା କରିଯାଇ ପାରିନାହିଁ । ତେଣୁ ତୀର୍ଥ ଜିଜ୍ଞାସୁ ପାଠକମାନଙ୍କ ସନ୍ଦେହ ମୋଚନ ଦିଗରେ ଏହା ସେପରି ସହାୟକ ନୁହେଁ ।

ଇତିହାସର ଉପାଦାନଗୁଡ଼ିକ ମଧ୍ୟରେ ପୁରାଣ ଓ ଜନଶ୍ରୁତି ବା କିମ୍ବଦନ୍ତୀ ବିଶେଷ ଉଲ୍ଲେଖଯୋଗ୍ୟ । ସାହିତ୍ୟ କ୍ଷେତ୍ରରେ ପୁରାଣଗୁଡ଼ିକର ସ୍ଥାନ ଖୁବ୍ ଉଚ୍ଚରେ । କିନ୍ତୁ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଏ ଗୁଡ଼ିକର ସ୍ଥାନ କେଉଁଠି, ତାହା ନିର୍ଣ୍ଣୟ କରିବା କଠିନ ବ୍ୟାପାର । ଯାହା ହେଲେବି ପୁରାଣକୁ ଇତିହାସରୁ ସମ୍ପୂର୍ଣ୍ଣ ରୂପେ ବାଦଦେଇ ହେବ ନାହିଁ । କାରଣ ପୁରାଣ ମଧ୍ୟରେ ଇତିହାସର ଅନେକ ତଥ୍ୟ ପ୍ରଚ୍ଛନ୍ନ ଭାବରେ ନିହିତ । ପ୍ରାଚୀନ ଇତିହାସର ସନ୍ଦେଶ ଏହି ପୁରାଣମାନଙ୍କରୁ ହିଁ ବହୁଳ ଭାବରେ ମିଳିଥାଏ । ସୁତରାଂ ଇତିହାସ ଓ ପୁରାଣ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ତେଣୁ କୌଣସି ରାଜ୍ୟ ବା କ୍ଷେତ୍ରର ପ୍ରାଚୀନ ଇତିହାସ ପର୍ଯ୍ୟାଲୋଚନା ସମୟରେ ତତ୍‌ସଂପୃକ୍ତ ପୌରାଣିକ ତଥ୍ୟାବଳୀର ଅବତାରଣା କରିବା ଏକାନ୍ତ ବିଧେୟ । ଶ୍ରୀଯୁକ୍ତ ଦାଶ ।ଶୟ ତାଙ୍କର ଏହି ପୁସ୍ତକ ରଚନା କ୍ଷେତ୍ରରେ ସେହି ପନ୍ଥା ହିଁ ଗ୍ରହଣ କରିଛନ୍ତି । ବିରଜା କ୍ଷେତ୍ରସ୍ଥିତ ବିଭିନ୍ନ

ଦେବଦେବୀଙ୍କ ମାହାତ୍ମ୍ୟ ପ୍ରତିପାଦନ କରିବାକୁ ଯାଇ ସେ ମହାଭାରତ, କପିଳସଂହିତା, ବ୍ରହ୍ମାଣ୍ଡ ପୁରାଣ ଓ ଚଣ୍ଡୀ ଇତ୍ୟାଦି ବହୁ ପ୍ରାଚୀନ ସଂସ୍କୃତ ରଚନାରୁ ପ୍ରମାଣସିଦ୍ଧ ଶ୍ଳୋକମାନ ଉଦ୍ଧାର କରି ସାଧାରଣ ପାଠକମାନଙ୍କ ବୋଧଗମ୍ୟ ହେଲଭଳି ସରଳ ଓ ସାବଲୀଳ ଭାଷାରେ ସେଗୁଡ଼ିକର ବ୍ୟାଖ୍ୟା କରି ଅଛନ୍ତି । ଅନେକ କ୍ଷେତ୍ରରେ ସେ ଏ ସ୍ଥାନର ଐତିହାସିକ ସତ୍ୟତା ପ୍ରତିପାଦନ କରିବାକୁ ଯାଇ ଜନଶ୍ରୁତି ବା କିମ୍ବଦନ୍ତୀର ଆଶ୍ରୟ ମଧ୍ୟ ନେଇଛନ୍ତି । ଉଦାହରଣ ସ୍ୱରୂପ, ଅଗସ୍ତୀଶ୍ୱରଙ୍କ ସମ୍ମୁଖ ଭାଗରେ 'ଜାଉନ୍ଥି, ମଉନ୍ଥି' ନାମକ ଦୁଇଟି କ୍ଷୁଦ୍ର ପୁଷ୍କରିଣୀ ଦେଖାଯାଏ । ଏହି ପୁଷ୍କରିଣୀରେ ସ୍ନାନ କଲେ ନାରୀମାନଙ୍କର ମୃତବତ୍ସା ଦୋଷ ବିନଷ୍ଟ ହୁଏ । ଅର୍ଥାତ୍ ପ୍ରଥମେ 'ମଉନ୍ଥି' ପୋଖରୀରେ ସ୍ନାନ କରି ତତ୍ପରେ 'ଜାଉନ୍ଥି' ପୋଖରୀରେ ସ୍ନାନ କଲେ ସେମାନଙ୍କର ସନ୍ତାନ ଦୀର୍ଘଜୀବୀ ହୁଅନ୍ତି ବୋଲି ଲୋକେ କହନ୍ତି ।

'ଯାଜପୁର ବିରଜାକ୍ଷେତ୍ର ପରିକ୍ରମା' ପୁସ୍ତକ ଖଣ୍ଡି ବିରଜାକ୍ଷେତ୍ରର ଏକ ସୁପରିକଳ୍ପିତ ଭୌଗୋଳିକ ମାନଚିତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ଭୌଗୋଳିକ ମାନଚିତ୍ରରେ ଯେପରି ଦେଶ ବା ମହାଦେଶମାନଙ୍କ ମଧ୍ୟରେ ଥିବା ବିଭିନ୍ନ ସ୍ଥାନଗୁଡ଼ିକ ଯଥା ସ୍ଥାନରେ ପ୍ରଦର୍ଶିତ ହୋଇଥାନ୍ତି, ଠିକ୍ ତଦନୁରୂପ ଏହି ପୁସ୍ତକରେ ବିରଜାକ୍ଷେତ୍ରସ୍ଥିତ ବିଭିନ୍ନ ତୀର୍ଥ ଓ ଦେବ ଦେବୀ ପୀଠଗୁଡ଼ିକର ଅବସ୍ଥିତିକୁ ସେଗୁଡ଼ିକର ଦୂରତାନୁସାରେ ଦର୍ଶା– ଯାଇଛି । ଏହି ପୁସ୍ତକ ଖଣ୍ଡିକୁ ସମ୍ବଳ କରି ଯେକୌଣସି ତୀର୍ଥଯାତ୍ରୀ ଅନାୟାସରେ ବିରଜାକ୍ଷେତ୍ରରେ ଥିବା ପ୍ରତ୍ୟେକ ତୀର୍ଥ ସ୍ଥଳୀକୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ତାହାର ମାହାତ୍ମ୍ୟ ସମ୍ବନ୍ଧରେ ସମ୍ୟକ ଜ୍ଞାନ ଅର୍ଜନ କରିପାରିବେ ।

ମୁଁ କେତେ ବର୍ଷ ପୂର୍ବେ ଏଠାକାର ନରସିଂହ ଚୌଧୁରୀ ମହାବିଦ୍ୟାଳୟରେ ଇତିହାସ ଅଧ୍ୟାପକ ଭାବରେ ଯୋଗ ଦେଇ ଏ ସ୍ଥାନର ଐତିହାସିକ ପୃଷ୍ଠଭୂମି କ'ଣ, ତାହା ଜାଣିବା ନିମିତ୍ତ ମୋର ପ୍ରବଳ ଉତ୍କଣ୍ଠା ଜାତ ହୋଇଥିଲା । ସେଥିପାଇଁ ମୁଁ ଏ କ୍ଷେତ୍ର ସମ୍ବନ୍ଧରେ ଲିଖିତ କେତେକ

ପୁସ୍ତକ ପାଠ କରିଥିଲି, କିନ୍ତୁ ସେଗୁଡ଼ିକରେ ପ୍ରମାଣ ସିଦ୍ଧ ବିଶଦ ବିବରଣୀ ନ ପାଇ ନିରାଶ ହୋଇଥିଲି । ଏଥିପାଇଁ ମଧ୍ୟ ମୁଁ ଏଠାକାର ଦେବଦେବୀ-ପୂଜକମାନଙ୍କ ସହିତ ଆଲୋଚନା କରି ଆଶାନୁରୂପ ଉତ୍ତର ନ ପାଇ ନୀରବ ରହିବାକୁ ବାଧ୍ୟ ହୋଇଥିଲି । ସୌଭାଗ୍ୟ ବଶତଃ ଶ୍ରୀଯୁକ୍ତ ଦାଶ ମହାଶୟ-ଙ୍କର ଏ ପୁସ୍ତକ ଖଣ୍ଡି ପାଠ କରିବା ଦ୍ୱାରା ସେ ସମସ୍ତ ସନ୍ଦେହ ସ୍ୱତଃ ଅପସରି ଯାଇଛି । ଏ ପୁସ୍ତକ ଖଣ୍ଡି ଏହିପରି ବହୁ ଅନୁସନ୍ଧିତ୍ସୁ ଓ ଜିଜ୍ଞାସୁ [illegible] ଓ ପର୍ଯ୍ୟଟକଙ୍କ ସନ୍ଦେହ ମୋଚନ କରିବାରେ ଯେ ପରମ ସହାୟକ ହେବ, ଏଥିରେ ମୋର ଟିକେ ହେଲେ ସନ୍ଦେହ ନାହିଁ । ମୁଁ ଏହାର ଉତ୍ତରୋତ୍ତର ବହୁଳ ପ୍ରସାର ଓ ପରିପ୍ରଚାରର କାମନା କରେ । ଇତି ।

ଶ୍ରୀ ଅକ୍ଷୟ କୁମାର ସିଂହ
ଅଧ୍ୟାପକ, ଇତିହାସ ବିଭାଗ
ନରସିଂହ ଚୌଧୁରୀ କଲେଜ
ଯାଜପୁର

୧୯୭୬ ଅକ୍ଟୋବର
ବିଜୟାଦଶମୀ



ଭୂଦାରେ ବୈତରଣ୍ୟାସ୍ତଟବଟ ନିକଟେମୁକ୍ତିଦୋ ମାଧବେଶଃ
ବସ୍ତ୍ରାଗଂଶାବଟାରେ ଦଶଚୂଢ଼ବଦାତ ଶ୍ଚଣ୍ଡିକାଟଣ୍ଡ୍ରେଲେଶଃ ।
ସୋମେଶୋ ଲିଙ୍ଗରାଜୋ ଜନକଜନି ବରଜା ଶୂଳଲିଙ୍ଗ୍‌ ଲିଦସ୍ତା
ଯେ ଗୃନେ୍ୟ ଷେତ୍ରପାଲାଃ ପଶୁପତିସହିତାଃ କୁର୍ବନ୍ତୁ ତେ ମଙ୍ଗଳମ୍ ॥

ଶୁଭାନୁଧ୍ୟାୟୀ
**ଗ୍ରନ୍ଥକାର**

## —ପୂର୍ବାଭାସ—

ଏହି ଅକିଞ୍ଚନ ଗ୍ରନ୍ଥକାରର ବାସସ୍ଥାନ ଏହି ଯାଜପୁର ମଣ୍ଡଳର କୋରାଇଁ ଥାନା ଅନ୍ତର୍ଗତ ବୈତରଣୀ କୂଳସ୍ଥିତ ଘନଶ୍ୟାମପୁର ଶାସନ (ଡାକନାମ ଗନ୍ଧାରଆ)ରେ । ମୋର ପୂଜ୍ୟ ପିତୃଦେବ ୰ ପଣ୍ଡିତ କପିଳେଶ୍ୱର ଦାଶ କାବ୍ୟ, ବ୍ୟାକରଣ ତଥା ଜ୍ୟୋତିଃ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରି ସ୍ଥାନୀୟ ନିଃଶଙ୍କ ଚୌଧୁରୀଙ୍କ ପ୍ରଦତ୍ତ 'ବାଚସ୍ପତି' ଉପାଧିରେ ଭୂଷିତ ହୋଇଥିଲେ ।

ମୋର ୧୪ ବର୍ଷ ବୟସରେ ପିତାଙ୍କର ଅକାଳ ବିୟୋଗ ହେଲା । ତତ୍ପରେ ଏହି ଯାଜପୁରର ସୁନାମଧନ୍ୟ ବୈଦିକ ତାନ୍ତ୍ରିକ ନିଷ୍ଠାନିଷ୍ଠ ପ୍ରସିଦ୍ଧ ପୁରୋଧା ମୋର ପୂଜ୍ୟ ଶ୍ୱଶୁର ୰ ପଣ୍ଡିତ କପିଳେଶ୍ୱର ପତିଙ୍କ ଆନୁକୂଲ୍ୟରେ ସ୍ଥାନୀୟ ବିରଜା ଟୋଲରେ ଅଧ୍ୟୟନ କରି ସାହିତ୍ୟାଚାର୍ଯ୍ୟ ଉପାଧି ଲାଭ କଲି । ତତ୍ପରେ ନିଜ ଗ୍ରାମରେ ଦୁର୍ଗାମାଧବ ସଂସ୍କୃତ ଟୋଲ ନାମକ ଗୋଟିଏ ସଂସ୍କୃତ ଅନୁଷ୍ଠାନ ସ୍ଥାପନ କରି ସେଠାରେ କିଛି ଦିନ ରହି ସନ ୧୯୪୨ରେ ଅତ୍ରତ୍ୟ ବିରଜା ହାଇସ୍କୁଲରେ ସଂସ୍କୃତ ଶିକ୍ଷକ ରୂପେ ନିଯୁକ୍ତ ହେଲି । ସମୟେ ସମୟେ ବହୁ ବିଦେଶାଗତ ଯାତ୍ରୀ ତଥା ଗବେଷକମାନଙ୍କର ବ୍ରହ୍ମାକୁଣ୍ଡ, ଶୁଭସ୍ତମ୍ଭ, ବରାହ, ବିରଜା ପ୍ରଭୃତି ଦେବଦେବୀ ସମ୍ବନ୍ଧୀୟ ତୀର୍ଥ-ଜିଜ୍ଞାସା ମୋର ହୃଦୟକୁ ଆଲୋଡ଼ିତ କଲା ଏବଂ କ୍ରମେ ଏହି କ୍ଷେତ୍ର ବିଷୟକ ତତ୍ତ୍ୱ ଜିଜ୍ଞାସା ବଳବତ୍ତର ହେବାରୁ ମୁଁ କେତେକ ବୟୋଜ୍ୟେଷ୍ଠ ଅଭିଜ୍ଞ ବ୍ୟକ୍ତିଙ୍କୁ ପଚାରି କିଛି କିଛି ଟିପ୍ ଟିପ୍ ମୋର ପରମାରାଧ୍ୟ ପ୍ରାତଃ ସ୍ମରଣୀୟ ଗୁରୁଦେବ ୰ ପଣ୍ଡିତ ଜନାର୍ଦ୍ଦନ ଦାଶ, କାବ୍ୟତୀର୍ଥ ମହୋଦୟଙ୍କ ଦ୍ୱାରା ଉତ୍କଳ ଭାଷାରେ ଅନୂଦିତ ବ୍ରହ୍ମାଣ୍ଡ ପୁରାଣ ଅନ୍ତର୍ଗତ 'ବିରଜାକ୍ଷେତ୍ର ମାହାତ୍ମ୍ୟ' ପାଠ କରି ତହିଁରୁ ପାଇଥିବା କେତେକ ତଥ୍ୟ ତଥା କପିଳ ସଂହିତା ବର୍ଣ୍ଣିତ ତୀର୍ଥ ମାହାତ୍ମ୍ୟ, ଆଡ୍‌ଭୋକେଟ ଶ୍ରୀଯୁକ୍ତ ତାରାକାନ୍ତ ମିଶ୍ର, ବି ଏ. ବି. ଏଲ୍.ଙ୍କ ସଙ୍କଳିତ 'ବିରଜାକ୍ଷେତ୍ର' ମୋର ପୁସ୍ତକ ରଚନା ନିମିତ୍ତ କେତେକ ସ୍ଥଳରେ ପଥ ପ୍ରଦର୍ଶକ ହୋଇଅଛି ।

ଏହି କ୍ଷେତ୍ରଟି ଅତି ପ୍ରାଚୀନ ଇତିହାସ ତଥା ପୁରାଣ ଉପରେ ଆଧାରିତ ହୋଇଥିଲେ ମଧ୍ୟ ଅନ୍ୟାନ୍ୟ ପୁରୀ, କୋଣାର୍କ ପ୍ରଭୃତି ତୀର୍ଥ ପରି

ଏହି କ୍ଷେତ୍ରର ମାହାତ୍ମ୍ୟ ଜାଣିବା ପାଇଁ ସେପରି ପୂର୍ଣ୍ଣ ବିବରଣୀ ତଥା ତଥ୍ୟ ମୂଳକ କୌଣସି ସହାୟକ ପୁସ୍ତକ ନ ଥିବାରୁ ମୋ ସଂଗୃହୀତ ତଥ୍ୟ ସମସ୍ତଙ୍କୁ ପାଥେୟ କରି ମୁଁ ଏହି 'ଯାଜପୁର ବିରଜାକ୍ଷେତ୍ର ପରିକ୍ରମା' ପୁସ୍ତକଟିଏ ଲେଖିବାକୁ ଅଗ୍ରସର ହେଲି । ମୋର ଏ ଲେଖାରେ ଯେପରି ଶୈଳୀ, ପରିପାଟୀ, ଭାଷାଲାଳିତ୍ୟ ତଥା ଶବ୍ଦ ସଂଯୋଜନା ବିଶେଷ ଚିତ୍ତାକର୍ଷକ ହୋଇନାହିଁ, କେବଳ କେତେକ ତଥ୍ୟ ତଥା ନିର୍ଦ୍ଦେଶନାର ହିଁ ପ୍ରଦର୍ଶନ କରାଯାଇଛି ।

ଯେଉଁମାନଙ୍କଠାରୁ, ଯେଉଁ ଯେଉଁ ପୁସ୍ତକରୁ ମୁଁ ଏ ବିଷୟରେ ପ୍ରେରଣା ସାହାଯ୍ୟ ସହାନୁଭୂତି ପ୍ରଭୃତି ପାଇଅଛି, ସେମାନଙ୍କ ନିକଟରେ ମୁଁ ଚିରକୃତଜ୍ଞ ଓ ଚିର ଋଣୀ ।

ଏହି ପୁସ୍ତକଟିକୁ ଲୋକଲୋଚନ ଗୋଚରକୁ ଆଣିବା ପାଇଁ ଭୂତପୂର୍ବ ସ୍ଥାନୀୟ S. D. O. ତଥା ବିରଜା ମନ୍ଦିର ପରିଚାଳନା ସଭାର ଅଧ୍ୟକ୍ଷ ଶ୍ରୀଯୁକ୍ତ ରଘୁନାଥ ମିଶ୍ର ମହୋଦୟଙ୍କ ଶୁଭଦୃଷ୍ଟି ଆକର୍ଷଣ କଲି । ତାଙ୍କର ଅନୁରୋଧ କ୍ରମେ ନହରପୁର ନିବାସୀ ଶ୍ରୀଯୁକ୍ତ ହରି ସାମନ୍ତଙ୍କ ଯୋଗ୍ୟତମ ପୁତ୍ର ଶ୍ରୀଯୁକ୍ତ ନାରାୟଣ ଚନ୍ଦ୍ର ସାମନ୍ତ, ଏମ୍. ଏ. ମହୋଦୟ ସ୍ୱକୀୟ ଉଦାର ଗୁଣରେ ଏହାର ପ୍ରଥମ ଥର ପାଇଁ ପ୍ରକାଶନର ଦାୟିତ୍ୱ ବହନ କରିଥିଲେ ।

ଏଣୁ ଏହି ହୃଦୟଗ୍ରାହୀ ବ୍ୟକ୍ତିଙ୍କର ମହନୀୟ ଗୁଣ ନିକଟରେ ମୁଁ ବିଶେଷତଃ ଋଣୀ ଓ କୃତଜ୍ଞ । ଆହୁରି ମଧ୍ୟ ପ୍ରକାଶକଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଅଛି ।

ଏ ଖଣ୍ଡି ଯଦି ପ୍ରତ୍ୟେକ ତୀର୍ଥ ଜିଜ୍ଞାସୁଙ୍କର କଳ୍ପନା କଳୁଷ ସନ୍ଦେହ ମୋଚନ କରି କ୍ଷେତ୍ରସ୍ଥିତ ଦେବଦେବୀ, ରେଖା, ତୀର୍ଥ ପ୍ରଭୃତି ଜାଣିବାରେ ଓ ଦର୍ଶନ କରିବାରେ ପଥପ୍ରଦର୍ଶକ ପରି ହୋଇପାରେ, ତେବେ ମୋର ବହୁ ଦିନର ପ୍ରଚେଷ୍ଟା ଓ ପରିଶ୍ରମ ସାର୍ଥକ ହେଲା ବୋଲି ମନେ କରିବି । ଏହାର ପୁନଃ ପୁନଃ ସଂସ୍କରଣ ପାଇଁ ମୁଁ ଜଗଦମ୍ବା ଭଗବତୀ ମା' ବିରଜାଙ୍କ ପାଦପଦ୍ମରେ ସଭକ୍ତିକ କୃତାଞ୍ଜଳି ପ୍ରାର୍ଥନା କରେ । ଇତିଶମ୍ ।

ବିନୀତ

—ଗ୍ରନ୍ଥକାର—

# ଅର୍ଘ୍ୟ ସମର୍ପଣମ୍

ଗୋନାସିକା ପ୍ରସୂତାୟାଃ ବୈତରଣ୍ୟାଃ କୂଳେ ସ୍ଥିତଃ ।
'ଘନଶ୍ୟାମପୁର' ଏକଂ ଗ୍ରାମଃ କଟକ ବିଶ୍ରୁତଃ ॥
ଗ୍ରାମେଽସ୍ମିନ୍ ମେ ପିତା ଜାତଃ ହାରିତଗୋତ୍ରକୋଦ୍‌ଭବଃ ।
କପିଳଶର୍ମଣଃ ପୁତ୍ରଃ ଶୁଚିମାନ୍ ଗୁଣସଂଯୁତଃ ॥
ବିରଜାକ୍ଷେତ୍ରମାସାଦ୍ୟ ନିବାସମକରୋତ୍ତତଃ ।
ଶୁଭସ୍ତମ୍ଭସ୍ୟ ସମୀପେ ବାସୋଽୟଂ ସୁବିନିର୍ମିତଃ ॥
ନାମ୍ନା ବିରଜସଃ ଖ୍ୟାତେ ବିଦ୍ୟାଳୟେ ସୁବିଶ୍ରୁତେ ।
ସଂସ୍କୃତାଧ୍ୟାପନାର୍ଥାୟ ପିତା ମେ ସୁନିରୂପିତଃ ॥
ସଂସ୍କୃତସ୍ୟାଧ୍ୟୟନାର୍ଥଂ ପିତ୍ରା ଶ୍ୱଶୁରପ୍ରେରିତଃ ।
ଭକ୍ତ୍ୟଂ ନିବେଦୟାମାସ ଗୁରୁପାଦମୁପାଗତଃ ॥
ଗୁରୁରାସୀତ୍ ପିତୁଃକଳ୍ପୋ 'ଜନାର୍ଦ୍ଦନ' ଇତି ସ୍ମୃତଃ ।
ଭକ୍ତିମାନ୍ ଶୁଚିମାନ୍ ଦାନ୍ତଃ ବିଦ୍ୟାଭ୍ୟାସେ ସଦା ରତଃ ॥
ଗୁରୂଣାମନୁକମ୍ପାତଃ ଆଂଗ୍ଳେୟୋପାଧି ଭୂଷିତଃ ।
ଦ୍ୱାବିଂଶବର୍ଷପର୍ଯ୍ୟନ୍ତଂ 'ବିରଜା ବିଦ୍ୟାମନ୍ଦିରେ'
ତାତୋ ମେଽଧ୍ୟାପୟାମାସ ସ୍ୱକର୍ତ୍ତବ୍ୟ ପରାୟଣଃ ॥
ଗୃହୀତ୍ୱାବସରଂ ତାତଃ ପୁନର୍ନିଯୁକ୍ତିମାପ୍ତବାନ୍ ।
ସ୍ଥିତେ ବିରଜସଃ କ୍ଷେତ୍ରେ ସଂସ୍କୃତବିଦ୍ୟାମନ୍ଦିରେ ॥
ସ୍ୱର୍ଗସ୍ୟାରୋହଣଂ ଯାବତ୍ ତତ୍ରୈବ କର୍ମସଂସ୍ଥିତାଃ ।
କାବ୍ୟଶାସ୍ତ୍ରବିନୋଦେନ ଦଶସମ୍ବତ୍ସରାଃ ଗତାଃ ॥
ଯସ୍ମିନ୍ ଦେଶେ ବିରାଜନ୍ତେ କୃଷ୍ଣାର୍କ ପାର୍ବତୀଶ୍ୱରାଃ ।
ଯାତ୍ରିଣୋ ବହବୋଽପେତ୍ୟ କୁର୍ବନ୍ତି ତୀର୍ଥଦର୍ଶନମ୍ ॥
ଶିବଲିଙ୍ଗଂ ସମାକୀର୍ଣ୍ଣଂ କ୍ଷେତ୍ରଂ ଶକ୍ତିଭିଃ ରକ୍ଷିତମ୍ ।
ପାଂସୁସ୍ପର୍ଶନ ମାତ୍ରେଣ ଶକ୍ତିର୍ବୈ ଜାୟତେ ଧ୍ରୁବମ୍ ॥
ଦେବୀ ତୁ ବିରଜାନାମ୍ନୀ ବ୍ରହ୍ମଣାତ୍ର ପ୍ରତିଷ୍ଠିତା ।
ଅଭିପ୍ରେତାର୍ଥସିଦ୍ଧ୍ୟର୍ଥଂ ସୁରାସୁରୈଃ ସୁପୂଜିତା ॥

ଶ୍ୟାମାଙ୍ଗୀ ସିଂହମାରୂଢ଼ା ଦ୍ୱିଭୁଜା ଶୂଳଧାରିଣୀ ।
ପୂଜିତା ଯା ମହର୍ଷିଣ୍ଟା ଜେନ୍ନେ'ସ୍ମିନ୍ ମୋକ୍ଷକାଂକ୍ଷିଭିଃ ॥
ଇତିହାସ ପୁରାଣେଷୁ ଶାସ୍ତ୍ରେଷୁ ବିବିଧେଷୁ ଚ ।
ତତ୍ତ୍ୱଂ ଯନ୍ନିହିତଂ ଗୂଢଂ ଶକ୍ତିପୀଠାଦିବର୍ତ୍ତିନମ୍ ॥
ତଦେବ ସକଳଂ ସ୍ମୃତ୍ୱା ଗୃହୀତ୍ୱା ସାରମୁତ୍ତମମ୍ ।
କୃତଂ ତୁ 'ବିରଜାକ୍ଷେତ୍ର ଦର୍ଶନମେ'ତି ପୁସ୍ତକମ୍ ॥
ଜିଜ୍ଞାସୂନାଂ ହିତାର୍ଥାୟ ଶିଷ୍ୟାଣାମନୁବୋଧତଃ ।
ନାଭିକ୍ଷେତ୍ର ପ୍ରବୃତ୍ତ୍ୟର୍ଥଂ ପୁନଃ ସଂସ୍କରଣଂ କୃତମ୍ ॥
ଦ୍ୱାସପ୍ତତିତମେବର୍ଷେ ଲୀଲାମିହ ବିସର୍ଜୟନ୍ ।
ପାରଲୌକିକ ଭଦ୍ରାୟ ତାତୋ ମେ ଦିବଂ ଗତଃ ॥

ଚରଣାଶ୍ରିତଃ ପୁତ୍ରଃ
**ଶ୍ୟାମା ଚରଣ ଦାଶଃ**
ମୁଖ୍ୟାଧ୍ୟାପକଃ, ସଂସ୍କୃତବିଭାଗଃ
ରେଭେନ୍ସା ମହାବିଦ୍ୟାଳୟଃ

ତା ୨୭ । ୧୦ । ୮୨

# ସ୍ୱଗତୋକ୍ତି

ଯାଜପୁର ଓଡ଼ିଶାରେ ଅନ୍ୟତମ ପ୍ରସିଦ୍ଧ ତୀର୍ଥକ୍ଷେତ୍ର ରୂପରେ ପରିଗଣିତ । କପିଳସଂହିତାରେ କ୍ଷେତ୍ର ପରିଚୟ ବିଷୟରେ ଯେଉଁ ବର୍ଣ୍ଣନା ଉପଲବ୍ଧ ହୁଏ, ତନ୍ମଧ୍ୟରେ ପାର୍ବତୀକ୍ଷେତ୍ର ମଧ୍ୟ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ପାରିଛି । ଯଥା— ବର୍ଷାଣାଂ ଭାରତଃ ଶ୍ରେଷ୍ଠଃ

ଦେଶାନାମୁତ୍କଳଃ ସ୍ମୃତଃ ।
ଯତ୍ର କ୍ଷେତ୍ରେ ବିରାଜନ୍ତେ
କୃଷ୍ଣାର୍କପାର୍ବତୀହରାଃ ॥

ପାର୍ବତୀ ବିରଜାଦେବୀ ରୂପରେ ଏହି କ୍ଷେତ୍ରକୁ ଅଳଙ୍କୃତ କରିଅଛନ୍ତି । 'ପାର୍ବତୀ ମୂର୍ତ୍ତିମାସ୍ଥାୟ ଦେବୀ ଯତ୍ର ବିରାଜତେ ।'

ପୁଣ୍ୟତୋୟା ସ୍ୱଚ୍ଛନୀରା ବୈତରଣୀ ଏହି ତୀର୍ଥରେ ପ୍ରବାହିତ ହୋଇ ଏହାକୁ ପବିତ୍ର କରିବା ସଙ୍ଗେ ସଙ୍ଗେ ଏହି ତୀର୍ଥର ମାହାତ୍ମ୍ୟ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ମୋକ୍ଷକାମୀମାନଙ୍କୁ ଆକୃଷ୍ଟ କରୁଅଛି । ମହାଭାରତରେ ବର୍ଣ୍ଣିତ ଅଛି-- 'ତତୋ ବୈତରଣୀଂ ଗଚ୍ଛେତ୍ ସର୍ବପାପ ପ୍ରମୋଚନୀଂ'

ପିତୃପୁରୁଷମାନଙ୍କୁ ପିଣ୍ଡଦାନ କରିବା ନିମିତ୍ତ ସୁପ୍ରସିଦ୍ଧ ଗୟାତୀର୍ଥ ପରି ନାଭିଗୟା ତୀର୍ଥ ମଧ୍ୟ ପ୍ରସିଦ୍ଧି ଲାଭ କରିଛି । ଏଥିପାଇଁ ବହୁ ତୀର୍ଥଯାତ୍ରୀ ପ୍ରତିବର୍ଷ ଏଠାକୁ ଆସି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ନାଭିଗୟାରେ ପିଣ୍ଡଦାନ କରିଥାଆନ୍ତି ।

ବିରଜାଦେବୀ, ସପ୍ତମାତୃକା, ବରାହ ପ୍ରଭୃତି ଦେବଦେବୀ-ଅଧିଷ୍ଠିତ ଦେବମନ୍ଦିର ସମାକୀର୍ଣ୍ଣ ଏହି ତୀର୍ଥକ୍ଷେତ୍ରରେ ଐତିହାସିକ ଦଶାଶ୍ୱମେଧ ଘାଟ, ଶୁଭସ୍ତମ୍ଭ, ଅଷ୍ଟୋତ୍ତରଶତ ଶିବଲିଙ୍ଗ ଏହି ସ୍ଥାନର ଶୋଭା ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଏହାକୁ ପବିତ୍ର କରିଅଛନ୍ତି ।

ଏହି କ୍ଷେତ୍ରର ମାହାତ୍ମ୍ୟ ବିଷୟରେ ଲୋକମାନଙ୍କୁ ଅବହିତ କରାଇବା ପାଇଁ କୌଣସି ଉପାଦେୟ ପୁସ୍ତକ ନଥିବାର ଉପଲବ୍ଧି କରି ମୋର ପୂଜ୍ୟ ଶ୍ୱଶୁର ବିଭିନ୍ନ ସ୍ଥାନରୁ ତଥ୍ୟ ସଂଗ୍ରହ କରି ଏହି 'ଯାଜପୁର ବିରଜାକ୍ଷେତ୍ର ପରିକ୍ରମା' ପୁସ୍ତକ ରଚନା କରିଥିଲେ । ଯାଜପୁରର ତଦାନିନ୍ତନ ଏସ୍. ଡି. ଓ. ଶ୍ରୀ ରଘୁନାଥ ମିଶ୍ରଙ୍କର ଉତ୍ସାହ, ପ୍ରେରଣା ଓ ଶ୍ରୀ ନାରାୟଣ ସାମନ୍ତଙ୍କର ଅକୁଣ୍ଠିତ ଦାନ ଫଳରେ ଏହି ପୁସ୍ତକର ପ୍ରଥମ ସଂସ୍କରଣ ପ୍ରକାଶିତ ହୋଇଥିଲା । ଏହା ମଧ୍ୟରେ ମୋର ଶ୍ୱଶୁର ଆମ୍ଭମାନଙ୍କୁ ଶୋକସାଗରରେ ଭସାଇ ୧୯୮୨ ମାର୍ଚ୍ଚ ୩ ତାରିଖ ଦିନ ସ୍ୱର୍ଗାରୋହଣ କରିଅଛନ୍ତି । ବହୁ ବ୍ୟକ୍ତି ଏହି ବହିର ଉପାଦେୟତା ଉପଲବ୍ଧି କରି ଏହାର ଦ୍ୱିତୀୟ ସଂସ୍କରଣ ନିମିତ୍ତ ଉପଦେଶ ଦେଇଅଛନ୍ତି ।

ପୁସ୍ତକଟିର ପ୍ରକାଶନ ନିମିତ୍ତ ଯେଉଁମାନଙ୍କର ଉତ୍ସାହ, ପ୍ରେରଣା ଅବିସ୍ମରଣୀୟ, ସେମାନଙ୍କ ନିକଟରେ ଆମେ ଆମର କୃତଜ୍ଞତା ଜ୍ଞାପନ କରୁଅଛୁ ।

ବିଶେଷ କରି ମୋର ଭାଇ ଶ୍ରୀ ଯୁଗଳ କିଶୋର ତ୍ରିପାଠୀ, ଶ୍ରୀ ଧରଣୀଧର ମିଶ୍ର, ଶ୍ରୀମତୀ ଶୁଭଙ୍କରୀ ମିଶ୍ର, ଶ୍ରୀ ବେଣୁଧର ମିଶ୍ର ପ୍ରଭୃତିଙ୍କର ଉତ୍ସାହ, ପ୍ରେରଣା ପୁସ୍ତକ ପ୍ରକାଶନରେ ବିଶେଷ ସହାୟତା କରିଅଛି । ସେଥିପାଇଁ ସେମାନେ ଧନ୍ୟବାଦାର୍ହ ।

ଡକ୍ଟର ଧନେଶ୍ୱର ମହାପାତ୍ର, ଶ୍ରୀ ଦେବବ୍ରତ ମହାପାତ୍ର ଏହି ପୁସ୍ତକଟିର ମୁଦ୍ରଣ ଦାୟିତ୍ୱ ବହନ କରିଥିବାରୁ ସେମାନଙ୍କୁ ମୁଁ ଧନ୍ୟବାଦ ଅର୍ପଣ କରୁଅଛି ।

ପ୍ରକାଶିକା



—ଲେଖକ—

ପଣ୍ଡିତ **ଶ୍ରୀ ବୈଷ୍ଣବ ଚରଣ ଦାଶ**

ସାହିତ୍ୟାଗ୍ରଣୀ

# ମଙ୍ଗଳାଚରଣମ୍

ସୁରେନ୍ଦ୍ର ମୌଳି ମନ୍ଦାର ସଂଘୃଷ୍ଟ ଚରଣାମ୍ବୁଜାମ୍ ।
ଭଜାମି ଯାଗଜାଂ ବାଞ୍ଛାସିଦ୍ଧୟେ ବରଜାମଜାମ୍ ।।
ମାତସ୍ତ୍ୱତ୍ କରୁଣା କଟାକ୍ଷ ବିଗଳତ୍ ପୀୟୂଷ ମନ୍ଦାକିନୀ-
ଧାରା ମନ୍ଦତରା ମଦନ୍ତର ଚିରାଦ୍ଧେବାପ୍ୟତାଂ ଶ୍ରେୟସେ ।
ବୁଦ୍ଧିର୍ମେ ପ୍ରସନ୍ନା ସନ୍ନାତୁ ନିତରାଂ ମନ୍ଦାପି ସାଧ୍ୱୋଦୟେ
ନୋ ଜାନେ ତ୍ୱନ୍ନାମ କୀର୍ତ୍ତନ ମୃତେ କୋ ବାବଲମ୍ବୋ ଭବେତ୍ ।।
ଗୋନାସାଚଳ ଗର୍ଭଲବ୍ଧ ଜନନା ପ୍ରାଗ୍ ଯାଚିତା ବ୍ରହ୍ମଣା
ନାମ୍ନା ବୈତରଣୀତି ପୂତସଲିଳା କଲ୍ଲୋଳ ମାଳାକୁଳା ।
ଦୋଣ୍ଡାଖଣ୍ଡଳ ମଧ୍ୟଗାମରଧୁନୀ - କ୍ଷମାସୁ ଯଷ୍ଟୁର୍ବିଧେଃ
ମତ୍ୟାଂ ମେ ବିଜୟୀ ଦଧାତୁ କୃପୟା କାଲୁଷ୍ୟ ନାଶାୟ ସା ।।

(ପରମାରାଧ୍ୟ ପୂଜ୍ୟପାଦ
ଗୁରୁଦେବ ୰ ଜନାର୍ଦ୍ଦନ ଦାଶ
କାବ୍ୟତୀର୍ଥ ମହୋଦୟଙ୍କ କୃତ)

ବ୍ରହ୍ମାଦୟୋଽପି ଯଦପାଙ୍ଗ ତରଙ୍ଗ ଭଙ୍ଗ୍ୟା
ସୃଷ୍ଟି ସ୍ଥିତି ପ୍ରଳୟ କାରଣଂ ବ୍ରଜନ୍ତି ।
ମୋହାନ୍ଧକାର ପରିପନ୍ଥି ବପୁଷ୍ଠଟାୟୈ
ତସ୍ମୈ ନମୋ ବରଜସେ ପର ଦେବତାୟୈ ।।
ଶ୍ରୀମଦ୍ ବୈତରଣୀତଟେ ସମୁଦିତା କାଚଲ୍ଲତା ପାବନୀ
ବ୍ରହ୍ମାନନ୍ଦରସା ବିମୁକ୍ତିଫଳଦା ତାପାର୍ତ୍ତି ସଂହାରିଣୀ ।
ଶ୍ରେୟଃ ପୁଷ୍ପବିକାଶ ସୌରଭ ମିଳଦ୍ ଯୋଗୀନ୍ଦ୍ର ଭୃଙ୍ଗାକୁଳା
ସ୍ଥାଣୁହୋଡ଼ିଗତା ସୁଧାପ୍ରସବିନୀ ସା ଚନ୍ଦ୍ରୀ ପାତୁ ନଃ ।।

ପୂଜ୍ୟପାଦ ସ୍ୱନାମଧନ୍ୟ
**୰ ପଣ୍ଡିତ ନୀଳମଣି ମିଶ୍ର**
ତର୍କାଲଙ୍କାରଙ୍କ କୃତ

## ❊ ଶ୍ରୀ ବିରଜାଷ୍ଟକମ୍ ❊

ଓଁ ନମୋ ବିରଜସେ
ମାତର୍ଭବାନି ବିରଜେ ଜନତାପହନ୍ତ୍ରି
ଶ୍ରୀ ନୀଳକଣ୍ଠ ହୃଦୟାମ୍ବୁଜ ବାସଯୋଗ୍ୟେ ।
ତତ୍ତ୍ୱାର୍ଥ ଜ୍ଞାନ ନିଳୟେ ସୁରରାଜ ପୂଜ୍ୟେ
ତୁଭ୍ୟଂ ନମୋ ବିରଜସେ କରୁଣାବତାରେ । ୧ ।

ତ୍ୱଂ ଦେବୀ ଲକ୍ଷ୍ମୀ ବଗଳା ସୁର ସିଦ୍ଧି ରୂପା
ମାତଙ୍ଗିନୀ ଭୁବନ ମୋହିନୀ କାଳୀ ତାରା ।
ଅଦ୍ୱିତୀୟାପି ଭବତୀ ବହୁଧାଚ ନାରୀ
ସର୍ବଂ ଦଧାସି ଭୁବନଂ ପ୍ରଳୟେ ଶରୀରେ । ୨ ।

ତ୍ୱଂ ଦାନବେନ୍ଦ୍ର ମହିଷାସୁର ମୋକ୍ଷଦାନୀ
ଚଣ୍ଡ ପ୍ରଚଣ୍ଡ ମଥିନୀ କଳି କଳୁଷଘ୍ନୀ ।
ଶୁମ୍ଭାସୁର ପ୍ରବଳ ତାପ ବିନାଶ କର୍ତ୍ରୀ
ତ୍ୱଂ ଦେବୀ ଦେବସକଳାଂଶକଳେ ନମସ୍ତେ । ୩ ।

କାଳାଭ କାନ୍ତିରବ କାଳ କରାଳ ରୂପ
ମାସ୍ଥାୟ ଦୈତ୍ୟ ନିବହାନ୍ ବିନିହଂସି ଦେବି ।
ସ୍ନେହାମ୍ବୁସିକ୍ତ ନୟନାଞ୍ଚିତ ସେବକାନାଂ
ବାଞ୍ଛାଂ ଦଦାସି ସକଳାସୁ ଦିଶାସୁ ଦେବୀ । ୪ ।

ତ୍ୱଂ ବିଷ୍ଣୁଶକ୍ତିମୟୀ ବୈଷ୍ଣବୀ ଶୁଦ୍ଧରୂପା
ସର୍ବଂ ଚରାଚର ଜଗତ୍ ପରିପାସି ଶଶ୍ୱତ୍ ।
ବ୍ରହ୍ମାଣୀ ରୂପ ମଧିଗମ୍ୟ ସୃଜସୀତି ବିଶ୍ୱଂ
ରୁଦ୍ରାଣୀ ରୁଦ୍ରବପୁରାଶ୍ରୟସେ ଯୁଗାନ୍ତେ । ୫ ।

ବ୍ରହ୍ମାଦ୍ୟ ଦେବ ନମିତେ କରୁଣାର୍ଦ୍ର ଚିତ୍ତେ
ଭକ୍ତାର୍ତ୍ତି ହାରିଣି ମୟି କରୁଣାଂ ନିଧେହି ।
ତ୍ୱତ୍ ପାଦ ସେବନ ମୃତେ ନ ଚ କଞ୍ଚିଦସ୍ତି
ଭକ୍ତ୍ୟା ନମାମି ବରଦେ କୃପୟା ଗୃହାଣ । ୬ ।

ଶର୍ବାଣି ସର୍ବ ସୁଖଦେ ସକଳାବତାରେ
ସୃଷ୍ଟି ସ୍ଥିତି ପ୍ରଳୟକାରିଣି ସିଦ୍ଧିବିଦ୍ୟେ ।
ସର୍ବେଶି ସର୍ବ ନମିତେ ଶରଣ୍ୟହସ୍ତେ
ସୌଭାଗ୍ୟଭାଗ୍ୟଜନନି ଶୁଭଦେ ନମସ୍ତେ । ୭ ।

ତ୍ରୈଲୋକ୍ୟ ମୋହନକରି ତ୍ରିଗୁଣାତ୍ମରୂପେ
ମନ୍ଦାର ହାର ପରି ରଞ୍ଜିତ ପାଦ ପୀଠେ ।
କାତ୍ୟାୟନି କନକ ଭୂଷଣ ଭୂଷିତାଙ୍ଗି
କାମେଶ୍ୱରି ସକଳକାମଦୁଘେ ପ୍ରସୀଦ । ୮ ।

ଅଷ୍ଟକଂ ତୁ ମହାପୁଣ୍ୟଂ ଯଃ ପଠେତ୍ ପ୍ରୟତଃ ଶୁଚିଃ ।
ସ ସର୍ବଫଳ ମାପ୍ନୋତି ପରତ୍ର ସୁଖ ମଶ୍ନୁତେ ॥

## ଆତ୍ମନିବେଦନ :—

ଇଚ୍ଛା ଯଦି ଭଗବତି ମୟ୍ୟ କ୍ଷୁମ୍ନି ତାକଂ
କସ୍ମା ମହୋଚ ପଦବୀଂ ନହି ମେ ବିତର୍କଃ ।
ଯତ୍ କର୍ମ ମର୍ତ୍ତ୍ୟ ଜନନେ କୁରୁତେ ମନୁଷ୍ୟଃ
ତେନାତ୍ମନଃ ଫଳମୁପୈତି କମନ ଚରମ୍ ॥
ତ୍ୱତ୍ ପାଦପଦ୍ମ ପରିଚିନ୍ତନ ତତ୍ପରାଣାଂ
ଦୁଃଖଂ ସଦା ବିଘଟତେ କଥିତଂ ଭବତ୍ୟା ।
କାତର୍ ଯଦି ତବ ସୁଧାସମ ନାମ ଚିନ୍ତା
ସ୍ତୋକଂ କୃତା ତଦପି ମେ ସଫଳୀ କୁରୁଷ୍ୱ ॥

— ଦେବୀ ପଦାରବିନ୍ଦ ମକରନ୍ଦ ଲିପ୍ସୁ —

ଗ୍ରନ୍ଥକାର

# ସୂଚୀପତ୍ର

ବି. ନଂ. ବିଷୟ ପୃଷ୍ଠାଙ୍କ



---

# ଯାଜପୁର ବିରଜାକ୍ଷେତ୍ର ପରିକ୍ରମା

ଓଁ ନମୋ ବିରଜସେ

ଶ୍ରୀ ଗଣେଶାୟ ନମଃ ଅବିଘ୍ନ ମସ୍ତୁ !

ପ୍ରଣମ୍ୟ ବିଘ୍ନରାଜେନ୍ଦ୍ରଂ ସିନ୍ଦୂରାରୁଣବିଗ୍ରହମ୍ ।
ତୀର୍ଥାନ୍ୟସଂଖ୍ୟଲିଙ୍ଗାନି ପୁଣ୍ୟାଂ ବୈତରଣୀଂ ନଦୀମ୍ ॥
ଶକଟାକାରକ୍ଷେତ୍ରଂଚ ତ୍ରିକୋଣ ବିନ୍ଦୁରୂପିଣୀମ୍ ।
ବନ୍ଦେ ଶ୍ରୀ ବିରଜାଂ ଦେବୀଂ ସର୍ବଦେବନମସ୍କୃତାମ୍ ॥
ଲିଖ୍ୟତେ ବିରଜାକ୍ଷେତ୍ର-ପରିକ୍ରମେତି ନାମତଃ ।
ଅବଶ୍ୟଂ ତ୍ରୁଟିପୂର୍ଣ୍ଣା ସ୍ୟାତ୍ କ୍ଷମ୍ୟତାମୟମଞ୍ଜଳିଃ ॥

## ବିରଜାକ୍ଷେତ୍ର ପରିକ୍ରମାର ଆଭାସ :—

ତୁଷାରଶିଖରୀ-ନଗାଧିରାଜ-ହିମାଳୟ-ମୁକୁଟଶୋଭିତା, ବ୍ୟାସ ବାଲ୍ମୀକି ଗୌତମାଦି ଋଷି ମୁନି ଅଧ୍ୟୁଷିତା, ସାଗରମେଖଳା ଏହି ପବିତ୍ର ଭାରତ ଭୂମିରେ ଐତିହାସିକ ପୁରାଣ ପ୍ରସିଦ୍ଧ ଯେତେ ଯେତେ ପୁଣ୍ୟକ୍ଷେତ୍ର ତଥା ପୂତସଲିଳା-ସ୍ରୋତସ୍ୱିନୀ-ପାବନ ତୀର୍ଥରାଜ ରହିଅଛି, ତନ୍ମଧ୍ୟରେ ଉତ୍କଳର ଯାଜପୁର ପ୍ରଖ୍ୟାତ ଐତିହାସିକ ପୁଣ୍ୟପୀଠ ବିଶେଷ ଉଲ୍ଲେଖ-ଯୋଗ୍ୟ । ଏ ବିଷୟ କପିଳ ସଂହିତାରେ ବର୍ଣ୍ଣିତ ଅଛି :—

"ବର୍ଷାଣାଂ ଭାରତଃ ଶ୍ରେଷ୍ଠଃ ଦେଶାନାମୁତ୍କଳଃ ସ୍ମୃତଃ ।
ଯତ୍ର କ୍ଷେତ୍ରେ ବସନ୍ତ୍ୟେତେ କୃଷ୍ଣାର୍କ ପାର୍ବତୀ ହରାଃ ॥" (କ: ସ)

ଅର୍ଥାତ୍ ଏହି ପୃଥିବୀପୃଷ୍ଠରେ ବିରାଜିତ ଇଳାବୃତ, କିଂପୁରୁଷ, କୁରୁ, ଭଦ୍ର, ଅଶ୍ୱ, କେତୁମାଳୀ, ରମଣକ, ହିରଣ୍ମୟ ଓ ଭାରତବର୍ଷ, ଏହିପରି ନବ-

ବର୍ଷ ମଧ୍ୟରେ ଭାରତବର୍ଷ ସର୍ବଶ୍ରେଷ୍ଠ ଅଟେ, ଯେଉଁଠାରେ ନାନାଧର୍ମାବଲମ୍ବୀ, ନାନାଭାଷାଭାଷୀ ଭିନ୍ନ ଭିନ୍ନ ସଂପ୍ରଦାୟର ବ୍ୟକ୍ତି ସହଜ ସୌହାର୍ଦ୍ଦ୍ୟ ଅବଲମ୍ବନ କରି ନିର୍ଦ୍ଧ୍ୱନ୍ଦ୍ୱରେ ଚିରଶାନ୍ତିରେ ବାସ କରନ୍ତି । ପର୍ଯ୍ୟାୟ କ୍ରମରେ ବସନ୍ତାଦି ଷଡ଼୍ ଋତୁ ନିତ୍ୟ ବିଳାସ କରି ଜନତାର ଅଶେଷ କଲ୍ୟାଣ ସାଧନ କରନ୍ତି । ଉପବନଗିରି ବିଭବରେ ପରିପୂର୍ଣ୍ଣ ତଥା ଚିରସ୍ରୋତା ସୁନାବ୍ୟା ନଦୀସମୂହ ଦ୍ୱାରା ଯେଉଁ ଦେଶ ସଦା ସମୃଦ୍ଧ, ସେହି ଭାରତବର୍ଷ ମଧ୍ୟରେ ଅଙ୍ଗ, ବଙ୍ଗ, କଳିଙ୍ଗ, କାଶ୍ମୀର, କାମ୍ବୋଜ, ସୌବୀର, ସୌରାଷ୍ଟ୍ର, ମହାରାଷ୍ଟ୍ର, ମଗଧ, ନେପାଳ, କେରଳ, ଚୋଳ, ପାଞ୍ଚାଳ, ଗୌଡ଼, ମାଳବ, ମଳୟ, ସିଂହଳ, ଦ୍ରାବିଡ଼, କର୍ଣ୍ଣାଟ, କଳହଟ, ବରହାଟ, ପାନାଟ, ପାଣ୍ଡ୍ୟ, ଆନ୍ଧ୍ର, ନିଷଧ, ଦଶାର୍ଣ୍ଣ, ଭୋଜ, କୁରୁ, ଗାନ୍ଧାର, ବିଦର୍ଭ, ବିଦେହ, ବାହ୍ଲୀକ, ବର୍ବର, କେକୟ, କୋଶଳ, ବିରାଟ, ଶୂରସେନ, କୋଙ୍କଣ, କୈକଟ, ମତ୍ସ୍ୟ, ମଦ୍ର, ପାରସିକ, ଖର୍ଜୁରି, ଯାବନ, ମ୍ଳେଚ୍ଛ, ଜାଲନ୍ଧର, ସିନ୍ଧୁବଙ୍ଗ ପ୍ରଭୃତି ଦେଶମାନଙ୍କ ମଧ୍ୟରେ 'ଉତ୍କଳଦେଶ' ଶ୍ରେଷ୍ଠ ବୋଲି ବିବେଚିତ ହୋଇଅଛି । କାରଣ, ଯେଉଁ ଉତ୍କଳରେ 'କୃଷ୍ଣ' ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଶେଷାବତାର ସର୍ବଧର୍ମସମନ୍ୱୟ ବୌଦ୍ଧାବତାର 'ଶ୍ରୀଜଗନ୍ନାଥ' କୃଷ୍ଣତୀର୍ଥ ବା ଚକ୍ରତୀର୍ଥ ପୁରୁଷୋତ୍ତମ କ୍ଷେତ୍ରରେ ବିଦ୍ୟମାନ । ଦକ୍ଷିଣରେ ଚନ୍ଦ୍ରଭାଗାନଦୀ-ତୀରସ୍ଥିତ ସମୁଦ୍ର ବେଳାରେ ବିରାଜିତ ଅର୍କତୀର୍ଥ, ଯେଉଁଠାରେ ଉତ୍କଳୀୟ-କଳା ସ୍ଥାପତ୍ୟପୂର୍ଣ୍ଣ ସପ୍ତାଶ୍ୱଶୋଭିତ ଚତୁର୍ବିଂଶତି (୨୪) ହସ୍ତ ପରିମିତ ପରିଧି ମଧ୍ୟରେ ଅଷ୍ଟ (୮) ଅରାବଳି ମଣ୍ଡିତ ହୋଇଥିବା ଚତୁର୍ବିଂଶତି ଚକ୍ରୋପରି ରଥାକାର କୋଣାର୍କ ମନ୍ଦିର ଅପୂର୍ବ ଶୋଭା ଧାରଣ କରି ବାରଶତ କଳାକାର ମୁକୁଟାଳଙ୍କାରରୂପକ ଦ୍ୱାଦଶବର୍ଷୀୟ ଧର୍ମପଦର କୀର୍ତ୍ତିକଳାପର ମୂକସାକ୍ଷୀରୂପରେ ବିଦ୍ୟମାନ ରହି ଲକ୍ଷ ଲକ୍ଷ ନର ନାରୀ-ଙ୍କର ଦୃଷ୍ଟି ଆକର୍ଷଣ କରୁଅଛି, ତଥା ଗ୍ରହରାଜ ସୂର୍ଯ୍ୟଦେବଙ୍କ ଉପାସକ ରାଜା ନରସିଂହଦେବଙ୍କୁ ଜୀବନ୍ତ କରୁଅଛି । ଏହା ବ୍ୟତୀତ ପ୍ରତିବର୍ଷ ମାଘ ଶୁକ୍ଳସପ୍ତମୀ ଦିନ ଅର୍କୋଦୟ ଯୋଗସ୍ନାନପାଇଁ ଧର୍ମପ୍ରାଣ ଅସଂଖ୍ୟ ଯାତ୍ରୀ ଏହି କ୍ଷେତ୍ରରେ ସମବେତ ହୋଇ ପବିତ୍ର ତୀର୍ଥର ମାହାତ୍ମ୍ୟ ଗାନ କରନ୍ତି । ଏପରି ତୀର୍ଥର ମହିମା ଅବର୍ଣ୍ଣନୀୟ ।

ତୃତୀୟରେ 'ହର' ଅର୍ଥାତ୍ ଶିବଙ୍କର ଲିଙ୍ଗରାଜଙ୍କ ବସେସ୍ଥଳୀ ଭୁବନେଶ୍ୱର । ଚତୁର୍ଥରେ ପାଜପୁରର କାର୍ତ୍ତିସ୍ତମ୍ଭ ସ୍ୱରୂପ 'ପାର୍ବତୀ' ଅର୍ଥାତ୍ ଗୌରୀ ବା ଶକ୍ତିତୀର୍ଥ 'ବିରଜାକ୍ଷେତ୍ର' ଏକୋନକୋଟି ଲିଙ୍ଗ ଧାରଣ କରି ବିରାଜିତ । "ଯତ୍ର ଶୈବାନି ଲିଙ୍ଗାନି ନୈକକୋଟି ସ୍ଥିତାନି ବୈ" (ବ୍ର: ପୁ: ୧ଅ, ୩୪ଶ୍ଳୋ ) ଅର୍ଥାତ୍ ଗୋଟିଏ ଊଣା କୋଟିଏ ଶିବଲିଙ୍ଗ ଉକ୍ତ ଶୈବ-ଧର୍ମାବଲମ୍ବୀ କେଶରୀ ବଂଶୀୟ ରାଜାମାନଙ୍କର ଆଧ୍ୟାତ୍ମିକ ଧର୍ମଭାବ ପ୍ରକାଶ କରୁଅଛି । ଏହି ଲିଙ୍ଗମାନଙ୍କ ମଧ୍ୟରୁ କେତେକ କ୍ଷୁଦ୍ର ବୃହତ୍ ମନ୍ଦିର ମଧ୍ୟରେ ପ୍ରତିଷ୍ଠିତ ହୋଇଥିବାରୁ ବିଦେଶାଗତ ଯାତ୍ରୀମାନେ ହୃଦୟରେ ଦର୍ଶନ-ସୁଖ ଲାଭ କରୁ ଅଛନ୍ତି । କେତେକ ମଧ୍ୟ ଭୂଗର୍ଭରେ ଲୁକ୍‌କାୟିତ ଥିବାର ଦେଖାଯାଏ । କାରଣ, କେତେକ କୂପ ପୁଷ୍କରିଣୀ ଖନନ ସମୟରେ ବା ଗୃହ ଅଟ୍ଟାଳିକାର ଭିତ୍ତିସ୍ଥାପନବେଳେ ଦୃଷ୍ଟି ଗୋଚର ହେଉଅଛନ୍ତି । ଏଥିମଧ୍ୟରୁ କେତେକ ଅସ୍ଥାନରେ, କେତେକ ଆବର୍ଜନାସ୍ତୂପ ମଧ୍ୟରେ ଲୁକ୍‌କାୟିତ ଥିବାର ଦେଖାଯାଏ । ଏମାନଙ୍କର ଏ ପର୍ଯ୍ୟନ୍ତ ପୁନରୁଦ୍ଧାର ହୋଇ ପାରିନାହିଁ । ଏବେ କେତେବର୍ଷ ହେଲା ବକ୍ଷିପ୍ତଭାବରେ ପଡ଼ିଥିବା ମୂର୍ତ୍ତିମେଯ୍ୟ ୫୪ ସଂଖ୍ୟକ ଲିଙ୍ଗଙ୍କୁ ବିରଜାବେଢ଼ାମଧ୍ୟସ୍ଥ ଉତ୍ତରଭାଗରେ ଗୋଟିଏ ଦୀର୍ଘପ୍ରକୋଷ୍ଠରେ ଏକତ୍ରିତ କରାଯାଇଅଛି ।

"ତାବତ୍ତୀ ମୂର୍ତ୍ତିମାସ୍ଥାୟ ଦେବୀ ଯତ୍ର ବିରାଜତେ ।" ( ବ୍ର: ପୁ: ୧ଅ ୩୪ଶ୍ଳୋ ) ଅର୍ଥାତ୍ ଯଜ୍ଞାନଳ ସମ୍ଭୂତା ଦେବୀ ପାର୍ବତୀ 'ବିରଜା' ନାମ ଧାରଣ କରି କ୍ଷେତ୍ରାଧୀଶ୍ୱରୀ ରୂପରେ କ୍ଷେତ୍ରକୁ ପବିତ୍ର ତଥା ସମଳଙ୍କୃତ କରୁଅଛନ୍ତି । ଆହୁରିମଧ୍ୟ, ଏହି କ୍ଷେତ୍ରର ଅଧୀଶ୍ୱର 'ଈଶାନେଶ୍ୱର' ସଦାବସ୍ଥାନ କରି କ୍ଷେତ୍ରର ଉତ୍କର୍ଷ ପ୍ରତିପାଦନ କରୁଅଛନ୍ତି । ଏହି ଦେବ-ଦେବୀ କିପରି ଏହି କ୍ଷେତ୍ରରେ ଆବିର୍ଭୂତ ହେଲେ ଓ କିପରି କେଉଁ କେଉଁ ସ୍ଥାନରେ ଅବସ୍ଥାନ କଲେ, ତାହା ଅଷ୍ଟାଦଶ ପୁରାଣାନ୍ତର୍ଗତ 'ବ୍ରହ୍ମାଣ୍ଡ ପୁରାଣରୁ' ସ୍ପଷ୍ଟ ପ୍ରତୀତ ହୁଏ ।

ଏକଦା କାର୍ତ୍ତିକେୟ ସଦାଶିବଙ୍କର ପରମ ଭକ୍ତ ନନ୍ଦିକେଶ୍ୱରଙ୍କୁ ଶିବଙ୍କର ତଥା ଶକ୍ତିସ୍ୱରୂପା ଦେବୀଙ୍କର ଅତ୍ୟୁତ୍ତମ କ୍ଷେତ୍ର ଭାରତ ଭୂଖଣ୍ଡରେ

କେଉଁଠି ଅଛି ବୋଲି ପ୍ରଶ୍ନ କରିବାରୁ ନନ୍ଦିକେଶ୍ୱର ଯେପରିଭାବରେ ସଦାଶିବଙ୍କଠାରୁ ଶୁଣିଥିଲେ, ତାହାହିଁ ବର୍ଣ୍ଣନା କଲେ—

"ଶମ୍ଭୋରଷ୍ଟତମଂ କ୍ଷେତ୍ରଂ ଗୁପ୍ତଂ ପୁଣ୍ୟମନୁତ୍ତମମ୍" ( ବ୍ରଃ ପୁଃ ୧୯, ୩୩ଶ୍ଳୋ ) ଅର୍ଥାତ୍ ଭଗବାନ୍ ସଦାଶିବଙ୍କର ଅଷ୍ଟ ପୁଣ୍ୟତମ କ୍ଷେତ୍ର ଗୁପ୍ତଭାବରେ ରହିଅଛି ।

ସେହି କ୍ଷେତ୍ରଟି କେଉଁଠି ବୋଲି କାର୍ତ୍ତିକେୟ ପଚାରିବାରୁ ନନ୍ଦିକେଶ୍ୱର କହିଲେ— 'ତାହା ବିରଜାକ୍ଷେତ୍ର ।' ଏହି କ୍ଷେତ୍ରକୁ 'ଅବିମୁକ୍ତକ୍ଷେତ୍ର' ମଧ୍ୟ କୁହାଯାଏ । 'ଅବିମୁକ୍ତ' ଅର୍ଥାତ୍ 'ହରଗୌରୀକ୍ଷେତ୍ର' । ଯେଉଁଠାରେ ହର 'ଈଶାନେଶ୍ୱର' ରୂପରେ, ଗୌରୀ 'ବିରଜା' ରୂପରେ ଏକତ୍ର ବାସକରନ୍ତି, ତାହା 'ଅବିମୁକ୍ତକ୍ଷେତ୍ର' । ଯଥା: —

## ଅବିମୁକ୍ତ କ୍ଷେତ୍ର—

( ବ୍ରଃ ପୁଃ ୧୯, ୩୬, ୩୭, ୩୮ ଶ୍ଳୋକ )

"ଅବିମୁକ୍ତାଭିଧଂ କ୍ଷେତ୍ରଂ ଶମ୍ଭୋରପ୍ୟତମଂ ସ୍ମୃତଃ ।
ଯତ୍ରାବିରତ ସମ୍ବାସୋ ଦେବଦେବସ୍ୟ ଶୂଳିନଃ ॥ ୩୬ ॥
ଯତ୍ର ପୁଣ୍ୟତମଂ କ୍ଷେତ୍ରଂ ତତ୍ର ଦେବଃ ପିନାକଧୃକ୍ ।
ତତ୍ର ଦେବୀ ସ୍ୱୟଂ ଗୌରୀ ତତ୍ର ଦେବୋ ଜନାର୍ଦ୍ଦନଃ ॥ ୩୭ ॥
ଭେଦୋ ନ ଦୃଶ୍ୟତେ ତେଷାଂ କ୍ଷେତ୍ରଂ ନୈତୈର୍ବିନାକୃତମ୍ ।
ଅବିମୁକ୍ତ ନିବାସେନ ମୋଦମାନସ୍ୟ ଶୂଳିନଃ ॥ ୩୮ ॥"

ଦେବଦେବ ମହାଦେବ ନିଜେ ଯେଉଁ ସ୍ଥାନରେ ଚିରବାସ କରିବାକୁ ଇଚ୍ଛା ପ୍ରକାଶ କଲେ ଅର୍ଥାତ୍ ପୁଣ୍ୟଭୂମି ଭାରତ ମଧ୍ୟରେ ଯେଉଁ ସ୍ଥାନଟି ତାହାଙ୍କୁ ରୁଚିକର ବୋଧ ହେଲ, ତାହାକୁ "ଅବିମୁକ୍ତ କ୍ଷେତ୍ର" ବା 'ହରଗୌରୀକ୍ଷେତ୍ର' କୁହାଗଲା । ସେହି ପୁଣ୍ୟତମ କ୍ଷେତ୍ରକୁ ସ୍ୱୟଂ ପିନାକପାଣି ଶିବ, ଦେବୀ ଗୌରୀ ଓ ଦେବ ଜନାର୍ଦ୍ଦନ ନାରାୟଣ ଅଳଂକୃତ କଲେ । ଏହି କ୍ଷେତ୍ରରେ ଏହି ଦେବତାମାନଙ୍କ ମଧ୍ୟରେ ଅର୍ଥାତ୍ ହରଗୌରୀଙ୍କ

ମଧ୍ୟରେ କୌଣସି ପ୍ରଭେଦ ପରିଲକ୍ଷିତ ହୁଏନାହିଁ । ଶିବଙ୍କର ପ୍ରୀତିବର୍ଦ୍ଧନ-ପାଇଁ ଏମାନେ କ୍ଷେତ୍ରକୁ ଛାଡ଼ି ପାରିଲେ ନାହିଁ କି କ୍ଷେତ୍ର ଏମାନଙ୍କୁ ଛାଡ଼ି-ପାରିଲେ ନାହିଁ । ଏଣୁ କେହି କାହାଠାରୁ ମୁକ୍ତ ନୁହନ୍ତି ବୋଲି ଏହା 'ଅବିମୁକ୍ତକ୍ଷେତ୍ର' ଅଟେ ।

ଏହି ଭାରତ ଭୂଖଣ୍ଡରେ ଏପରି ସ୍ଥାନଟିଏ କେଉଁଠି ଅଛି, ଏହା ଜାଣିବାପାଇଁ ପ୍ରଥମେ ବ୍ରହ୍ମା ସ୍ଥାନ ନିରୂପଣ କଲେ—

"ବ୍ରହ୍ମଣା ଦର୍ଶିତଂ କ୍ଷେତ୍ରଂ ଗୁପ୍ତଂ କମପି ବିଦ୍ୟତେ ।
ଯତ୍ର ବୈତରଣୀ ପୁଣ୍ୟା ବହତେ ସରିତାଂବରା ॥ ୩୯ ॥
ତସ୍ମା ବିରଜତଂ କ୍ଷେତ୍ରଂ ଦୃଷ୍ଟ୍ୱା ଦେବସ୍ୟ ଶୂଳିନଃ ।
କ୍ଷେତ୍ରେଽବିମୁକ୍ତେ ଯା ପ୍ରୀତିଃ ସା ସାଧାରଣତାଂ ଗତା ॥୪୦॥"
(ବ୍ର: ପୁ: ଅ ୧)

ବ୍ରହ୍ମାଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ଏପରି ଗୋଟିଏ ଗୁପ୍ତସ୍ଥାନ ଅଛି, ଯେଉଁ ଠାରେ ନଦୀମଧ୍ୟରେ ସର୍ବଶ୍ରେଷ୍ଠା, ପୁଣ୍ୟତୋୟା, କଳକଳନାଦିନୀ ଗିରିସ୍ରୋତା ବୈତରଣୀ କେନ୍ଦୁଝର ଜିଲ୍ଲାର ଶ୍ରେଷ୍ଠ ସୁରମ୍ୟ ଗୋନାସିକା ପର୍ବତରୁ ଆବିର୍ଭୂତ ହୋଇ ଏହି କ୍ଷେତ୍ରରେ ପ୍ରବାହିତ ହେଉଅଛି, ଯହିଁରେ ସ୍ନାନକରି ଶ୍ରାଦ୍ଧ ଦାନାଦି ବୈଦିକ କାର୍ଯ୍ୟ କରି ଲୋକ ସର୍ବବିଧ ପାପରୁ ମୁକ୍ତି ଲାଭ କରେ । ଏହା ସ୍ନାନକାଳୀନ ମନ୍ତ୍ରପାଠରୁ ଜଣାଯାଏ—

"ଗୋନାସିକା ସମୁଦ୍‌ଭୂତେ ଧାତୃଯଜ୍ଞ ସମଂଗତେ ।
ଜନ୍ମ ଜନ୍ମାନ ଯତ୍ ପାପଂ ସ୍ନାନେନାନେନ ନଶ୍ୟତୁ ॥" (କପିଳସଂହିତା)

ଏହି ନଦୀର ଉତ୍ପତ୍ତି ସମ୍ବନ୍ଧରେ ଗୋଟିଏ କିମ୍ବଦନ୍ତୀ ଶୁଣାଯାଏ—

ପ୍ରଥମେ ସର୍ବଲୋକ ପିତାମହ ବ୍ରହ୍ମା ଏହି ସ୍ଥାନଟିକୁ ଯଜ୍ଞୀୟ ସ୍ଥାନ ରୂପରେ ନିରୂପଣ କରି ବୈତରଣୀଙ୍କୁ କ୍ଷେତ୍ର ମଧ୍ୟରେ ପ୍ରବାହିତ ହୋଇ ଯଜ୍ଞାନ୍ତ ଋଷି ମୁନି ପ୍ରଭୃତି ଋତ୍ୱିକ୍ ପୁରୋହିତାଦିଙ୍କର ଅବଭୃଥ ସ୍ନାନ ସମ୍ପାଦନ କରିବା ପାଇଁ ସ୍ତୁତି କଲେ । ବ୍ରହ୍ମାଙ୍କ ସ୍ତବରେ ସନ୍ତୁଷ୍ଟ ହୋଇ ବୈତରଣୀ ସ୍ୱୀକୃତି ପ୍ରଦାନ କରି ଆବିର୍ଭୂତା ହେଲେ ଓ ବ୍ରହ୍ମାଙ୍କର ଅନୁ-

ଗମନ କଲେ । ବ୍ରହ୍ମା କିଛି ଦୂର ଆସି ନଦୀ ପ୍ରବାହର କୌଣସି ଶବ୍ଦ ଶୁଣି ନପାରି ପଛକୁ ବୁଲିଁ ଦେଖିଲେ, ନଦୀ ଅଦୃଶ୍ୟ ହୋଇ ଅଛନ୍ତି । ଏହାର କାରଣ ଜାଣିବା ପାଇଁ ବ୍ରହ୍ମା ଧ୍ୟାନମଗ୍ନ ହେଲେ । ତହୁଁ ବ୍ରହ୍ମାଙ୍କୁ ଅଶରୀରୀ ବାଣୀ ଶୁଣାଗଲା ଯେ 'ନଦୀ ନିବିଡ଼ବନ ବାସିନୀ କୋହ୍ଲ, କନ୍ଧ, ସାନ୍ତାଳ ପ୍ରଭୃତି ଭିଲ୍ଲ ରମଣୀମାନଙ୍କର ବୀଭତ୍ସ ନଗ୍ନ ମୂର୍ତ୍ତି ଦେଖି ପାପ ଭୟରେ ଆତ୍ମଗୋପନ କରିଅଛନ୍ତି । ଯଦି ପ୍ରତି କୋଶରେ କୋଶଲିଙ୍ଗ ସ୍ଥାପନ କରାଯାଏ, ତେବେ ଶିବ ଦର୍ଶନରେ ପାପମୁକ୍ତ ହୋଇ ଯଜ୍ଞ ସ୍ଥାନକୁ ଯାଇ ପାରିବେ ।' ଏଣୁ ବ୍ରହ୍ମା ପ୍ରତି କୋଶରେ ଗୋଟିଏ ଗୋଟିଏ ଲିଙ୍ଗ ସ୍ଥାପନ କଲେ । ଏମାନଙ୍କୁ କୋଶଲିଙ୍ଗ କୁହାଯାଏ । ପ୍ରଥମ ଲିଙ୍ଗଙ୍କ ନାମ ନିଜ ନାମାନୁସାରେ ବ୍ରହ୍ମେଶ୍ୱର ରଖାଗଲା । ଏହା ଗୋନାସିକା ପର୍ବତର ଏକ କୋଶ ଦୂରରେ ପ୍ରତିଷ୍ଠିତ । ଏହିପରି କୁଶଲେଶ୍ୱର, ଅମ୍ବିକେଶ୍ୱର, ଗଟେଶ୍ୱର ଲିଙ୍ଗେଶ୍ୱର, ଭୂତେଶ୍ୱର, ରାମେଶ୍ୱର, ବିଲ୍ୱେଶ୍ୱର, ହରନ୍ତେଶ୍ୱର ପ୍ରଭୃତି କୋଶଲିଙ୍ଗ ସ୍ଥାପିତ ହୋଇ ବୈତରଣୀ ନଦୀ ଶୁଭାନୁଗମନର ଅନୁକୂଳ ହୋଇଅଛନ୍ତି । ଏହି କୋଶଲିଙ୍ଗମାନଙ୍କ ମଧ୍ୟରେ ଶେଷ ଲିଙ୍ଗ ସିଦ୍ଧେଶ୍ୱର, ଯେ କି ହରିହର ଏକମୂର୍ତ୍ତି ରୂପରେ ପୂଜା ପା'ନ୍ତି । ଏହାଙ୍କ ନାମାନୁସାରେ ସିଦ୍ଧେଶ୍ୱର ବୋଲି ଗୋଟିଏ ଗ୍ରାମ ଏହି ମନ୍ଦିର ନିକଟରେ ବିଦ୍ୟମାନ । ଯାଜପୁର ଟାଉନ୍ ଠାରୁ ଏହି ମନ୍ଦିର ଚାରି ମାଇଲ ଦୂରରେ ଅବସ୍ଥିତ । ଏହା ନିକଟରେ ହରିପୁର ଗ୍ରାମ । ଏହି ସିଦ୍ଧେଶ୍ୱର ମନ୍ଦିରନିକଟରେ ବ୍ରହ୍ମା ବୈତରଣୀକୁ ଉତ୍ତରବାହିନୀ କରି ଦେଇଥିବାରୁ ଆଉ କୋଶ ଲିଙ୍ଗ ସ୍ଥାପନ କରି ନାହାଁନ୍ତି । ଏହି ପର୍ଯ୍ୟନ୍ତ କ୍ଷେତ୍ରର ସୀମା ।

ଆତ୍ମାରାମଙ୍କ ବ୍ରହ୍ମା ଏଠାରେ ଯଜ୍ଞ କରିଥିବା ସମ୍ବନ୍ଧରେ ସୁଖ୍ୟାତ ଆଡ୍‌ଭୋକେଟ୍ ବିରୂପାକ୍ଷ କର ମହୋଦୟଙ୍କ ସ୍ୱକୃତ 'ବୈତରଣୀ' କାବ୍ୟରେ ଉଲ୍ଲେଖ କରିଅଛନ୍ତି :—

"ବିରଜା ସାବିତ୍ରୀ ହୃଦୟ ବ୍ରହ୍ମା ପୂତ ଗହଣେ
ଗାଉଥିଲେ ସାମ ତୋ କୂଳେ ବନେ ଋଷି ବ୍ରାହ୍ମଣେ ।"

× × ×

"ଦଶସସ୍ତ ତତ୍ତ୍ୱଦରଶୀ ଯେତେ ପୃଥ୍ୱୀ ଦେବତା
ଯାଜପୁର କ୍ଷେତ୍ରମଣ୍ଡଳେ ଲଭିଥିଲେ ଏକତା ।"

× × ×

ଏହି ବୈତରଣୀ ନଦୀଦ୍ୱାରା ପବିତ୍ରିତ ତଥା ସମଳଂକୃତ ଅବମୁକ୍ତ କ୍ଷେତ୍ରଟି ମହାଦେବଙ୍କର ଚରମପ୍ରୀତି ସମ୍ପାଦନ କରିବ । ସେହିମଧ୍ୟ ହନେ ସର୍ବସାଧାରଣରେ ପରିଚିତ ହେବ । ଏଣୁ ଏହି କ୍ଷେତ୍ରରାଜ ହିଁତ ଅନ୍ୟ କୌଣସି କ୍ଷେତ୍ର ସମାନ ନୁହନ୍ତି ବୋଲି କୁହାଯାଇଛି—

"ନ ତଥା କାଶୀ କୈଦାରଂ ପୌଣ୍ଡ୍ରଙ୍କଂ ନର୍ମ୍ମଦାଜନ୍ମ" (ବ୍ର: ପୁ: ଅ ୪୧)

ଅର୍ଥାତ୍ କାଶୀ, କେଦାରତୀର୍ଥ, ପୁଣ୍ଡ୍ରରୀକତୀର୍ଥ ଓ ପଦ୍ମତୀର୍ଥ ଏହି ତୀର୍ଥସବୁ ସମାନ ନୁହନ୍ତି । ଏହି କ୍ଷେତ୍ରର ସୀମା ନିରୂପଣ ବିଷୟରେ କୁହା ଯାଇଛି ।

"କୂଳ ପ୍ରଦେଶେ ତୁରଗେ ଦକ୍ଷିଣସ୍ୟ ମହୋଦଧେଃ
ନାମ୍ନା ନୀଳ ଇତି ଖ୍ୟାତୋ ବିଦ୍ୟତେ ଧରଣୀଧରଃ
ତତ୍ର ସ୍ୱୟଂ ନିବସତେ ଭଗବାନ୍ କମଳାପତିଃ ।" (ବ୍ର: ପୁ: ଅ ୪୪)

ଅର୍ଥାତ୍ ଏହି କ୍ଷେତ୍ରର ଦକ୍ଷିଣ ଦିଗରେ ଅବସ୍ଥିତ ମହୋଦଧିର କମନୀୟ କୂଳ ପ୍ରଦେଶରେ 'ନୀଳଗିରି' (ନୀଳାଚଳ) ନାମକ ଗୋଟିଏ ପର୍ବତ ଅଛି । ସେହି ପର୍ବତ କନ୍ଦରରେ ଷଡୈଶ୍ୱର୍ଯ୍ୟଶାଳୀ ଲକ୍ଷ୍ମୀପତି ଭଗବାନ୍ ଶ୍ରୀ ଜଗନ୍ନାଥ ବାସ କରି ପୁରୁଷୋତ୍ତମ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ବୃଦ୍ଧି କରି-ଅଛନ୍ତି ।

"ତସ୍ମାତ୍ ଗିରେରୁତ୍ତରସ୍ୟାଂ ଦିଶି ଦ୍ୱାଦଶ ଯୋଜନମ୍ ।
ବସ୍ତୀର୍ଣ୍ଣଂ କ୍ଷେତ୍ରଖଣ୍ଡଂ ତତ୍ ପୁଣ୍ୟକ୍ଷେତ୍ରମିଦଂ ବିଦୁଃ ॥" (ବ୍ର.ପୁ.୧ଅ,୭୬)

ସେହି ନୀଳଗିରି (ନୀଳାଚଳ)ର ଉତ୍ତର ଦିଗରେ ବାର ଯୋଜନ ଅର୍ଥାତ୍ ୪୮ କୋଶ ଦୂରରେ ଯେଉଁ ବିସ୍ତୀର୍ଣ୍ଣ ଅର୍ଥାତ୍ ପ୍ରଶସ୍ତ କ୍ଷେତ୍ରଟି ଅଛି, ତାହାକୁ ପୁଣ୍ୟ ବା ପବିତ୍ର କ୍ଷେତ୍ର ବୋଲି କୁହାଯାଉଅଛି ।

"ବୈଷ୍ଣବଂ ଚ ତଥା ସୌରଂ ଶାମ୍ଭବଂ ବ୍ରାହ୍ମମୁଚ୍ୟତେ ।
ଚତୁର୍ଥଂ ଯତ୍ର ଭୂଖଣ୍ଡଂ ତତ୍ର ସା ସରିତାଂ ବରା ॥
ଶୋନାସିକାତଃ ସମ୍ଭୂତା ପୁଣ୍ୟା ବୈତରଣୀ ନଦୀ ।
ଭୁକ୍ତିଦା ମୁକ୍ତିଦା ନୃଣାଂ ସକୃଦ୍ଦର୍ଶନ ମାତ୍ରତଃ ॥"
(ବ୍ର. ପୁ. ୧୬,୪୭,୪୮)

ଏହି ଉତ୍କଳ ଖଣ୍ଡରେ 'ବୈଷ୍ଣବ' ଅର୍ଥାତ୍ ବିଷ୍ଣୁଙ୍କର ବାସସ୍ଥଳୀ 'ଚକ୍ରତୀର୍ଥ' ପୁରୀ, ସୌର ଅର୍ଥାତ୍ ସୂର୍ଯ୍ୟକ୍ଷେତ୍ର 'କୋଣାର୍କ', 'ଶାମ୍ଭବ' ଶମ୍ଭୁତୀର୍ଥ ଭୁବନେଶ୍ୱର, ଓ 'ବ୍ରାହ୍ମକ୍ଷେତ୍ର' ଅର୍ଥାତ୍ ବ୍ରହ୍ମାଙ୍କ ଦ୍ୱାରା ନିର୍ମିତ ତଥା ପ୍ରତିଷ୍ଠିତ ବିରଜାକ୍ଷେତ୍ର ଯାଜପୁର । ଏହି ଚତୁର୍ଥ ଭୂଖଣ୍ଡରେ ଅର୍ଥାତ୍ ବିରଜାକ୍ଷେତ୍ର ଯାଜପୁରରେ ଶ୍ରେଷ୍ଠ ନଦୀ ବୈତରଣୀ ଶୋନାସିକା ପର୍ବତରୁ ଆବିର୍ଭୂତ ହୋଇ କ୍ଷେତ୍ରକୁ ପବିତ୍ର କରୁଅଛନ୍ତି । ଯେଉଁ ନଦୀକୁ ଥରେ ଦର୍ଶନ କରି ତହିଁରେ ସ୍ନାନ ତର୍ପଣାଦି କଲେ ଲୋକମାନେ ସର୍ବ ପାପରୁ ମୁକ୍ତ ହୋଇ ସଂସାରରୁ ମୁକ୍ତିଲାଭ କରନ୍ତି । ଏହା କପିଳ-ସଂହିତାରେ କୁହାଯାଇଛି :—

"ପ୍ରୟାଗାତ୍ ସାଗରାତ୍ କାଶ୍ୟାଃ ଗଙ୍ଗାୟାଃ ପୁରୁଷୋତ୍ତମାତ୍ ।
ଦ୍ରୁତଂ ବୈ ତାରୟେତ୍ ଯସ୍ମାତ୍ ନାମ୍ନା ବୈତରଣୀ ସ୍ମୃତା ॥"
(କ. ସଂ. ୬୪ ଶ୍ଲୋ)

ଅର୍ଥାତ୍ ପ୍ରୟାଗରେ ଗଙ୍ଗା ଯମୁନା ସଙ୍ଗମସ୍ଥଳରେ ସ୍ନାନକରିବା, ସାଗର ସ୍ନାନକରିବା, କାଶୀରେ ବାସକରିବା, ଗଙ୍ଗାରେ ସ୍ନାନକରିବା ଓ ପୁରୁଷୋତ୍ତମରେ ବାସକରିବା ଅପେକ୍ଷା ଏହି ନଦୀ ଶୀଘ୍ର ଲୋକମାନଙ୍କୁ ପାପ ତାପରୁ ଉଦ୍ଧାର କରୁଥିବାରୁ ଏହାର ନାମ ବୈତରଣୀ ହୋଇଅଛି ।

ଆହୁରିମଧ୍ୟ ଯେଉଁ କ୍ଷେତ୍ର ମଧ୍ୟରେ ବାରୁଣୀତୀର୍ଥ, ଗୋକର୍ଣ୍ଣତୀର୍ଥ, କପିଳତୀର୍ଥ, ସୋମତୀର୍ଥ, ଅଶ୍ୱମେଧତୀର୍ଥ, ଶଚୀତୀର୍ଥ ପ୍ରଭୃତି ଅଶେଷତୀର୍ଥ ବିରାଜିତ । ଯେଉଁ କ୍ଷେତ୍ରରେ ଆଦିମାଧବ, ଭୋଗମାଧବ ପ୍ରଭୃତି ଦ୍ୱାଦଶ

ମାଧବ ରୂପରେ ସାକ୍ଷାତ୍ 'ନାରାୟଣ' ରହିଅଛନ୍ତି; ଆଦ୍ୟାପ୍ରକୃତି ଦେବୀ ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ ପ୍ରଭୃତି ସପ୍ତମାତୃକା ଚାମୁଣ୍ଡାଙ୍କ ସହିତ ବୈତରଣୀ କୂଳରେ ଅବସ୍ଥାନ କରି ଦଶାଶ୍ୱମେଧ ଘାଟକୁ ପବିତ୍ର କରୁଅଛନ୍ତି । ସିଦ୍ଧ-ଗଣେଶ, ବରାହ, ଜଗନ୍ନାଥ ପ୍ରଭୃତି ଦେବଗଣ, ଜମ୍ବୁ, ମଦ୍‌ଗୁ, ହଂସ ପ୍ରଭୃତି ସପ୍ତରେଖା (ମହାନଦୀର ଶାଖାନଦୀ) ବିରାଜିତ ଓ ପିତୃପୁରୁଷଙ୍କ ତୃପ୍ତି-ଦାୟିନୀ ଗୟାନାଭି ତୀର୍ଥସ୍ଥାନରୂପେ ଶୋଭା ପାଉଅଛି; ଯେଉଁଠାରେ କାନ୍ୟ-କୁବ୍‌ଜାଗତ ଦଶସହସ୍ର ଶ୍ରୋତ୍ରିୟ ବ୍ରାହ୍ମଣ ନିତ୍ୟ ଯଜନ ଯାଜନାଦି ଷଟ୍‌କର୍ମ-ନିରତ ରହି ଲୋକମାନଙ୍କର ଅଶେଷ କଲ୍ୟାଣ ସାଧନ କରୁଅଛନ୍ତି ।

## କ୍ଷେତ୍ରର ବୈଶିଷ୍ଟ୍ୟ--

ଯେଉଁ ପୀଠରେ—

"ବରାହ ବିରଜା ବେଦା ବିପ୍ରା ବୈତରଣୀ ନଦୀ ।
ଶୋଭନ୍ତେ କ୍ଷେତ୍ରରାଜେଽସ୍ମିନ୍ ବକାରାଃ ପଞ୍ଚଦୁର୍ଲ୍ଲଭାଃ ॥" (କ.ସ)

ଅର୍ଥାତ୍ 'ବ'କାର ଆଦି ଅକ୍ଷରରେ ଥିବା ପ୍ରଥମରେ 'ବରାହ' ଦ୍ୱିତୀୟରେ 'ବିରଜା' (ପୀଠର ଅଧୀଶ୍ୱରୀ) ତୃତୀୟରେ 'ବେଦ' (ଋକ୍, ଯଜୁଃ, ସାମ ଓ ଅଥର୍ବ ଏହି ଚାରି ବେଦର ଅଧ୍ୟୟନ ଅଧ୍ୟାପନ) ଚତୁର୍ଥରେ 'ବିପ୍ର' (ଶ୍ରୋତ୍ରିୟ ଚତୁର୍ବେଦୀ ବେଦଜ୍ଞ ବ୍ରାହ୍ମଣ) ପଞ୍ଚମରେ ବୈତରଣୀ ନଦୀ ଏହି ପାଞ୍ଚୋଟି ଦୁର୍ଲ୍ଲଭ ରତ୍ନ ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ଏଣୁ ଏ କ୍ଷେତ୍ର ଯେ ସର୍ବଶ୍ରେଷ୍ଠ ଏହା କହିବା ବାହୁଲ୍ୟ ମାତ୍ର । ଯଥାକ୍ରମରେ ଏସମସ୍ତ ବିଶଦଭାବରେ ବର୍ଣ୍ଣନା କରାଯାଉଅଛି ।

## ଦେବଦେବୀଙ୍କର ଉତ୍ପତ୍ତିର ପୂର୍ବାଭାସ—

ଏହି ପୁଣ୍ୟତୋୟା ବୈତରଣୀକୂଳରେ ପରମେଷ୍ଠୀ, ପଦ୍ମଯୋନି ବ୍ରହ୍ମା ଯଜ୍ଞ ସମ୍ପାଦନ କରି କ୍ଷେତ୍ରକୁ ପ୍ରତିଷ୍ଠିତ କରିଥିବାର ପ୍ରମାଣ ବ୍ରହ୍ମାଣ୍ଡ-ପୁରାଣରୁ ମିଳେ :—

"ତସ୍ୟାସ୍ତଟ ପ୍ରଦେଶେ ତୁ ବ୍ରହ୍ମା ଲୋକପିତାମହଃ ।
ମନୋହରେ ଦେବନଦ୍ୟାସ୍ତତାନ ମଖାମାଦସ୍ତ୍ ॥"

ବ୍ର. ପୁ. ୧ଅ, ୫୫ ।

+ + + +

ବ୍ରହ୍ମା ଏହି ସ୍ଥାନକୁ ଅତି ପବିତ୍ର ସ୍ଥାନବୋଲି ମନେକରି ଏହି ଦେବନଦୀ ବୈତରଣୀର ମନୋରମ ତଟପ୍ରଦେଶରେ ଦେବର୍ଷି, ବ୍ରହ୍ମର୍ଷି, ଯକ୍ଷ, ସାଧ୍ୟ, ଗନ୍ଧର୍ବ, ଅଷ୍ଟବସୁ ଓ ରୁଦ୍ରଗଣଙ୍କ ସହିତ ଅତି ଆଗ୍ରହ ସହକାରେ ଯଜ୍ଞାରମ୍ଭ କଲେ ।

ବ୍ରହ୍ମା କାହିଁକି ଏହି କ୍ଷେତ୍ରରେ ଯଜ୍ଞ କରିଥିଲେ, ଏ ବିଷୟରେ ଶିବପୁରାଣରୁ ପୌରାଣିକ ବାର୍ତ୍ତା ଶୁଣାଯାଏ—

ଏକଦା ବ୍ରହ୍ମା ଓ ନୃସିଂହ ନାରାୟଣଙ୍କ ମଧ୍ୟରେ ନିଜ ନିଜର ଉତ୍କର୍ଷ ନେଇ କଳହ ସୃଷ୍ଟି ହେଲା । ଏହାର ସମାଧାନ ପାଇଁ ଉଭୟେ ସଦାଶିବଙ୍କୁ ମଧ୍ୟସ୍ଥ ମାନିବାରୁ ଶିବ କହିଲେ—ଯେ ମୋର ପାଦଠାରୁ ମସ୍ତକ ପର୍ଯ୍ୟନ୍ତ ଯାଇ ଆସି ପାରିବ, ସେ ନିଶ୍ଚୟ ଏ ସଂସାରରେ ବଡ଼ ବୋଲି ବିବେଚିତ ହେବ । ନୃସିଂହ ଜାନୁପର୍ଯ୍ୟନ୍ତ ଯାଇ ଫେରି ଆସି କହିଲେ—ହେ ମହାଦେବ ! ଆପଣଙ୍କ ପାଦଠାରୁ ମସ୍ତକ ପର୍ଯ୍ୟନ୍ତ ଯିବାକୁ କେହି ସମର୍ଥ ନୁହନ୍ତି । ବ୍ରହ୍ମା ବ୍ୟଗ୍ର ହୋଇ ଶିବଙ୍କ ମସ୍ତକପର୍ଯ୍ୟନ୍ତ ଯାଉଁ ଯାଉଁ କେତକୀଙ୍କୁ ଦେଖି ଆଉ କେତେଦୂର ଯିବାକୁ ହେବ ବୋଲି ପଚାରିବାରୁ କେତକୀ ଉତ୍ତରକଲେ—ମୁଁ ଛଅ ମାସ ହେଲା ଶିବଙ୍କ ମସ୍ତକରୁ ଆସିବାକୁ ଆରମ୍ଭକରି ଆସି ପାରିନାହିଁ । ତାହା ଶୁଣି ବ୍ରହ୍ମା କହିଲେ—କେତକୀ ! ତୁମ୍ଭେ ମୋ ବିଷୟରେ ଶିବଙ୍କୁ ପଚାରିବ ଯେ, ବ୍ରହ୍ମା କାହିଁକି ମୋତେ ଆପଣଙ୍କ ମସ୍ତକରୁ ଆଣିଅଛନ୍ତି ? ବ୍ରହ୍ମାଙ୍କ କହିବା ଅନୁସାରେ କେତକୀ ଶିବଙ୍କ ଆଗରେ ବ୍ରହ୍ମା କହିଥିବା କଥା କହିବାରୁ ଶିବ ତାହାଙ୍କୁ (ବ୍ରହ୍ମାଙ୍କୁ) ମିଥ୍ୟାବାଦୀ ବୋଲି ରୁଷ୍ଟହୋଇ ଜଗତରେ ବ୍ରହ୍ମାଙ୍କୁ 'ଅପୂଜ୍ୟ' ହେବାପାଇଁ ଅଭିଶାପ ଦେଲେ ।

ଏହି ଅଭିଶାପର ଖଣ୍ଡନ ବିଷୟରେ ବ୍ରହ୍ମା ଶିବଙ୍କୁ ଅନୁରୋଧ କରିବାରୁ ଶିବ କହିଲେ—ତୁମ୍ଭେ ଯଦି ପବିତ୍ର ବୈତରଣୀ କୂଳରେ ପବିତ୍ରକ୍ଷେତ୍ରରେ

ଯଜ୍ଞାନୁଷ୍ଠାନ କରି ଯଜ୍ଞପୁରୁଷ ବିଷ୍ଣୁଙ୍କୁ ପୂଜାଦ୍ୱାରା ସନ୍ତୁଷ୍ଟ କରିପାରିବ ତେବେ ଏହି ଅଭିଶାପରୁ ମୁକ୍ତହେବ । ତେଣୁ ବ୍ରହ୍ମା ଯଜ୍ଞ ସମ୍ପାଦନ କଲେ । ଯଜ୍ଞରେ ବିଷ୍ଣୁ ପ୍ରସନ୍ନହୋଇ ବ୍ରହ୍ମାଙ୍କୁ ସ୍ତ୍ରୀରୂପରେ 'ସୁଭଦ୍ରା' ବେଶରେ ପୂଜା ପାଇବାକୁ ବରଦାନ କଲେ । ଏଣୁ, ଶିବ ବଳଦେବ ରୂପରେ, ସ୍ୱୟଂ ବିଷ୍ଣୁ ଜଗନ୍ନାଥ ରୂପରେ ଓ ବ୍ରହ୍ମା ସୁଭଦ୍ରା ରୂପରେ ପୂଜା ପାଉଅଛନ୍ତି ।

## କ୍ଷେତ୍ର ପରିଚୟ :—

ପ୍ରଥମେ ବ୍ରହ୍ମା ବକୁଳ, ଚମ୍ପକ, ପୁଗ, ପୁନ୍ନାଗ, ତାଳ, ତମାଳ ନାରିକେଳାଦି ବୃକ୍ଷରାଜିରେ ବିରାଜିତ ଏହି ପବିତ୍ର ବୈତରଣୀକୂଳ-ପ୍ରଦେଶକୁ ଯଜ୍ଞୀୟସ୍ଥାନ ରୂପରେ ନିରୂପଣ କରିଥିଲେ । କାରଣ, ପୂର୍ବ-କାଳରେ ଦକ୍ଷଯଜ୍ଞରେ ଦେହତ୍ୟାଗ କରିଥିବା ସତୀଙ୍କର ସୁଦର୍ଶନଚକ୍ରଚ୍ଛିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଏହି ଭାରତ ଭୂଖଣ୍ଡରେ ଭିନ୍ନ ଭିନ୍ନ ସ୍ଥାନରେ ବାଉନ ଖଣ୍ଡ ହୋଇ ପଡ଼ି ବାଉନଟି ପୁଣ୍ୟ ପୀଠରେ ପରିଣତ ହୋଇଅଛି । ତନ୍ମଧ୍ୟରୁ ଏଠାରେ ନାଭିଟି ପଡ଼ି ଏହା ନାଭିପୀଠ ନାମରେ ନାମିତ ହୋଇଥିବାରୁ ଏହାକୁ ଗୋଟିଏ ଶକ୍ତି ପୀଠରେ ପରିଣତ କରିବା ଅଭିପ୍ରାୟରେ ବ୍ରହ୍ମା ତନ୍ତ୍ରୋକ୍ତ ତ୍ରିକୋଣାକାର ଶକ୍ତିଯନ୍ତ୍ରର ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ଏହି କ୍ଷେତ୍ରକୁ ତ୍ରିଭୁଜାକାର ବା ଶକଟାକାର କ୍ଷେତ୍ରରେ ଅଙ୍କିତ କଲେ । ଯଥା—

"ତ୍ର୍ୟସ୍ରାକାର ମିଦଂ କ୍ଷେତ୍ରଂ ବିରଜୋ ନାମ ବେଧସଃ,
କୋଣେ ଦକ୍ଷିଣତୋ ଲିଙ୍ଗଂ ବାରୁଣଂ ପୂର୍ବମୀରିତମ୍,
କୋଣେ ପ୍ରାଚ୍ୟସ୍ତଥା ଲିଙ୍ଗଂ କାଲଲଟ ମିତି ଶ୍ରୁତମ୍ ।"

(ବ୍ର: ପୁ: ୩ଅ, ୪୦, ୪୧)

× × ×

"କ୍ଷେତ୍ରଂ ବୈରଜସଂ ପୁଣ୍ୟଂ ହ୍ରୋଶପଞ୍ଚକବିସ୍ତୃତମ୍ ।
ଏକାଦଶସ୍ତ୍ରବକାରଂ ପୁଣ୍ୟତୀର୍ଥବିଭୂଷିତମ୍ ॥"

( କ: ସଂ: ୨୪ ଶ୍ଳୋ )

ଏହି ବିରଜା କ୍ଷେତ୍ରଟି ତ୍ରିକୋଣାକାର, ଏକାଦଶସ୍ୱର ଅର୍ଥାତ୍ 'ଏ' କାର ସଦୃଶ । ଏହାକୁ ପଞ୍ଚକୋଶୀ ବା ପଞ୍ଚକ୍ରୋଶୀ ବୋଲି କୁହାଯାଏ । ଏହାର ତିନିକୋଣରେ ବିଲେଶ୍ୱର, ଖିଲଖିଲେଶ୍ୱର ଓ ବରୁଣେଶ୍ୱର ନାମକ ତିନି ଲିଙ୍ଗ ବିଦ୍ୟମାନ । ପ୍ରତ୍ୟେକ ଲିଙ୍ଗଠାରୁ ପ୍ରତ୍ୟେକ ଲିଙ୍ଗର ଦୂରତ୍ୱ ପାଞ୍ଚକୋଶ । ଏହି ପାଞ୍ଚକୋଶ ମଧ୍ୟରେ ବହୁତୀର୍ଥ, ବହୁ ଦେବ-ଦେବୀ ଓ ଶିବ ଲିଙ୍ଗ ପ୍ରତିଷ୍ଠିତ ହୋଇଅଛନ୍ତି ।

"ତ୍ରିଷୁ କୋଶେଷୁ ଦେବ ମମ ଚିତ୍ତୋତ୍ସବାପି ଚ ।
ନିବାସଭୂତଂ ଦେବେଶି କ୍ଷେତ୍ରମେତ୍ ମନୁତ୍ତମମ୍ ॥"

( କ: ପୁ: ୪ଅ, କ: ସ: ୨୫ ଶ୍ଳୋ )

ଶିବ କହିଲେ— ହେ ଦେବ ପାର୍ବତି ! ଏହି ପାଞ୍ଚକୋଶ ମଧ୍ୟରୁ ତିନିକୋଶ ଅତି ପବିତ୍ର । ଯେଉଁ କ୍ଷେତ୍ରରେ ତୁମ୍ଭର, ମୋର ଓ ବିଷ୍ଣୁଙ୍କର ଅତି ପ୍ରିୟ ବାସସ୍ଥାନ ଅଟେ ।

"ଯତ୍ରାଷ୍ଟୌ ଚଣ୍ଡିକା ଦେବ୍ୟ ଶ୍ଚତ୍ୱାରୋ ଭୈରବାସ୍ତଥା ।
ରୁଦ୍ରା ସ୍ତ୍ରୟୋଦଶାଖ୍ୟାତା ଦ୍ୱାଦଶ ଶ୍ରୀଧରା ଅପି ॥
ତିସ୍ରୋ ନଦ୍ୟସ୍ତଥା ରେଖାଃ ସ୍ରୋତସାଂ ସପ୍ତ ବିଂଶତିଃ ।
ବିଦ୍ୟନ୍ତେ ତ୍ରୀଣି ପୁଣ୍ୟାନି ସିଦ୍ଧାନି ବିବରାଣି ଚ ॥
ଅଷ୍ଟ ଷଷ୍ଟି ଚ ତୀର୍ଥାନି ବିଦୁଃ ଯତ୍ର ଧରାଧରାନ୍ ।
ଏବମ୍ବିଧମିଦଂ କ୍ଷେତ୍ରଂ ମମାନ୍ତ ଗୃହ ମନ୍ଦିରେ ॥
ଯତ୍ର ବାସଂ କାମୟନ୍ତେ ଦେବା ଅପି ସୁଧାଭୁଜଃ ।
ଈଦୃଶଃ କ୍ଷେତ୍ରମେତସ୍ୟ ମମ ଶୈଳେନ୍ଦ୍ର ନନ୍ଦିନି ।
ପ୍ରଦକ୍ଷିଣ ବିଧାନେନ ନରୋ ଦେବତ୍ୱ ମେଷ୍ୟତି ॥"

( ବ୍ର:ପୁ: ୪ଅ ୮-୧୨, କ:ସ: ୨୭-୨୯ )

ହେ ଦେବ ! ଯେଉଁ କ୍ଷେତ୍ରରେ ଅଷ୍ଟଚଣ୍ଡିକା, ନବଶକ୍ତି, ଚତୁର-ଭୈରବ, ତ୍ରୟୋଦଶରୁଦ୍ର, ଦ୍ୱାଦଶମାଧବ, ତିନୋଟି ନଦୀ, ସାତୋଟି ରେଖା (ଶାଖାନଦୀ) ତିନୋଟି ପୁଣ୍ୟ ସିଦ୍ଧବିବର, ଅଠଷଠୀ ତୀର୍ଥସ୍ଥାନ ଓ ସାତୋଟି

କ୍ଷୁଦ୍ର ବୃହତ୍ ପର୍ବତ ବିଦ୍ୟମାନ । ହେ ଅମ୍ବିକେ ! ଏହି କ୍ଷେତ୍ର ଉତ୍ତମକୁ ଯେଉଁମାନେ ବିଧିଅନୁସାରେ ପ୍ରଦକ୍ଷିଣ ବା ପରିକ୍ରମା କରନ୍ତି, ସେମାନେ ଦେବତ୍ବ ଲାଭ କରନ୍ତି । ଆହୁରି ମଧ୍ୟ ଯେଉଁ କ୍ଷେତ୍ରରେ ଅମୃତଭୋଜୀ ଦେବତାମାନେ ମଧ୍ୟ ବାସ କରିବାକୁ ଇଚ୍ଛା କରନ୍ତି ।

ଏହି କ୍ଷେତ୍ରର ସୀମା ନିର୍ଦ୍ଦେଶକ ରୂପରେ 'ବିଲ୍ଲେଶ୍ବର' ବାରି-ଗଡ଼ିଆଗ୍ରାମ ନିକଟସ୍ଥ ବୈତରଣୀକୂଳରେ କ୍ଷେତ୍ରର ପଶ୍ଚିମ ସୀମାକୁ ଚିହ୍ନିତ କରୁଅଛନ୍ତି । ପୂର୍ବସୀମା ନିର୍ଦ୍ଦେଶକ ଭାବରେ ବାଲେଶ୍ବର ଜିଲ୍ଲାନ୍ତର୍ଗତ ସୋହୋଡ଼ା ଗ୍ରାମ ନିକଟରେ 'କୀଲାଲଟେଶ୍ବର' ( ଡାକନାମ ଖିଲଟେଶ୍ବର ) ଲିଙ୍ଗ ସ୍ଥାପିତ ହୋଇଅଛନ୍ତି । କୀଲାଲଟେଶ୍ବରଙ୍କ ନାମକରଣରେ ତାତ୍ପର୍ଯ୍ୟ—

"ତତ୍ର ଶାତାତପଃ ପୂର୍ବଂ ତପସ୍ତେପେ ଯତାତ୍ମବାନ୍ ।  
ସ ତୁ କୀଲାଲଭୁକ୍ ତେପେ ବର୍ଷାଣାଂ ପଞ୍ଚବିଂଶତିଃ ॥  
ତଦପ୍ୟପାସ୍ୟ ପାନୀୟଂ ସତ୍ୟବନ୍ତଂ ମହେଶ୍ବରମ୍ ।  
ନିରାହାର ସ୍ତପସ୍ତେପେ ତତଃ ପ୍ରାଦୁରଭୂଚ୍ଛିବଃ ॥  
ତତଃ ପ୍ରଭୃତିଃ ସୋଽପି କମଣ୍ଡଳୁଜଳୈଃ ଶୁଭୈଃ ।  
ଅବିଚ୍ଛିନ୍ନମହାଧାରୈ ରଭ୍ୟଷିଞ୍ଚନ୍ମହେଶ୍ବରମ୍ ॥  
ଏବଂ ଦ୍ୱାଦଶ ବର୍ଷାଣି ସ୍କନ୍ଦ ! ଶାତାତପୋ ମୁନିଃ ।  
ଅବିଚ୍ଛିନ୍ନ ପ୍ରବାହେଣ କମଣ୍ଡଳୁଜଳେନ ସଃ ॥"

( ବ୍ର . ପୁ. ୩ ଅ ୪୨—୪୫ )

ପୂର୍ବକାଳରେ ଶାତାତପ ନାମକ ଜଣେ ଋଷି ଇନ୍ଦ୍ରିୟ ସଂଯମପୂର୍ବକ ପଚିଶବର୍ଷକାଳ କେବଳ କୀଲାଳ (ଜଳ) ପାନକରି ତପସ୍ୟା କରୁଥିଲେ । ତତ୍ପରେ ସେହି ଜଳପାନବର୍ଜନ କରି କଠିନ ତପସ୍ୟା କରିବାରୁ ଶିବ ସନ୍ତୁଷ୍ଟ ହୋଇ ଆବିର୍ଭୂତ ହେଲେ । ଶିବଙ୍କୁ ଆବିର୍ଭୂତ ହେବାର ଦେଖି ଅଭିଷେକ ପ୍ରିୟ ଶିବଙ୍କୁ କମଣ୍ଡଳୁ ଜଳର ଅବିଚ୍ଛିନ୍ନ ଧାରାରେ ବାରବର୍ଷ ଅଭିଷେକ କରିଥିଲେ । ଏଣୁ, ଏହି ଶିବଙ୍କ ନାମ 'କୀଲାଲଟେଶ୍ବର' ହୋଇ-ଅଛି । ଆହୁରି ମଧ୍ୟ ମୁନି ଶାତାତପ ସନ୍ତୁଷ୍ଟ ଶିବଙ୍କୁ ବର ପ୍ରାର୍ଥନା କଲେ ।

"ମଦର୍ଥେ ସୁପ୍ରସନ୍ନଂ ତ୍ୱାଂ ଯଃ ପଶ୍ୟତି ନରଃ ଶୁଚିଃ ।
ପୁତ୍ରକାମୋ ଲଭେତ୍ ପୁତ୍ରୀ ବାକ୍‌କାମୋ ବାଗ୍ମିତାଂ ବ୍ରଜେତ୍ ॥"
(ବ୍ର: ପୁ: ୩ : ୪୦)

ଅର୍ଥାତ୍ ପୁତ୍ରଲାଭ କରିବା ଅଭିପ୍ରାୟରେ ତଥା ବିଦ୍ୟାଲାଭ କରିବା ବା ବାକ୍‌ପଟୁ ହେବା ଇଚ୍ଛାରେ ଯେଉଁ ବ୍ୟକ୍ତି ଶୁଦ୍ଧପୂତ ଭାବରେ ଏହି ଶିବଙ୍କୁ ଜଳଧାରାରେ ଅଭିଷେକ କରେ ଓ ଦର୍ଶନ କରେ ସେ ମନୋଽଭୀଷ୍ଟ ବର ଲାଭ କରିଥାଏ ।

କ୍ଷେତ୍ରର ଦକ୍ଷିଣସୀମା ନିର୍ଦ୍ଦେଶ କରିବା ପାଇଁ ଅରେଇ ଗ୍ରାମର ଦେଢ଼ ମାଇଲ ପୂର୍ବଭାଗରେ ବରୁଣେଶ୍ୱର ଲିଙ୍ଗ ସ୍ଥାପନ କଲେ । ଜଳାଧିପତି ବରୁଣଙ୍କ ନାମାନୁସାରେ ଲିଙ୍ଗଙ୍କର ନାମ ନାମିତ ହୋଇଥିବାରୁ ଏହି ଲିଙ୍ଗ ସର୍ବଦା ଜଳମଗ୍ନ ଥାଆନ୍ତି । ଏହି ମନ୍ଦିରର ପଶ୍ଚିମରେ ବରୁଣ ଦେବଙ୍କ ତପଃସ୍ଥାନ । ଏହାକୁ ବରୁଣତୀର୍ଥ କୁହାଯାଏ । କେବଳ ଶିବରାତ୍ରି ଦିନ ପୂଜକ ବ୍ରାହ୍ମଣମାନେ ମନ୍ଦିରରୁ ଜଳ ନିଷ୍କାସନ କରି ଦେବତାଙ୍କ ସ୍ୱରୂପ ଦର୍ଶନ କରନ୍ତି । ତତ୍‌ପରେ ଜଳ ଝରି କ୍ରମେ ଲିଙ୍ଗ ପୂର୍ବପରି ଜଳମଗ୍ନ ହୁଅନ୍ତି । ଏହି ଶିବରାତ୍ରି ଦିନ ମକର ସଂକ୍ରାନ୍ତି ଦିନ ଏଠାରେ ଗୋଟିଏ ବଡ଼ ଧରଣର ମେଳା ହୁଏ । ଏ ଅଞ୍ଚଳରେ ଏହା 'ବରୁଣେଶ୍ୱରମେଳା' ନାମରେ ବିଖ୍ୟାତ । ପ୍ରତିଦିନ ବ୍ରାହ୍ମଣମାନେ ଲିଙ୍ଗଙ୍କୁ ଜଳ ଉପରେ ପୂଜା କରନ୍ତି । ବର୍ତ୍ତମାନ ଏହି ଲିଙ୍ଗଙ୍କ ନାମାନୁସାରେ 'ବରୁଣେଶ୍ୱର ହାଇସ୍କୁଲ୍' ନାମରେ ଗୋଟିଏ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ଥାପିତ ହୋଇ ସ୍ଥାନର ମାହାତ୍ମ୍ୟ ବୃଦ୍ଧି କରୁଅଛି ।

**ଶୁଭସ୍ତମ୍ଭ ବା ଯଜ୍ଞଯୂପ :—**

ଯେପରି ବାଜପେୟ, ଅଶ୍ୱମେଧ, ରାଜସୂୟାଦି ଯଜ୍ଞରେ ଯଜ୍ଞର ନିଦର୍ଶନ ସ୍ୱରୂପ ଯଜ୍ଞାନ୍ତ ଯୂପାରୋପଣ କରାଯାଏ, ସେହିପରି ଏଠାରେ ଦେବର୍ଷି ବ୍ରହ୍ମର୍ଷିଙ୍କ ଆନୁକୂଲ୍ୟରେ ବ୍ରହ୍ମା ଯଜ୍ଞକରି ଯଜ୍ଞାନ୍ତ ଯୂପାରୋପଣ କରିଅଛନ୍ତି । ଏହି ଯଜ୍ଞ ଯୂପରୁ ବ୍ରହ୍ମା ଯଜ୍ଞ ସମ୍ପାଦନା କରିବା ବିଷୟ ନିଃସନ୍ଦେହ । ଏହାକୁ ଲୋକେ 'ଶୁଭସ୍ତମ୍ଭ' କହି ଆସୁଅଛନ୍ତି ।

''ବଟ ଖଲ୍ଲ କାଲଲ୍ଟ ଲିଙ୍ଗାନାଂ ମଧ୍ୟ ଏବଚ ।
ଏତସ୍ୟ ମଧ୍ୟଦେଶେ ତୁ ଶୁଭସ୍ତମ୍ଭୋ ବିରାଜତେ ॥'' (କଃ ଫଃ ୨୧)

ଅର୍ଥାତ୍ ବଟେଶ୍ୱର ବା ବଟୁକେଶ୍ୱର, ଖଲ୍ଲେଶ୍ୱର ଓ କାଲ୍ଲଲଟେଶ୍ୱର ଲିଙ୍ଗମାନଙ୍କର ମଧ୍ୟଭାଗରେ ଶୁଭସ୍ତମ୍ଭ ବିଦ୍ୟମାନ ।

ଗୃହ, ଅଟ୍ଟାଳିକା ମନ୍ଦିରାଦି ନିର୍ମାଣ କରିବାପୂର୍ବରୁ ସ୍ଥାନଶୁଦ୍ଧି ପାଇଁ ଯେପରି ସ୍ତମ୍ଭାରୋପଣ ବା ଯଜ୍ଞାଦି କର୍ମରେ ଅଙ୍କୁରାରୋପଣ କରାଯାଏ, ସେହିପରି ବ୍ରହ୍ମା ଯଜ୍ଞାରମ୍ଭ ପୂର୍ବରୁ ଏହି ତ୍ରିକୋଣାକାର ବା ଶଙ୍କଟାକାର ତ୍ରିକୋଣ ଶକ୍ତିପୀଠର ମଧ୍ୟ ସ୍ଥାନରେ ବିନ୍ଦୁ ସ୍ୱରୂପ ୩୧ ଫୁଟ ଉଚ୍ଚତା ବିଶିଷ୍ଟ ୧୬ ପହଲିଆ ବା ଷୋଳଟି ଅଂଶ ଥିବା ଗୋଟିଏ ମସୃଣ ଅକ୍ଷୁଣ୍ଣ ବିଶାଳ ମୁଗୁନି ପଥର ନିର୍ମିତ ସ୍ତମ୍ଭ ଆରୋପଣ କଲେ । ଏହାର ମୂଳଭିତ୍ତି ଯେ କେତେଦୂର ମାଟିତଳକୁ ଯାଇଛି, ତାହା ଏ ପର୍ଯ୍ୟନ୍ତ ନିରୂପିତ ହୋଇ ପାରି ନାହିଁ । ଇଂରେଜ ରାଜତ୍ୱ କାଳରେ କେତେକ ପ୍ରତ୍ନତତ୍ତ୍ୱବିତ୍ ଏହାକୁ ସ୍ଥାନାନ୍ତରିତ କରି ନେବାକୁ ବହୁତ ଯତ୍ନକରି ନେଇ ପାରିଲେ ନାହିଁ । ତାହାର ଚିହ୍ନ ସ୍ୱରୂପ ଅଦ୍ୟାପି ସ୍ତମ୍ଭର ମୂଳପ୍ରଦେଶରେ (ପାଦପୀଠରେ) ଦୁଇଟି ଗର୍ତ୍ତଥିବାର ଦେଖାଯାଏ । ଏହାର ସୁରକ୍ଷା ପାଇଁ ବ୍ରିଟିଶସରକାରଙ୍କ ଅମଳରୁ ଗୃହ-ପାଖରେ ଗୋଟିଏ ଲୁହାବାଡ଼ ଦିଆଯାଇଛି । ଏହା ଚଣ୍ଡେଶ୍ୱର ଗ୍ରାମ ମୁଣ୍ଡରେ ଅବସ୍ଥିତ । କିମ୍ବଦନ୍ତୀରୁ ଜଣାଯାଏ, ଏହି ସ୍ତମ୍ଭଉପରେ ଗୋଟିଏ ଗରୁଡ଼ମୂର୍ତ୍ତି ରହିଥିଲା । ମୁସଲମାନ ରାଜତ୍ୱ କାଳରେ କଳାପାହାଡ଼ ଏହାର ପକ୍ଷଟିଏ ଛେଦନ କରି ତଳକୁ ଗଡ଼ାଇ ପକାଇଥିଲା । କେତେକାଳ ପରେ ଲୋକେ ଏହି ଭଗ୍ନ ଗରୁଡ଼ ମୂର୍ତ୍ତିକୁ ଆଣି ବାହାବଳପୁର ଛକରେ ମଧୁପୁର ଗ୍ରାମସ୍ଥିତ ନୃସିଂହନାରାୟଣଙ୍କ ମନ୍ଦିରରେ ରଖି ଅଛନ୍ତି । ଏହାର ଗୋଟିଏ ଡେଣା (ପକ୍ଷ) ଏହି ଶୁଭ ସ୍ତମ୍ଭ ନିକଟବର୍ତ୍ତୀ କବିମଞ୍ଜୁଳ, ସାହିତ୍ୟିକ, ଗାଳ୍ପିକ, ନାଟ୍ୟକାର ୰ କୃଷ୍ଣପ୍ରସାଦ ବସୁଙ୍କ ବଡ଼ପୋଖରୀ କୂଳରେ ପଡ଼ିଅଛି । ପ୍ରତିବର୍ଷ କାର୍ତ୍ତିକପୂର୍ଣ୍ଣିମା ପୂର୍ବ ପଞ୍ଚକ ଦ୍ୱାଦଶୀଦିନ ଏହି ଗରୁଡ଼ଙ୍କ ପାଖରେ ଗୋଟିଏ ସ୍ଥାନୀୟ ମେଳା ହୁଏ । ଏହାକୁ ଗରୁଡ଼ ଦ୍ୱାଦଶୀ ବୋଲି କହନ୍ତି । ନିମ୍ନୋକ୍ତ ମନ୍ତ୍ର ପାଠ କରି ଗରୁଡ଼ଙ୍କୁ ନମସ୍କାର କରାଯାଏ ।

"ଖଗେନ୍ଦ୍ର କଶ୍ୟପୋଦ୍ଭୂତ କାଦ୍ରବେୟକୁଳାନ୍ତକ ।
ଅରୁଣାବରଜଂ ନୌମି ସର୍ବପାପଂ ପ୍ରମୋଚୟ ॥"

୧ । ଏହି ଶୁଭସ୍ତମ୍ଭର ଉଚ୍ଚତା ମାଟିଠାରୁ ଗରୁଡ଼ଥିବା ଚୌକର ଉପର-ଆସ୍ଥାନ ପର୍ଯ୍ୟନ୍ତ ୩୧ ଫୁଟ ଅଟେ । ଏହା ତିନ ଖଣ୍ଡରେ ବିଭକ୍ତ ।
୧– ପାଦପୀଠ, ୨– ସ୍ତମ୍ଭ, ୩– ଚୌକ ବା ଆସ୍ଥାନ ।

୨ । ପାଦପୀଠ ଉପରେ ଥିବା ମୁଗୁନି ପ୍ରସ୍ତରନିର୍ମିତ ସ୍ତମ୍ଭର ଉଚ୍ଚତା ୧୮–ଫୁଟ ୨ଇଞ୍ଚ । ଏହା ଗୋଟିଏ ପଥର ।

୩ । ଯେଉଁ ପାଦପୀଠ ଉପରେ ସ୍ତମ୍ଭଟି ବସିଛି, ତାହାର ଉଚ୍ଚତା ୪ଫୁଟ ୮ ଇଞ୍ଚ ଅଟେ । ଏହା ଦୁଇଟି ପଥର ।

୪ । ମୁଗୁନି ପଥର ସ୍ତମ୍ଭ ଉପରେ ଥିବା 'ଚୌକ' ଯାହା ଉପରେ ଗରୁଡ଼ ଥିଲ, ତାହାର ଉଚ୍ଚତା ଆଠଫୁଟ ଦେଢ଼ଇଞ୍ଚ । ଏହି ଚୌକ ଚୂରକୋଣିଆ । ଏହାର ତଳଭାଗ ପଥରଟି ଗୋଲ, ଏହା ମଧ୍ୟ ଗୋଟିଏ ମୁଗୁନି ପଥର । ଏହି ପଥରଟି ଚୌକ ସହିତ ପ୍ରାୟ ଦେଢ଼ଇଞ୍ଚ ଦକ୍ଷିଣକୁ ଚହଲି ଯାଇଛି । ଏହାକୁ କେହି ନେବାପାଇଁ ହଲାଇଥିବାର ଅନୁମାନ କରାଯାଏ । ଏହି ଆସ୍ଥାନ ଚୌକଟି ଗୋଟିଏ ଷୋଡ଼ଶଦଳ ପଦ୍ମ ଉପରେ ପ୍ରତିଷ୍ଠିତ ।

୫ । ମୁଗୁନି ପ୍ରସ୍ତର ନିର୍ମିତ ଶୁଭସ୍ତମ୍ଭ ଗୋଲେଇର ମୋଟେଇ ଦଶଫୁଟ ୪" ଇଞ୍ଚ । ଏହା ୧୬ଟି ପହଲ ବା ଅଂଶରେ ଶୋଭିତ ।

୬ । ପାଦପୀଠର ବାୟୁକୋଣରେ ଓ ଈଶାନ କୋଣରେ ଦୁଇଟି ଗର୍ତ୍ତ, ସେଥିରେ କୌଣସି ଜଞ୍ଜିର ଲଗାଯାଇଥିବା ଅନୁମାନ କରାଯାଏ ।

ଏହି ସ୍ତମ୍ଭଉପରେ ବଦନେ ଗରୁଡ଼ଥିବାର ଯଥେଷ୍ଟ ଯାଥାର୍ଥ୍ୟ ଅଛି । କାରଣ, ବ୍ରହ୍ମା ଏହି କ୍ଷେତ୍ରରେ ଯଜ୍ଞାରମ୍ଭ କରିବା ପୂର୍ବରୁ କ୍ଷେତ୍ରର କେନ୍ଦ୍ର ସ୍ଥଳରେ 'ଶୁଭସ୍ତମ୍ଭ' ଆରୋପ କରିଥିଲେ । ଶୂନ୍ୟ ସ୍ତମ୍ଭଟିଏ ଆରୋପ କରିବା ଅସମୀଚୀନ ତଥା ଆସ୍ତିକବିରୁଦ୍ଧ ହେତୁ ଯଜ୍ଞର ପ୍ରଧାନ ଦେବତା



ବରାହ ମର୍ତ୍ତି



ଶୁଭ ସ୍ତମ୍ଭ ( ଲେଖକଙ୍କ ବାସଗୃହ ନିକଟରେ ଅବସ୍ଥିତ )

ଯଜ୍ଞପୁରୁଷ ନାରାୟଣଙ୍କ ଆବାହନ ପୂର୍ବରୁ ନାରାୟଣଙ୍କ ବାହନ ଗରୁଡ଼ଙ୍କୁ ଆବାହନ ପୂର୍ବକ ପୂଜା କରିବା ବିଧିସଙ୍ଗତ । ଯେପରି ଦେବଦେବ ମହାଦେବଙ୍କୁ ପୂଜା କରିବା ପୂର୍ବରୁ ତାଙ୍କର ବାହନ ବୃଷଭକୁ ଅର୍ଚ୍ଚନା କରାଯାଏ, ସେହିପରି ବ୍ରହ୍ମା ଗରୁଡ଼ଙ୍କୁ ସ୍ତମ୍ଭାଗ୍ରରେ ପ୍ରତିଷ୍ଠିତ କରି ଅବଶ୍ୟ ପୂଜା କରିଥିବେ, ଏଥିରେ ସନ୍ଦେହ ନାହିଁ । ଏହାପରେ କଳାପାହାଡ଼ଦ୍ୱାରା ସ୍ଥାନଭ୍ରଷ୍ଟ ହେବା ସ୍ୱାଭାବିକ । ଏହି ବିଷୟରେ ତନ୍ତ୍ରଚୂଡ଼ାମଣି ବର୍ଣ୍ଣିତ :—

"ଆଦୌ ତ୍ରିକୋଣମାଲିଖ୍ୟ ତଦ୍‌ବହିର୍ବୃତ୍ତମାଲିଖେତ୍ ।
ମଧ୍ୟେ ତୁ ବୈନ୍ଦବଂ ଚକ୍ରଂ ଲିଖେନ୍ମନ୍ତ୍ରୀ ସମାହିତଃ ॥"

ଅର୍ଥାତ୍—ମନ୍ତ୍ରୀ ବା ସାଧକ ଶକ୍ତିପୂଜା କରିବା ପୂର୍ବରୁ ଶକ୍ତିର ଚିହ୍ନ ସ୍ୱରୂପ ତ୍ରିକୋଣ ଯନ୍ତ୍ର ଚତୁଃପାର୍ଶ୍ୱରେ ବୃତ୍ତ ଅର୍ଥାତ୍ ଗୋଲାକାର ରେଖା କରି ମଧ୍ୟକେନ୍ଦ୍ରରେ ଲିଙ୍ଗ ସ୍ୱରୂପ 'ବିନ୍ଦୁ' ଅଙ୍କନ କରାଯାଏ । ଏହି 'ଶୁଭସ୍ତମ୍ଭ'ଟି ଶକ୍ତିଯନ୍ତ୍ର ତ୍ରିକୋଣର ମଧ୍ୟବିନ୍ଦୁ ଅଟେ ।

**ବ୍ରହ୍ମଯଜ୍ଞ :—**

ତତ୍ପରେ ବ୍ରହ୍ମା ଶାସ୍ତ୍ରୀୟବିଧିରେ ଯଜ୍ଞକାର୍ଯ୍ୟ ସମ୍ପାଦନ ପାଇଁ ଋତ୍ୱିକ୍ ପୁରୋହିତାଦିଙ୍କର ଆବଶ୍ୟକତା ଉପଲବ୍ଧି କରି—

"ଷୋଡ଼ଶାଷ୍ଟୌ ତଥାଷ୍ଟାପି ଚତ୍ୱାରୋ ହ୍ୟପ୍ରତେଜସଃ ।
ଋତ୍ୱିଜୋ ମନସୋ ଜାତା ବ୍ରହ୍ମଣୋ ଜଗଦ୍ଧ ପତେଃ ॥"
(ବ୍ରଃ ପୁଃ ୧ଅ, ୫୯)

ଅର୍ଥାତ୍—ଜଗତ୍‌ସ୍ରଷ୍ଟା ବ୍ରହ୍ମା ନିଜ ମନରୁ ୧୬୮୮୪ ସଂଖ୍ୟକ ତେଜସ୍ୱୀ ଋତ୍ୱିଜମାନଙ୍କୁ ଜାତ କଲେ । ତାହାପରେ—

"ଦେବର୍ଷୟୋ ମହାଭାଗାସ୍ତଥା ବ୍ରହ୍ମର୍ଷୟଃ ପରେ ।
ସାଧ୍ୟାଃ ଯକ୍ଷାସ୍ତଥା ସିଦ୍ଧାଃ ରୁଦ୍ରାଶ୍ଚ ବସୁଭିଃ ସହ ॥
ବାଲଖିଲ୍ୟାସ୍ତଥାଦିତ୍ୟା ମରୀଚ୍ୟାଦ୍ୟାଃ ଷଡ଼ାନନ ।
ଅଷ୍ଟାଶୀତି ସହସ୍ରାଣି ତଥାନ୍ୟେ ମୁନୟୋଽମଳାଃ ॥

ଏତେ ସଭାସଦୋ ଯତ୍ର ସ୍ୱୟମିନ୍ଦ୍ରଃ ଶତକ୍ରତୁଃ ।
ଆଦିତ୍ୟୈଃ ସହ ସର୍ବୈସ୍ତୁ ପ୍ରେଷ୍ୟତ୍ୱଂ ପ୍ରତ୍ୟପଦ୍ୟତ ॥"

(ବ୍ରୃ: ପୁ: ୧ଅ, ୫୭-୫୮)

ନନ୍ଦିକେଶ୍ୱର କହିଲେ—ହେ କାର୍ତ୍ତିକେୟ ! ମହାଭାଗ୍ୟବନ୍ତ ନାରଦାଦି ଦେବର୍ଷିଗଣ, ବଶିଷ୍ଠାଦି ବ୍ରହ୍ମର୍ଷିଗଣ, ସାଧ୍ୟ, ଯକ୍ଷ, ସିଦ୍ଧ, ରୁଦ୍ର, ଅଷ୍ଟବସୁ, ଷାଠିଏ ସହସ୍ର ବାଳଖିଲ୍ୟ, ଦ୍ୱାଦଶାଦିତ୍ୟ, ମରୀଚ ପ୍ରଭୃତି ସପ୍ତର୍ଷି ତଥା ଅନ୍ୟାନ୍ୟ ମୁନି ଋଷିମାନେ ସେହି ସଭାରେ ଉପସ୍ଥିତ ହେଲେ । ସ୍ୱୟଂ ଇନ୍ଦ୍ର ମଧ୍ୟ ଦ୍ୱାଦଶାଦିତ୍ୟ ପ୍ରଭୃତିଙ୍କ ସହିତ ବ୍ରହ୍ମାଙ୍କର ପରିଚାରକ ରୂପରେ କାର୍ଯ୍ୟ କରିଥିଲେ । ଏହାପରେ ଯଜ୍ଞାରମ୍ଭ କରି—

"ଆହୂତସ୍ତେନ ବିଶ୍ୱାତ୍ମା ଭଗବାନ୍ ଯଜ୍ଞପୂରୁଷଃ ।
ସନ୍ନିଧତ୍ତେ ପ୍ରସନ୍ନାତ୍ମା ପଦ୍ମୟା ପଦ୍ମଲୋଚନଃ ॥"

(ବ୍ରୃ: ପୁ: ୧ଅ, ୬୦)

ଭଗବାନ୍ ଯଜ୍ଞପୁରୁଷ ନାରାୟଣଙ୍କୁ ଆହ୍ୱାନ କରିବାରୁ ପଦ୍ମଲୋଚନ ନାରାୟଣ ଲକ୍ଷ୍ମୀଙ୍କ ସହିତ ପ୍ରସନ୍ନ ହୋଇ ଯଜ୍ଞରେ ଆବିର୍ଭୂତ ହେଲେ । ତତ୍ପରେ—

"ଦେବଃ ପଶୁପତିଃ ସାକ୍ଷାତ୍ ସମାହୂତଃ ସ୍ୱୟମ୍ଭୁବା ।
ସନ୍ନିଧିସ୍ଥଃ ଶ୍ରିୟା ସର୍ବଂ ରଞ୍ଜୟନ୍ ମଖମଣ୍ଡପମ୍ ॥"

(ବ୍ରୃ: ପୁ: ୧ଅ, ୬୧)

ଅର୍ଥାତ୍ ବ୍ରହ୍ମାଙ୍କ ଦ୍ୱାରା ଆହୂତ ହୋଇ ପଶୁପତି ଦେବଦେବ ମହାଦେବ ସାକ୍ଷାତ୍ ସ୍ୱକୀୟ ତେଜଃପୁଞ୍ଜରେ ଯଜ୍ଞମଣ୍ଡପକୁ ଉଦ୍ଭାସିତ କଲେ । "ଦେବଂ ସମ୍ପୂଜୟାମାସ ତ୍ୟମ୍ବକଂ ତ୍ରିପୁରାନ୍ତକମ୍ ।" (ବ୍ରୃ: ପୁ: ୧ଅ, ୬୬)

× × × ×

ବ୍ରହ୍ମା ପଶୁପତିଙ୍କୁ ଆବିର୍ଭୂତ ହେବାର ଦେଖି ସେହି ଯଜ୍ଞଭୂମିରେ ତ୍ରିପୁରାରି ଶିବଙ୍କର ଚିରବାସ ପାଇଁ ଅର୍ଘ୍ୟ, ଗନ୍ଧ, ପୁଷ୍ପ, ଧୂପ, ଦୀପାଦି ଦ୍ୱାରା ପୂଜା କରି ପ୍ରାର୍ଥନା କଲେ—

**ଈଶାନେଶ୍ୱରଙ୍କ ଉତ୍ପତ୍ତି :—**

"ପ୍ରାର୍ଥୟାମାସ ବିଶ୍ୱାତ୍ମା ନିତ୍ୟବାସାୟ ତଂ ସଃ ।
ସ୍ଥାନଂ ଦିବ୍ୟଂ  ପରିତ୍ୟଜ୍ୟ ଶମ୍ଭୋ ! ବିଘ୍ନବିନାଶନ ! ॥
ଅବିମୁକ୍ତାଦିଷ୍  କ୍ଷେତ୍ରେଷ୍ୱାବାସଃ ବିଧିୟତେ ତ୍ୱୟା ।
ଅସ୍ମିନ୍ ମହାପ୍ୟେ କ୍ଷେତ୍ରେ ତୁ ତ୍ୱୟା ସ୍ଥେୟଂ ମହେଶ୍ୱର ॥"
(ବ୍ରଃ ପୁଃ ୧ଅ, ୬୯-୭୦)

ବ୍ରହ୍ମା କୃତାଞ୍ଜଳି ପୂର୍ବକରେ ପ୍ରାର୍ଥନା କରି କହିଲେ—ହେ ବିଘ୍ନ ବିନାଶକ ! ଶମ୍ଭୁ ! ଭୂଲୋକବାସୀ ଜନ ସମାଜର ମଙ୍ଗଳ ପାଇଁ ଆପଣ ମୋର ଏହି କ୍ଷେତ୍ରରେ ଅବସ୍ଥାନ କରନ୍ତୁ, କାରଣ ଆପଣ ଅବିମୁକ୍ତାଦି କ୍ଷେତ୍ରମାନଙ୍କରେ ଅବସ୍ଥାନ କରନ୍ତି । ଏଣୁ ମୋର ଏହି କ୍ଷେତ୍ରରେ ଚିରଦିନ ପାଇଁ ବାସ କରନ୍ତୁ । ତାହାପରେ ଦେବାଧିଦେବ ମହାଦେବ ବ୍ରହ୍ମାଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ—

"ପ୍ରାଦୁରାସୀନ୍ମହାତେଜା ବୈତାନାଗ୍ନେଃ ଷଡ଼ାନନ !" (ବ୍ରଃ ପୁଃ ୭୩)

\+ \+ \+ \+

"ତତଃ ପ୍ରାଞ୍ଜଳୟଃ ସର୍ବେ ଦେବା ମୁନିଗଣୈଃ ସହ ।
ତୁଷ୍ଟୁବୁ ହୃଷ୍ଟମନସଃ ସାମଭିଃ ଶଙ୍କରଂହରମ୍ ॥" (ବ୍ରଃ ପୁଃ ୧ଅ, ୭୫)

ଆହବନୀୟ, ଗାର୍ହପତ୍ୟ ଓ ଦକ୍ଷିଣାଗ୍ନି ଭେଦରେ ଆସାଦିତ ହୋଇ ପ୍ରଜ୍ୱଳିତ ହେଉଥିବା ତିନୋଟି ଅଗ୍ନିକୁଣ୍ଡ ମଧ୍ୟରୁ ଦକ୍ଷିଣାଗ୍ନି ନାମକ କୁଣ୍ଡରୁ ଭଗବାନ୍ ଚନ୍ଦ୍ରଶେଖର ତେଜୋମୟ ରୂପରେ ଆବିର୍ଭୂତ ହେବାର ଦେଖି ମୁନିଗଣଙ୍କ ସହିତ ଦେବତାମାନେ ଆନନ୍ଦିତ ହୋଇ କୃତାଞ୍ଜଳି ମଙ୍ଗଳମୟ ଶିବଙ୍କୁ ସାମବେଦ ଦ୍ୱାରା ସ୍ତୁତିକଲେ । ସେହି ଅସହନୀୟ ତେଜଃପୁଞ୍ଜକୁ ବ୍ରହ୍ମା ବଦ୍ଧାଞ୍ଜଳି ହୋଇ ବିନୀତ ଭାବରେ କହିଲେ—

"ଉପସଂହର ବିଶ୍ୱାତ୍ମନ୍ ବ୍ୟାପ୍ତଂ ତେଜଃ ସମୁଚ୍ଛ୍ରିତମ୍ ।
ଦୁର୍ନିରୀକ୍ଷ୍ୟମିଦଂ  ଦେବ ଦ୍ରଷ୍ଟୁଂ ନୈବେହ ଶକ୍ନୁମଃ ॥"
(ବ୍ରଃ ପୁଃ ୧ଅ, ୭୭)

ହେ ବିଶ୍ୱବ୍ୟାପକ ! ଆପଣଙ୍କର ଏହି ମହୋଜ୍ଜ୍ୱଳ ତେଜଃ ପୁଞ୍ଜକୁ ଆବୃତ୍ତ କରନ୍ତୁ । ଆମ୍ଭେମାନେ ଏହି ଦୁଃସହ ତେଜୋରାଶିକୁ ଅବଲୋକନ କରିବାକୁ ନିତାନ୍ତ ଅସମର୍ଥ । ତାହାପରେ—

"ଅତ୍ୟଦ୍‌ଭୁତଂ ଲିଙ୍ଗମଭୂତ୍ ସର୍ବେଷାଂ ପଶ୍ୟତାଂ ତଦା ;
ଲିଙ୍ଗାକାରଂ ହରଂ ଦୃଷ୍ଟ୍ୱା ବ୍ରହ୍ମାଲୋକ ପିତାମହଃ ॥
ଅନୁମାନ୍ୟ ମହର୍ଷିଭିରୀଶାନଂ ସାଧ୍ୱ କଳ୍ପୟତ୍ ।
ପ୍ରପୂଜୈରର୍ଚ୍ଚୟିତ୍ୱାଽସୌ କଳ୍ପବୃକ୍ଷୋଦ୍‌ଭବୈର୍ବିଧିଃ ॥"
(ବ୍ରଃ ପୁଃ ୧ଅ, ୭୯-୮୦)

ବ୍ରହ୍ମାଙ୍କର ଏତାଦୃଶ ପ୍ରାର୍ଥନାରେ ପରମ ପ୍ରୀତ ହୋଇ ଭକ୍ତ-ଚିନ୍ତାମଣି ପରମେଶ୍ୱର ତତ୍‌କ୍ଷଣାତ୍ ଦେବତା ଋଷିମାନଙ୍କ ସମକ୍ଷରେ ସେହି ତେଜଃପୁଞ୍ଜ କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ଅତି ମନୋହର ଅଦ୍‌ଭୁତ ଲିଙ୍ଗ ରୂପ ଧାରଣ କଲେ । ବ୍ରହ୍ମା ହରଙ୍କୁ ଲିଙ୍ଗାକାରରେ ପରିଣତ ହେବାର ଦେଖି ସର୍ବସମ୍ମତି କ୍ରମେ ସେହି ଲିଙ୍ଗଙ୍କୁ 'ଈଶାନେଶ୍ୱର' ନାମରେ ଅଭିହିତ କଲେ । ତତ୍‌ପରେ କଳ୍ପବୃକ୍ଷ ଜାତ କୁସୁମ ସମ୍ଭାରରେ ଯଥାବିଧି ଆରାଧନା କରି ହୃଦୟରେ ପରମ ସନ୍ତୋଷ ଲାଭ କଲେ । ପୂଜାବସାନରେ ବିଚିତ୍ର ପଦ-ବିନ୍ୟାସ ପୂର୍ବକ ବକ୍ଷ୍ୟମାଣ ପ୍ରକାରେ ସ୍ତୁତି ଆରମ୍ଭ କଲେ—

## ବ୍ରହ୍ମକୃତ ଈଶାନେଶ୍ୱର ସ୍ତବ :— ବ୍ରଃ ପୁଃ—

ବ୍ରହ୍ମୋବାଚ— ଈଶାନ ସର୍ବଜଗତାଂ ନିଗମାନ୍ତ ବେଦ୍ୟ
ମୁକ୍ତିପ୍ରଦାନୁକୂଳ ମୂର୍ଜ୍ଜିତ ଭକ୍ତିଭାଜାମ୍ ।
ନିଃ ସୀମ ଶୁଦ୍ଧ ଗୁଣ ଭାଜନ ସାମରୂପ
ଶୈଳାଧିରାଜତନୟାଧିପ ତେ ନମସ୍ତେ ।୮୨।
ନେତ୍ରାଗ୍ନି ଦଗ୍‌ଧ କୁସୁମାୟୁଧ ନାଗଚର୍ମ-
ବାସୋ ବିଶେଷରଚିତାଖିଳ ଲୋକବନ୍ଦ୍ୟୋ ।
ତୁଭ୍ୟଂ ନମୋଽସ୍ତୁ ସୁରେନ୍ଦ୍ର ଗଣାର୍ଚ୍ଚିତାୟ
ସଂସାର ଦୁଃଖ ଦହନାୟ ନମଃ ଶିବାୟ ।୮୩।

କାଳସ୍ୱରୂପ କମନୀୟ ଶଶରଭାଗ
କଲ୍ୟାଣ କାନ୍ତବପୁଷା ଗିରିରାଜ ପୁତ୍ର୍ୟା ।
ସୋମାର୍ଦ୍ଧଶେଖର ବିଭୂତ୍ୟନୁଲେପନାର୍ଦ୍ର
ସ୍ୱର୍ଗାପଗାନୁସୃତ ବାସ ଜଟା କଲାପ ।୮୪।
ଗୃମୀକରଚଳ ବିଶାଳ ଧନୁର୍ଦ୍ଧରାୟ
ଘୋରାଟ୍ଟହାସ ପଟୁଦଗ୍ଧ ପୁରତ୍ରୟାୟ ।
ପାଦ ପ୍ରହାର ହତଦର୍ପ ପରେତ ରାଜ
ନିତ୍ୟଂ ନମୋ ଭଗବତେ ଭବଦୁଃଖ ହନ୍ତ୍ରେ ।୮୫।
ଐଶ୍ୱର୍ଯ୍ୟ ଜନ୍ମ ସଦନାୟ ମନୁଷ୍ୟଧର୍ମ-
ସଂସେବ୍ୟମାନ-ଚରଣାମ୍ବୁରୁହ ଦ୍ୱୟାୟ ।
ଧର୍ମଧ୍ୱଜାୟ ହୃତବିଶ୍ୱ ଚରାଚରାୟ
ନାଗାଧିରାଜ ବଳୟାୟ ନମଃ ଶିବାୟ ।୮୬।
ଯୋଗୀନ୍ଦ୍ର ଚିନ୍ତ୍ୟ ସରସୀରୁହ ମନ୍ଦିରାୟ
କୈବଲ୍ୟଦେହ କମନୀୟ ଯଶୋବିତାନ ।
ଖଟ୍ୱାଙ୍ଗ ଶୂଳ ହରିଣାନଳ ଖଡ୍ଗଟଙ୍କ
ନାଗାୟୁଧାୟୁତଭୃତେ ଭଗବନ୍ନମସ୍ତେ ।୮୭।
ମାରନ୍ଧ୍ର ନର୍ତ୍ତ ଶିରସ୍ଥିତ ଚନ୍ଦ୍ରଖଣ୍ଡ
ନୈଜଦ୍ୟୁତିସ୍ତବକତାବସୁବାନୁଲେପ ।
କଣ୍ଠସ୍ଥ ବିଶ୍ୱଦହନକ୍ଷମ କାଳକୂଟ
ରୋଚିର୍ବିରାଜବପୁଷେ ଭଗବନ୍ନମସ୍ତେ ।୮୮।
ବିଶ୍ୱାବସାନ ସମୟୋଚିତ ରୌଦ୍ରବେଶ
ବିନାଶିତାଖିଳ ଜଗତ୍ ପରିପନ୍ଥି ବର୍ଗ ।
ବିଶ୍ୱାତିଶାୟିବଳଗୌରବ ମୋହନାୟ
ମାରାଙ୍ଗ ମର୍ଦ୍ଦନରତାଙ୍ଘ୍ରିଯୁଗ ପ୍ରସୀଦ ।୮୯।
ନମୋ ନମଃ ସର୍ବ ଜଗଦ୍ଧିତାୟ
ନମୋ ନମଃ ସଦ୍‌ଗତି ଦାୟକାୟ ।
ନମୋ ନମଃ ଶାଶ୍ୱତ ଶାଶ୍ୱତାୟ
ନମୋ ନମୋ ରକ୍ଷକ ରକ୍ଷକାୟ ।୯୦।

ନମସ୍ତେ ସର୍ବସର୍ବଜ୍ଞେ ନମସ୍ତେ ଭୂତଭାବନ ।
ନମସ୍ତେ ନିତ୍ୟମୀଶାନ ନମସ୍ତେ ସର୍ବ ରକ୍ଷକ ।୧୧।
ନମୋ ଦେବାଧିଦେବାୟ ନମସ୍ତେ ଲୋକବନ୍ଧବେ ।
ନମଃ ଶଙ୍କର ସର୍ବାତ୍ମନ୍ ନମଃ ପ୍ରଣତବତ୍ସଳ ।୧୨।

ବ୍ରହ୍ମା ଏହି ପ୍ରକାରରେ ସ୍ତବ କରି ଈଶାନେଶ୍ୱରଙ୍କୁ ଯଥା ସ୍ଥାନରେ ସ୍ଥାପନ କଲେ । ଉପୃରେ "ଶକ୍ତିସ୍ୱରୂପିଣୀ ଦେବୀଙ୍କ ବ୍ୟତୀତ ଶକ୍ତିହୀନ ଜଡ଼-ପୁରୁଷ କେବଳ ଶିବଙ୍କ ଦ୍ୱାରା କ୍ଷେତ୍ରର ସର୍ବାଙ୍ଗୀନ ଶ୍ରୀବୃଦ୍ଧି ହୋଇ ପାରିବ ନାହିଁ" ଏହି ଚିନ୍ତାରେ ଚିନ୍ତିତ ହୋଇ ଦୃଢ଼ ଭକ୍ତିର ସହିତ ଦେବୀଙ୍କୁ ଆରାଧନା କଲେ ।

## ବିରଜାଙ୍କର ଆବିର୍ଭାବ :—

ଦେବୀ ବ୍ରହ୍ମାଙ୍କ ସପର୍ଯ୍ୟା ରେ ସନ୍ତୁଷ୍ଟ ହୋଇ :—

"ତତୋଽଭିତଂ ମହାଦେବଂ ଜ୍ଞାତ୍ୱା ପରମେଶ୍ୱରୀ ।
ପ୍ରକାଶୟନ୍ତୀ ଦେବେନ ଅବନା ଭାବ ମାତ୍ମନଃ ॥
କ୍ଷେତ୍ରସ୍ୟ ତନ୍ୱତୀ ଶୋଭାଂ ଲକ୍ଷ୍ମୀ ମପ୍ୟନପାୟିନୀମ୍ ।
ଈଶାନେଶ୍ୱରତ ସ୍ତସ୍ମାଦ୍ ଦକ୍ଷିଣାଦଗ୍ନି କୁଣ୍ଡତଃ ॥
କାଞ୍ଚିତ୍ ପଶ୍ଚିମ ମାଶ୍ରିତ୍ୟ ଦେଦ୍ୟୋତୟନ୍ତୀ ଦିଶନ୍ତ୍ୱିଷା ।
ଉଦତିଷ୍ଠନ୍ମହାଦେବୀ ଦିବ୍ୟାଂଶୁକ ବିଭୂଷଣା ॥
ଏତତ୍ତୁ ଗାର୍ହପତ୍ୟଂ ସ୍ୟାତ୍ ବ୍ରହ୍ମଣୋ ଯତ୍ର ସାଭବତ୍ ।"
(ବ୍ରୃ: ପୁ: ୨ଅ, ୨,୦)

ତତ୍ପରେ ପରମେଶ୍ୱରୀ ଏହି କ୍ଷେତ୍ରରେ ମହାଦେବଙ୍କର ଚିରବାସ ହେବାର ଜାଣିପାରି ଈଶାନେଶ୍ୱର 'ଦକ୍ଷିଣାଗ୍ନି' ହୋମକୁଣ୍ଡରୁ ଆବିର୍ଭୂତ ହେବାରୁ ଦେବୀ ତାହାର ପଶ୍ଚିମରେ ଘୃତାହୁତି ଦ୍ୱାରା ପ୍ରଜ୍ୱଳିତ ହେଉଥିବା 'ଗାର୍ହପତ୍ୟ' ନାମକ କୁଣ୍ଡରୁ ଦିବ୍ୟବସ୍ତ୍ରାଳଙ୍କାରରେ ବିଭୂଷିତ ହୋଇ ସ୍ୱକୀୟ ତେଜଃ ପୁଞ୍ଜରେ ଚତୁର୍ଦ୍ଦିଗକୁ ଉଦ୍ଭାସିତ କରି ଆତ୍ମପ୍ରକାଶ କଲେ । ଯେଉଁ ମୂର୍ତ୍ତି ଆତ୍ମପ୍ରକାଶ କଲେ, ତାଙ୍କର ରୂପ ନିମ୍ନୋକ୍ତ ଧ୍ୟାନ ଅନୁସାରେ ଥିଲା—

"ବ୍ୟଦ୍ଧାରି ଶୀର୍ଷମରିବନ୍ଦ ନବେନ
ପାଦେନାନ୍ତମସ୍ୟ ପାଣିକମଲେନ ଗୃହୀତପୁଚ୍ଛା ।
ଅନ୍ୟେନ ତଦ୍ କଲୁଷଗ ତ୍ରିଶିଖସ୍ୟ ମୂଳଂ
ସଙ୍ଗୃହ୍ୟ ଭୂଷୟସି ମେଽତ୍ର ଗାତ୍ର ପତ୍ୟମ୍ ॥"

ଅର୍ଥାତ୍ ଦକ୍ଷିଣ ପାଦକମଳରେ ମହିଷର ମସ୍ତକକୁ ଅତି କର୍କଶ ଭାବରେ ଅନ୍ତଦମ ପୂର୍ବକ, ବାମ କରକମଳରେ ମହିଷର ପୁଚ୍ଛକୁ ଗ୍ରହଣ କରି ଦକ୍ଷିଣ ପାଣିକମଳରେ ଶୋଭିତ ତ୍ରିଶୂଳ ଦ୍ୱାରା ମହିଷର ବକ୍ଷସ୍ଥଳକୁ ବିଦାରଣ କରିଅଛନ୍ତି । ଏଣୁ ଦେବୀ ଦ୍ୱିଭୂଜା, ମହିଷମର୍ଦ୍ଦିନୀ ରୂପରେ ବିରାଜିତ । ଏହି ଦେବୀଙ୍କ ଦ୍ୱାରା ଚନ୍ଦ୍ରଶେଖର ଅତି କମନୀୟ ଶୋଭା ଧାରଣ କଲେ । ତତ୍ପରେ ବ୍ରହ୍ମା ପର୍ବତନନ୍ଦିନୀ ପାର୍ବତୀଙ୍କୁ ଆବିର୍ଭୂତ ହେବାର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ ବ୍ୟୋମଗଙ୍ଗାଜଳ ସଦୃଶ ବୈତରଣୀ ଜଳରେ ସ୍ନାନ କରାଇ ଅର୍ଘ୍ୟ ଗନ୍ଧ ପୁଷ୍ପାଦିରେ ଯଥାବିଧି ଅର୍ଚ୍ଚନାପୂର୍ବକ ପ୍ରଣାମ କରି ଶ୍ରୁତିମଧୁର ଛନ୍ଦରେ ସ୍ତୁତି ଆରମ୍ଭ କଲେ—

**ବ୍ରହ୍ମକୃତ ବିରଜାସ୍ତବ :—** ବ୍ର: ପୁ: ୨ଅ:—

ବ୍ରହ୍ମୋବାଚ :—

"ଦେବି ପ୍ରସୀଦ ଜଗଦୀଶ୍ୱର ବାମଭାଗ-
ନିତ୍ୟାଳୟେ ନିୟମିନାଂ ହୃଦୟାମ୍ବୁଜସ୍ଥେ ।
ସର୍ବାର୍ତ୍ତି ହ୍ରଦେ ସକଳସିଦ୍ଧିନୁତେ ଶରଣ୍ୟେ
କଲ୍ୟାଣି ଗୌରି ବିମଲାକ୍ଷି ନମୋ ନମସ୍ତେ ॥୮॥
ମାତସ୍ତନୌ ତବ ମହୀ ବିପୁଲା ତଥା ଦ୍ୟୌ-
ର୍ମଧ୍ୟେ ତୟୋର୍ଜଗଦିଦଂ ବିବିଧଂ ବିଧାୟ ।
ଭିନ୍ନଂ ଚରଂ ସ୍ଥିରମସ୍ତମିତ ପ୍ରମୀଳା
ପୁଷ୍ଣାସି ବୈ ପରମହୋ ସ୍ମିତବତ୍ସଳା ତ୍ୱମ୍ ॥୯॥
ଦେବି ନୟୀ ତବ ବପୁଃସ୍ତୁ ଗଭର୍ଗରୂନ୍ୟା-
ନ୍ୟଙ୍ଗାନି ଷଟ୍ ତ୍ରିବୟୁବା ବିପୁଲାଷ୍ଟ ଯଜ୍ଞାଃ ।
ଦିବ୍ୟାଗମାଃ ଶିରସିଜାଷ୍ଟ ପୁରାଣ ବର୍ଗ
ଲୋମାନ୍ୟଥୋପନିଷଦସ୍ତୁ ଶରୀରକାନ୍ତିଃ ॥୧୦॥

ମାସ୍ମା ମହତ୍ୟପି ବମୋହସୁସୀତବଶ୍ଚଂ
କଂ ଶବମବ ଗିରଶୋ ହରଗମ୍ଭ ଗୃହମ୍ ।
ତଶ୍ମାନ୍ତରକ୍ଷଣ ଶନିର୍ମିତ ସୁକ୍ଷ୍ମସନ୍ଧ୍ୟା
ମନ୍ୟାମହେ ହୃତବବୋଧଜଡ଼ା ସ୍ତୁସ୍ୟା ଯତ୍ ॥୧୧॥
ବଶ୍ଚଂ ଚତୁର୍ମୁଖି ସୃଜସ୍ୟଥ ରକ୍ଷସି ତ୍ୱଂ
ଶଙ୍ଖଂ ରଥାଙ୍ଗମନଶଂ ଦଧତ୍ତୀ କରାଭ୍ୟାମ୍ ।
ରୌଦ୍ରଂ ବପୁଃ କଳୟନ୍ତୀ ହରସି ତ୍ୱମେବ
କୃତ୍ୟଂ ବନା ତ୍ୱଦ୍ୱଦମମ୍ଭ କଥଂ ନ୍ୱ ସିଧ୍ୟେତ୍ ॥୧୨॥
ମନ୍ତ୍ରକ— ବାହାର ଶୀର୍ଷମଗବନ୍ଦ ନଭେନ ପାଦେ-
ନାକମ୍ୟ ପାଣିକମଳେନ ଗୃହୀତ ପୁଚ୍ଛା ।
ଅନ୍ୟେନ ତତ୍ କକୁଦଗର୍ବିଶିଖସ୍ୟ ମୂଳଂ
ସଂଗୃହ୍ୟ ଭୂଷୟସି ମେଽହନ ଶାର୍ଦ୍ଦପତ୍ୟମ୍ ॥୧୩॥
ବଜ୍ଞାତୁ ମମ୍ଭ ଭବତୀମପରୋକ୍ଷତୋଽହଂ
ବଶ୍ଚଂ ସୃଜନ୍ନପି ପିତାସ୍ୟ ନତୁ କ୍ଷମୋଽସ୍ମି ।
ମନ୍ୟେତ ମାମନୁଗ୍ରହୀତୁ ମିହାବଗସୀଦ୍
ବୈତାନ ବହ୍ନି ଜ୍ୱଳୟ୍ୟାତ୍ ସଦସ୍ୟାନ୍ତଗମ୍ୟା ॥୧୪॥
ସ୍ତୋତୁଂତରାଂ ନ ଭବତୀଂ ଭବଦୁଃଖହନ୍ତ୍ରୀଂ
ଶକ୍ନୋମି କନ୍ତୁ ସମୁପାଶ୍ରିତ ବତ୍ସଳାସି ।
ମାତଃ ପ୍ରସୀଦ ଭବତୀ ପରମୀଦୃଶୀତି
ବଶ୍ୱାତ୍ତଶାସ୍ତ୍ରିନ କୃତୋ ଭବତୀହ ବାର୍ତ୍ତା ॥୧୫॥
ବନ୍ଦେ ତବାଙ୍ଘ୍ରି ଯୁଗ ପଙ୍କଜ ମାଦରେଣ
ମହ୍ୟଂ ପ୍ରସୀଦ ଜଗତାଂ ଜନୟିତ୍ରି ଦେବ ।
ଆଲୋକୟାଶ୍ରିତରସାମୃଜନେନ ଗୌରୈ-
ର୍ନେହାଞ୍ଚଳ ଶ୍ରିତଦପ୍ତୈଃ କରୁଣାନଧେ ମାମ୍ ॥୧୬॥ ”

କମଳଯୋନି ବ୍ରହ୍ମାଙ୍କର ଏତାଦୃଶ ସ୍ତବରେ ଅତ୍ୟନ୍ତ ପ୍ରୀତ ହୋଇ ଯଜ୍ଞୋଦ୍ଭବା ଭଗବତୀ ପାର୍ବତୀ ସହାସବଦନରେ ବ୍ରହ୍ମାଙ୍କୁ କହିଲେ—

"ତ୍ୱଂ ମାଂ ବିରଜସଂ ନାମ୍ନା ମନ୍ୟସ୍ୱ କମଲାସନ ।
ପ୍ରସନ୍ନାଂ ଭବତେ କାମଂ ଜାନୀହି ଜଗତାଂ ପିତଃ ॥
ବରଂ ବୃଣୀଷ୍ୱ ଭଦ୍ରଂତେ ଯତ୍ତେ ମନସି ବର୍ତ୍ତତେ ॥"

(ବ୍ର:ପୁ: ୨ଅ ୧୮)

ଅର୍ଥାତ୍ ହେ କମଳାସନ ! ହେ ଜଗତ୍‌ପିତଃ ! ତୁମ୍ଭର ଭକ୍ତିପୂତ ସ୍ତବରେ ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି । ଏଣୁ ମୋତେ 'ବିରଜା' ନାମରେ ନାମିତ କର । ଆହୁରି ମଧ୍ୟ ତୁମ୍ଭ ମନରେ ଯେଉଁ ଅଭିଳଷିତ ବର ପ୍ରାର୍ଥନା କରିବାର ଅଛି, ତାହା ପ୍ରାର୍ଥନା କର ।

ଦେବୀଙ୍କର ଏହିପରି ବାଣୀ ଶୁଣି ବ୍ରହ୍ମା କହିଲେ—

"ଅସ୍ମିନ୍ ସୁମହତି କ୍ଷେତ୍ରେ ପୁଣ୍ୟେ ବୈରଜସେ ମମ ।
କ୍ଷେତ୍ରଲକ୍ଷ୍ମୀ ଭବେଦାନୀମତ୍ର ସ୍ଥେୟଂ ତ୍ୱୟା ସଦା ॥"

(ବ୍ର: ପୁ: ୨ଅ, ୨୧)

ହେ ଦେବି ! ହେ ରଜୋଗୁଣଧାରିଣି ! ହେ ସତ୍ତ୍ୱମୟି ! ହେ ବିରଜେ ମାତଃ ! ମୋର ଏହି ସୁବିସ୍ତୃତ ପବିତ୍ର ବିରଜାଃ କ୍ଷେତ୍ରରେ ଆପଣ ଆଜଠାରୁ କ୍ଷେତ୍ରର ଶ୍ରୀ ଶୋଭା ସମ୍ପଦ ବୃଦ୍ଧି କରି କ୍ଷେତ୍ରାଧୀଶ୍ୱରୀ ହୋଇ ଚିର ଅବସ୍ଥାନ କରନ୍ତୁ । ଏତିକି ମୋର କୃତାଞ୍ଜଳି ପ୍ରାର୍ଥନା ।

ବ୍ରହ୍ମାଙ୍କର ଏତାଦୃଶ ଶ୍ରୁତି ମଧୁର ସଭକ୍ତିକ ବିନମ୍ରବଚନ ଶୁଣି ଦେବୀ ବିରଜା କହିଲେ—

"ବ୍ରହ୍ମନ୍ନାହଂ ତ୍ୟଜାମୀଦଂ କ୍ଷେତ୍ରଂ ତାବକ ମୁତ୍ତମମ୍ ।
ମମ ପ୍ରାଧାନ୍ୟ ମତ୍ର ସ୍ୟାତ୍ କ୍ଷେତ୍ରେ କମଳସମ୍ଭବ ॥
ଯେନୈତତ୍ ପଠ୍ୟତେ ସ୍ତୋତ୍ରଂ ତସ୍ୟାଭୀଷ୍ଟଂ ଦଦାମ୍ୟହମ୍ ॥"

(ବ୍ର: ପୁ: ୨-୨୭, ୨୮)

ହେ ବ୍ରହ୍ମନ୍ ! ତୁମ୍ଭର ଏହି ପବିତ୍ର ସର୍ବୋତ୍ତମ କ୍ଷେତ୍ରରାଜକୁ ମୁଁ କଦାପି ତ୍ୟାଗ କରିବି ନାହିଁ । ଆହୁରି ମଧ୍ୟ ତୁମ୍ଭକୃତ ମୋର ସ୍ତବକୁ ଯେ କେହି ବ୍ୟକ୍ତି ମୋ ସମ୍ମୁଖରେ ଭକ୍ତିର ସହିତ ପାଠ କରିବ, ତାହାକୁ ସମସ୍ତ ଅଭିଳଷିତ ବର ପ୍ରଦାନ କରିବି ।

ବ୍ରହ୍ମପୁରାଣ—୪୨ ଅଧ୍ୟାୟ ୧୦ମ ଶ୍ଳୋକ ବର୍ଣ୍ଣିତ—

"ମମକ୍ଷେତ୍ରେ ମୁନିଶ୍ରେଷ୍ଠ ବିରଜେ ଯେ କଳେବରମ୍ ।
ପରିତ୍ୟଜନ୍ତି ପୁରୁଷା ସ୍ତେ ମୋକ୍ଷଂ ପ୍ରାପ୍ନୁବନ୍ତି ବୈ ॥"

ଏହି ବିରଜାଙ୍କର ଆବିର୍ଭାବ ବିଷୟରେ ଦେବୀଭାଗବତ ୧୦ମ ସ୍କନ୍ଧ, ୭ମ ଅଧ୍ୟାୟ ବର୍ଣ୍ଣନାରୁ ଏହି ବିନ୍ଧ୍ୟବାସିନୀ ବିରଜାଙ୍କ ନାମ ପ୍ରଥମେ ଲୋପାମୁଦ୍ରା (ଅଗସ୍ତି ଋଷିଙ୍କ ପତ୍ନୀ) ଥିଲା ବୋଲି ଜଣାଯାଏ । ଏଠାରେ ଥିବା ବିନ୍ଧ୍ୟଗିରି ଏକଦା ହିମାଳୟ, କୈଳାସ ପର୍ବତର ପ୍ରତିଦ୍ୱନ୍ଦ୍ୱୀ ହୋଇ ଉଚ୍ଚତାରେ ସୂର୍ଯ୍ୟମାର୍ଗ ଅବରୋଧ କରିବାରୁ ଦେବତାମାନେ ଭଗବାନ ନାରାୟଣଙ୍କ ପରାମର୍ଶ ଅନୁସାରେ ବାରାଣସୀରେ ବାସକରୁଥିବା ଅଗସ୍ତି ଋଷିଙ୍କ ନିକଟକୁ ଯାଇ ସମସ୍ତ ବୃତ୍ତାନ୍ତ କହିବାରୁ ମହର୍ଷି ଅଗସ୍ତି ନିଜପତ୍ନୀ ଲୋପାମୁଦ୍ରାଙ୍କ ସହିତ ଦକ୍ଷିଣଦିଗକୁ ଯାତ୍ରାକଲେ । ଋଷିଙ୍କ ଉଗ୍ରତେଜରେ ଖିନ୍ନହୋଇ ବିନ୍ଧ୍ୟ ଅତ୍ୟନ୍ତ ଖର୍ବହୋଇ ଭୂତଳରେ ଦଣ୍ଡବତ୍ ପତିତହୋଇ ପ୍ରଣାମ କଲା । ଋଷି କହିଲେ—ମୁଁ ଦକ୍ଷିଣଦିଗ ଯାତ୍ରାରୁ ଫେରିବା ପର୍ଯ୍ୟନ୍ତ ତୁମ୍ଭେ ଏହି ଅବସ୍ଥାରେ ଥାଅ । ତତ୍ପରେ ଋଷି ଦକ୍ଷିଣ ଦିଗକୁ ଯାତ୍ରାକଲେ, ଆଉ ଫେରିଲେ ନାହିଁ । ଦେବୀ ଲୋପାମୁଦ୍ରା ବିନ୍ଧ୍ୟଗିରିରେ ସ୍ୱାମୀଙ୍କ ପ୍ରତୀକ୍ଷାରେ ଅବସ୍ଥାନ କରିବାରୁ ସ୍ୱାୟମ୍ଭୁବ ମନୁଙ୍କଦ୍ୱାରା ପୂଜିତା ହେଲେ । କାଳକ୍ରମେ ଏହି ବିନ୍ଧ୍ୟବାସିନୀ ଲୋପାମୁଦ୍ରା ବ୍ରହ୍ମଯଜ୍ଞୋଦ୍ଭବା 'ବିରଜା' ନାମ ଧାରଣ କଲେ, ଯଥା :—

"ସାପିଦେବୀ ତତ ବିନ୍ଧ୍ୟମାଗତା ମନୁପୂଜିତା ।
ଲୋକେଷୁ ପ୍ରଥିତା ବିନ୍ଧ୍ୟବାସିନୀତି ଚଶୌନକ ॥"

(୧୦ । ୭ । ୨୧)

ଆହୁରି ମଧ୍ୟ—ଆଦ୍ୟ ଶ୍ରୀ ଶଙ୍କରାଚାର୍ଯ୍ୟ ଅଷ୍ଟାଦଶପୀଠ ମାହାତ୍ମ୍ୟରେ ବର୍ଣ୍ଣନା କରିଅଛନ୍ତି—

"ଉତ୍କଳେ ବିରଜା ଦେବୀ ମାଣିକ୍ୟାଂ ଚନ୍ଦକୋଟିନୀ ॥"

ଆସାମରେ କାମାକ୍ଷାଦେବୀଙ୍କ ପରି ଉତ୍କଳର ମହାଦେବୀ 'ବିରଜା' ସମଗ୍ର ହିନ୍ଦୁ ଜଗତରେ ସର୍ବଶ୍ରେଷ୍ଠା ପ୍ରାଚୀନତମା ବିରଜା ଦେବୀ ଅଟନ୍ତି ।

ଯାମଳତନ୍ତ୍ରର ଆଦ୍ୟ ସ୍ତୋତ୍ରରେ ବିରଜାଙ୍କ ମୂର୍ତ୍ତି ବିଷୟରେ ବର୍ଣ୍ଣିତ—

"ବିରଜା ଉତ୍କଳଦେଶେ ତୁ କାମାକ୍ଷା ନୀଳପର୍ବତେ ॥"

ଆହୁରମଧ୍ୟ ବ୍ରହ୍ମ ପୁରାଣ ୪୨ ଅଧ୍ୟାୟରେ ଯେପରି ବର୍ଣ୍ଣନା ଦେଖାଯାଏ, ତହିଁରୁ ଅନୁମିତ ହୁଏ ଯେ, କେଉଁ ଅଜ୍ଞାତ କାଳରୁ ସ୍ୱୟଂ ବ୍ରହ୍ମାଙ୍କଦ୍ୱାରା ଏହି ବିରଜା ମହାଦେବୀ ସ୍ଥାପିତ ହୋଇଅଛନ୍ତି । ଏହାଙ୍କ ଦର୍ଶନ ବିଷୟରେ କୁହାଯାଇଛି—

"ବିରଜେ ବିରଜାମାତା ବ୍ରହ୍ମଣା ସମ୍ପ୍ରତିଷ୍ଠିତା ।
ଯସ୍ୟାଃ ସନ୍ଦର୍ଶନାନ୍ମର୍ତ୍ତ୍ୟଃ ପୁନାତ୍ୟାସପ୍ତମଂ କୁଳମ୍ ॥"

ଏହି ସ୍ୱାୟମ୍ଭୁବ ମନୁ ବ୍ରହ୍ମାଙ୍କ ମାନସଜାତ ରାଜା । ଏହି ରାଜା କ୍ଷୀରସିନ୍ଧୁ ନିକଟରେ ମୃଣ୍ମୟୀ ମୂର୍ତ୍ତି ସ୍ଥାପନକରି ଦେବୀଙ୍କୁ ଏକାଗ୍ରଚିତ୍ତରେ ଆରାଧନା କରିବାରୁ ଦେବୀ ପ୍ରସନ୍ନା ହୋଇ ତାଙ୍କୁ ନିଷ୍କଣ୍ଟକ ରାଜ୍ୟଭୋଗ ରୂପକ ବରଦାନ କଲେ—

"ପଶ୍ୟତସ୍ତୁ ମନୋରେବ ଜଗାମ ବିନ୍ଧ୍ୟ ପର୍ବତମ୍ ।
ସା ବିନ୍ଧ୍ୟବାସିନୀ ବିଷ୍ଣୋରନୁଜା ବିରଜେଶ୍ୱରୀ ।
ବଭୂବ ପୂଜ୍ୟା ଲୋକାନାଂ ସର୍ବେଷାଂ ମୁନିସତ୍ତମ ॥"
(୧୦ । ୨ । ୭)

ଏହି ଦେବୀ ବ୍ରହ୍ମଯଜ୍ଞରୁ ଉତ୍ପତ୍ତି ହୋଇଥିବାର ଏହି ଧ୍ୟାନରୁ ପ୍ରମାଣିତ ହୁଏ :—

"ସନ୍ତୋଷାଯୁତନାତ୍ ତସ୍ୟାଃ ନିଷ୍ପେତୁର୍ମନସସ୍ତଦା ।
ଦୁର୍ଗା ନବ ଚତୁଃଷଷ୍ଟି ଯୋଗିନ୍ୟୋଽଷ୍ଟୌଚ ଚଣ୍ଡିକାଃ ॥"
(ବ୍ର: ପୁ: ୨ଅ, ୩୦)

ଦେବୀ ସନ୍ତୁଷ୍ଟ ହେବାରୁ ସେହି ଜ୍ୟୋତିର୍ମୟୀ ବିରଜାଦେବୀ ମନ ମଧ୍ୟରୁ ନବ ଦୁର୍ଗା, ଚତୁଃଷଷ୍ଟି ଯୋଗିନୀ ତଥା ଅଷ୍ଟ ଚଣ୍ଡିକାଙ୍କୁ ଜାତ କରି କହିଲେ—

'ଅଳଂ କୁର୍ବନ୍ତୁ ସୁକ୍ଷେତ୍ରେ ମିଳିତ୍ଵା ମୌନ ମାସ୍ଥିତା" (ବ୍ରଃ ପୁଃ ୨ଅ, ୩୧)

'ଏହି ଦେବୀ ସମୂହ ଏହି କ୍ଷେତ୍ରରାଜରେ ଅବସ୍ଥାନ କରି କ୍ଷେତ୍ରକୁ ସର୍ବତୋଭାବେ ଅଳଂକୃତ କରନ୍ତୁ' ଏହାକହି ଦେବୀ ମାରବତୀ ଅବଲମ୍ବନ କଲେ ।

**ବିରଜାଙ୍କ ଧ୍ୟାନ :—**

ନିମ୍ନୋକ୍ତ ପ୍ରକାରରେ ଯଜ୍ଞୋଦ୍‌ଭବା ବିରଜା ଦେବୀଙ୍କୁ ଧ୍ୟାନ କରାଯାଏ । ଏହା କପିଳ ସଂହିତାରେ ବର୍ଣ୍ଣିତ ଅଛି—

"ଶ୍ୟାମାଙ୍ଗୀଂ ସିଂହମାରୂଢ଼ାଂ ଦ୍ୱିଭୁଜାଂ ଶୂଳଧାରିଣୀମ୍ ।
ବିଭ୍ରତୀଂ ବାମହସ୍ତେନ ମହିଷାସୁର ପୁଚ୍ଛକାମ୍ ॥
ସୁରାସୁରୈର୍ବନ୍ଦ୍ୟମାନାଂ ତ୍ରିନେତ୍ରା ମିନ୍ଦୁଶେଖରାମ୍ ।
ସର୍ବାଭରଣ ସମ୍ପନ୍ନାଂ ଭକ୍ତାନୁଗ୍ରହକାରିଣୀମ୍ ।
ବନ୍ଦେ ଶ୍ରୀ ବିରଜାଂ ଦେବୀଂ ଭୁକ୍ତି ମୁକ୍ତି ପ୍ରଦାୟିନୀମ୍ ॥"

ଅନ୍ୟଚ—ଦେବୀଂ ବ୍ରହ୍ମାଗ୍ନି ଜାତାଂ ମହିଷତନୁଗତାଂ ଶୂଳ ଲିଙ୍ଗୁଳହସ୍ତାଂ
ଶୂଳଂ ଭିତ୍ୱାଚ ପୃଷ୍ଠେ ସୁରରିପୁ ମହିଷପ୍ରାଣହାରୀଂ କରାଳାମ୍ ।
କାନ୍ତ୍ୟା ସ୍ୱର୍ଣ୍ଣାବଦାତାଂ ଶଶିଶିବସୁଭଗାନାଗବଦ୍ଧୈଣଚୂଡ଼ାଂ
ବନ୍ଦେ ତ୍ରୈଲୋକ୍ୟବନ୍ଦ୍ୟାଂ ବିରଜସବିରଜାଂ ସର୍ବ ଦୁଃଖା-
ପହାରାମ୍ ॥

ଅପରଞ୍ଚ :—ଧୃତ କନକନିଭାଭା ଶୂଳଲିଙ୍ଗୁଳହସ୍ତା
ପ୍ରବଳ ମହିଷ ପୃଷ୍ଠେ ଶୂଳ ମାଭେଦୟନ୍ତୀ ।
ଗଣପତି ଫଣି ସମ୍ରାଟ୍ ଯୋନି ଲିଙ୍ଗେନ୍ଦୁ ଚୂଡ଼ା
ଉଦୟତୁ ବିରଜା ମେ ମଙ୍ଗଳଂ ମଙ୍ଗଳାନାମ୍ ॥

**ବିରଜାଙ୍କ ମୂର୍ତ୍ତି :—**

ଏହି ମୂର୍ତ୍ତି ଗୋଟିଏ ମସୃଣ ବିଶାଳ କଳା ମୁଗୁନି ପ୍ରସ୍ତର ନିର୍ମିତ ୩ ଫୁଟ ଉଚ୍ଚତା ବିଶିଷ୍ଟ ସିଂହାସନ ଉପରେ ପାଞ୍ଚବର୍ଷୀୟା କୁମାରୀ ପରି

ଦଣ୍ଡାୟମାନା । ଏହାଙ୍କର ଦ୍ୱିଭୁଜ । ବାମ ହସ୍ତରେ ମହିଷରୂପୀ ମହିଷା-ସୁରର ପୁଚ୍ଛ ଧାରଣ କରି ଦକ୍ଷିଣ ଭୁଜରେ ସେହି ଅସୁରର ବକ୍ଷସ୍ଥଳକୁ ଶୂଳଭେଦ-କରିଅଛନ୍ତି । ଏହାଙ୍କ ମସ୍ତକ ଚୂଡ଼ାରେ ଗଣପତି, ନାଗରାଜ ବାସୁକି, ଯୋନିଚିହ୍ନ (ଯୋନି) ପୁରୁଷଚିହ୍ନ (ଲିଙ୍ଗ) ଏବଂ ସୁଧାକର ଚନ୍ଦ୍ର, ଏହି ପାଞ୍ଚୋଟି ମୁଦ୍ରା ବା ଚିହ୍ନ ବିଦ୍ୟମାନ । ଏହି ମୂର୍ତ୍ତିଙ୍କୁ ଦଶ୍‌ଧସୁବର୍ଣ୍ଣ ବର୍ଣ୍ଣା ବୋଲି ଧ୍ୟାନରେ କଳ୍ପନା କରାଯାଇଛି । ଏହାଙ୍କ ଲଲାଟ ଦେଶରେ ଗୋଟିଏ ଉଜ୍ଜ୍ୱଳ ମଣି ଦେଦୀପ୍ୟ-ମାନ, ଯାହାକି ସିଂହଦ୍ୱାରରୁ ଦେଖିହୁଏ । ପ୍ରତିଦିନ ଲଲାଟରେ ବହଳ ଚନ୍ଦନ ପାଣ୍ଟି ରଚନା କରାଯାଏ । ମସ୍ତକର ଉପରିଭାଗରେ ସିଂହାସନକୁ ବିଭିନ୍ନ ରଙ୍ଗର ବସ୍ତ୍ରଦ୍ୱାରା ଏପରି ସଜ୍ଜିତ କରାଯାଇଥାଏ ଯେ ଦର୍ଶକମାନଙ୍କ ଚକ୍ଷୁ ସ୍ୱତଃ ଆକୃଷ୍ଟ ହୁଏ । ମୁଖଟି ଛଡ଼ା ସର୍ବାଙ୍ଗକୁ ବିଭିନ୍ନ ବର୍ଣ୍ଣର ପୁଷ୍ପମାଲ୍ୟ ଦ୍ୱାରା ପ୍ରତ୍ୟହ ସଜ୍ଜିତ କରାଯାଏ । ଏହାଙ୍କ ବେଶ ପରିପାଟୀକୁ ଦେଖିଲେ ଭକ୍ତଜନଙ୍କ ହୃଦୟରେ ସ୍ୱଭାବତଃ ଭକ୍ତି ଜାଗ୍ରତ ହୋଇଥାଏ । ବିଶେଷତଃ ସନ୍ଧ୍ୟାକାଳୀନ ଆରତ୍ରିକ ଦର୍ଶନ ଅତି ଚିତ୍ତାକର୍ଷକ ଓ ଦର୍ଶନୀୟ । ଏପରି ବେଶ ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏନାହିଁ । ଗର୍ଭମନ୍ଦିରରେ ଗୋଟିଏ ପ୍ରସ୍ତର-ନିର୍ମିତ ସୁସଜ୍ଜିତ ପ୍ରକୋଷ୍ଠପରି ବିଚିତ୍ର ବିମାନ ମଧ୍ୟରେ ଏହି ସିଂହାସନ ବିଦ୍ୟମାନ । ଦେବୀଙ୍କୁ ପ୍ରଦକ୍ଷିଣ କରିବାପାଇଁ ଦେବୀଙ୍କ ପଶ୍ଚାଦ୍‌ଭାଗରେ ଥିବା କାନ୍ଥରୁ ଅଲଗା ହୋଇ ସିଂହାସନ ପ୍ରତିଷ୍ଠିତ । 'ଏକାଚଣ୍ଡ୍ୟାଂ' ନ୍ୟାୟାନୁ-ଯାୟୀ ଶକ୍ତିସ୍ୱରୂପିଣୀ ଦେବୀଙ୍କୁ ଥରେ ମାତ୍ର ପ୍ରଦକ୍ଷିଣ କରାଯାଏ । ପୂଜକଭିନ୍ନ ସାଧାରଣ ଲୋକେ ମନ୍ଦିର ପ୍ରଦକ୍ଷିଣ କରନ୍ତି । ସିଂହଦ୍ୱାରରେ ତଥା ଗର୍ଭ-ମନ୍ଦିରର ଦ୍ୱାରଦେଶରେ ଥିବା ମୁଗୁନି ପ୍ରସ୍ତର ନିର୍ମିତ ନାଗବନ୍ଧର କାରୁକାର୍ଯ୍ୟ ଅତ୍ୟନ୍ତ ବିସ୍ମୟକାରକ । ଲତା, ପତ୍ର, ପୁଷ୍ପ ଓ ନାଗର ସୂଚୀକାର୍ଯ୍ୟ ଉଜ୍ଜ୍ୱଳୀପ୍ରି ସ୍ତମ୍ଭପଡ଼ିମାନଙ୍କୁ ଜୀବନ୍ତ କରୁଅଛି ।

## ବିରଜା ଶବ୍ଦର ତାତ୍ତ୍ୱିକ ଅର୍ଥ :—

ଏହି ଦେବୀଙ୍କର 'ବିରଜା' ନାମଟିକୁ ବ୍ୟୁତ୍ପତ୍ତି କଲେ ଦେଖାଯାଏ 'ନାମୈକ ଦେଶ ଗ୍ରହଣେ ନାମମାତ୍ର ଗ୍ରହଣମ୍' ନ୍ୟାୟରେ 'ବି' ଶବ୍ଦର ଅର୍ଥ 'ବିରଞ୍ଚି' ବା 'ବିଧି' ବୋଲି ବହୁ ପଣ୍ଡିତଙ୍କର ମତ, 'ର' ଅର୍ଥାତ୍ ବୀଜ,

ଅର୍ଥାତ୍ 'ଇ' ମିତ୍ୟଗ୍ନି ବ୍ରାଜସ୍ୟ ବୋଲି ପ୍ରୟୋଗ ଅଛି । 'ଜା' 'ଜନ୍' ଧାତୁ ନିଷ୍ପନ୍ନ ଶବ୍ଦ, 'ଜନ୍' ଧାତୁର ଅର୍ଥ ଜାତ ହେବା, ଏଣୁ ବିରଞ୍ଚି ବା ବ୍ରହ୍ମାଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞାଗ୍ନିରୁ ଜାତ ହୋଇଥିବାରୁ ଏହାଙ୍କର ନାମ 'ବିରଜା' ଶ୍ରୁତି ସିଦ୍ଧାନ୍ତ । ଧ୍ୟାନରେ ମଧ୍ୟ କୁହାଯାଇଛି—'ଦେବୀଂବ୍ରହ୍ମାଗ୍ନି ଜାତାଂ...' ଇତ୍ୟାଦି ।

ଆଜି କେତେକ ପଣ୍ଡିତ ମଧ୍ୟ ବ୍ୟାଖ୍ୟା କରନ୍ତି ଯେ 'ବିରଜା' ବି ଅର୍ଥାତ୍ ବିଗତଂ (ରହିତ) ବା (ଅଭାବ) ରଜଃ—ରଜୋଗୁଣଃ ଯସ୍ୟାଃ ସା = ବିରଜା ରଜୋଗୁଣ ରହିତା, ଅର୍ଥାତ୍ ଯାହାଙ୍କ ଠାରେ ସତ୍ତ୍ୱ, ରଜ ଓ ତମ, ଏହି ତ୍ରିଗୁଣ ମଧ୍ୟରୁ ରଜୋଗୁଣ, ତମୋଗୁଣ ଅଭାବ ହୋଇ କେବଳ ଶୁଦ୍ଧ ସତ୍ତ୍ୱଗୁଣ ବିକାଶ ଲଭ କରିଛି, ଅର୍ଥାତ୍ ଯେ ଶୁଦ୍ଧ ସତ୍ତ୍ୱମୟୀ ପରମ-ବୈଷ୍ଣବୀ । ଏହି ଦେବୀଙ୍କୁ ପରମ ବୈଷ୍ଣବୀ ରୂପରେ ଏହାଙ୍କର ଜନ୍ମୋତ୍ସବ ମାଘମାସ ତ୍ରିବେଣୀ ଅମାବାସ୍ୟା ଦିନ ସାବିତ୍ରୀ ବେଶରେ ସଜ୍ଜିତ କରି ସାବିତ୍ରୀ ମନ୍ତ୍ରରେ ଆରାଧନା କରାଯାଏ ।

ଆହୁରି ମଧ୍ୟ ଏହି ଦେବୀଙ୍କୁ ଯେତେବେଳେ "ସୃଷ୍ଟିସ୍ଥିତିବିନା-ଶାନାଂ ଶକ୍ତିଭୂତେ ସନାତନି । ଗୁଣାଶ୍ରୟେ ଗୁଣମୟେ ନାରାୟଣିନମୋଽସ୍ତୁତେ' ବୋଲି ସ୍ତୁତି କରାଯାଏ, ନିଶ୍ଚୟ ଏହି ଦେବୀ ସର୍ବଗୁଣାତ୍ମିକା । ସ୍ଥାନ କାଳ ବିଶେଷରେ ଦୁଷ୍ଟଦଳନ ପାଇଁ ଦେବୀ ରଜୋଗୁଣ ତଥା ତମୋଗୁଣର ଆଶ୍ରୟ ଲଭକରି ମହିଷାସୁର ପ୍ରଭୃତି ଦାନବ ବଂଶ ବିନାଶ କରିଅଛନ୍ତି ଏବଂ ଏହିପରି ଆସୁରୀ ପ୍ରକୃତିସମ୍ପନ୍ନ ବ୍ୟକ୍ତିଙ୍କୁ ମଧ୍ୟ ଦମନ କରିବା ଏହାଙ୍କର ସ୍ୱଭାବସିଦ୍ଧ ଗୁଣ । ଏଣୁ 'ବିରଜା' ଅର୍ଥାତ୍ ବିଶେଷ ରଜୋଗୁଣସମ୍ପନ୍ନା । ଏହି ରଜୋଗୁଣ ବା ତମୋଗୁଣର ଆଶ୍ରୟ ଲଭ ନ କଲେ ଅର୍ଥାତ୍ ଅସୁର-ମାନଙ୍କ ସହିତ ଆସୁରପ୍ରକୃତିକ ନ ହେଲେ ସେମାନଙ୍କୁ ଦମନ କରିବା ଅସମ୍ଭବ ହେତୁ ଦେବୀ 'ପ୍ରବଳ ମହିଷ ପୃଷ୍ଠେ ଶୂଳମାଭେଦୟନ୍ତୀ" ବା "ସୁରରିପୁ ମହିଷ ପ୍ରାଣହାନ୍ତ୍ରୀଂ କରାଳାମ୍" ବୋଲି ଧ୍ୟାନରେ କଳ୍ପନା କରା-ଯାଇଅଛି । ଏଣୁ, ସୃଷ୍ଟି, ସ୍ଥିତି ପ୍ରଳୟ ପାଇଁ ଯାହା ଯେତେବେଳେ କରି-ଣୀୟ, ତାହାହିଁ ସ୍ୱୟଂ ପ୍ରତିପାଦନ କରୁଅଛନ୍ତି ।

ଆଉ ଗୋଟିଏ ବିଶେଷ କଥା—ଏହି ଦେବୀଙ୍କର ଚୂଡ଼ାରେ ବା ମସ୍ତକରେ ଗଣପତି, ଫଣିସମ୍ରାଟ୍, ଯୋନି, ଲିଙ୍ଗ ଓ ଇନ୍ଦୁ ବା ଚନ୍ଦ୍ର, ଏହି ପଞ୍ଚମୁଦ୍ରା (ଚିହ୍ନ) ଶୋଭା ପାଉଅଛି । ଏହାର ତାତ୍ପର୍ଯ୍ୟ ଗବେଷଣା କଲେ ଜଣାଯାଏ, ପ୍ରଥମରେ 'ଯୋନି' ଚରାଚର ଜୀବଜଗତର ଉତ୍ପତ୍ତିର ହେତୁରୂପା ମୂଳ ପ୍ରକୃତି ଅର୍ଥାତ୍ ବୀଜାଙ୍କୁରୋତ୍ପାଦିକାଶକ୍ତି । ଏହାଦ୍ୱାରା ଦେବୀ ସର୍ବ ବୀଜର ଉତ୍ପତ୍ତି କ୍ଷେତ୍ର ଅଟନ୍ତି । ଦ୍ୱିତୀୟରେ 'ଲିଙ୍ଗ' କାରଣ-ଭୂତ ସର୍ବଜଗତର ବୀଜରୂପକ ଚିହ୍ନ । ଏହି ଅଚୈତନ୍ୟ ଜଡ଼ ପୁରୁଷ ପ୍ରକୃତି ସଂଯୋଗରେ ବା ସାହଚର୍ଯ୍ୟରେ ସୃଷ୍ଟି ତଥା ପ୍ରତ୍ୟକ୍ଷୀଭୂତ ମନୁଷ୍ୟ, ପଶୁ, ପକ୍ଷୀ, କୀଟ ସରୀସୃପାଦି ଜଗତ୍ । ଏଣୁ ଦେବୀ ଜଗତର ଆଧାରଭୂତା ଅଟନ୍ତି । ତୃତୀୟରେ ଏହି ଜୀବଜଗତର ଶୁଦ୍ଧ ଚୈତନ୍ୟ ଉଜ୍ଜୀବିତ କରି ଏହାଙ୍କଠାରେ କାର୍ଯ୍ୟକାରିଣୀଶକ୍ତି ସଞ୍ଚାର କରିବା-ପାଇଁ ସର୍ବୋପରି ସୁଧାକର ଇନ୍ଦୁ ବା ଚନ୍ଦ୍ର ବିଦ୍ୟମାନ । ଏହାଙ୍କର ସୁଧା (ଅମୃତ) ବିନ୍ଦୁ ଲାଭକରି ସକଳଜୀବ ସଚେତନ, କାର୍ଯ୍ୟଦକ୍ଷ, ନୀରୋଗ, ପ୍ରସନ୍ନମନା ତଥା ଶୁଦ୍ଧ ସ୍ୱଭାବ । ଏହି ଚନ୍ଦ୍ରଙ୍କର ଅପରନାମ 'ଔଷଧୀଶ' ଥିବାରୁ ସମସ୍ତ ବ୍ୟାଧି ବିନାଶକ ବୃକ୍ଷ, ଲତା, ପତ୍ର, ପୁଷ୍ପ, ମୂଳ, ସିଦ୍ଧ ରସାୟନିକ ଔଷଧ ବିଶେଷରେ ଏହି ସୁଧାକର ଅମୃତ ପରି-ବେଷଣ କରି ଔଷଧି ସମୂହକୁ ଶକ୍ତିସମ୍ପନ୍ନ କରୁଅଛନ୍ତି । ଏଣୁ ସମସ୍ତ ରୋଗ ବିନାଶର ହେତୁଭୂତ ଚନ୍ଦ୍ରଙ୍କୁ ଧାରଣ କରି ଦେବୀ ସମସ୍ତଙ୍କର ଅଶେଷ ରୋଗ ବ୍ୟାଧି ବିନାଶ କରୁଅଛନ୍ତି । ତେଣୁ ଦେବୀଙ୍କୁ ସ୍ତୁତି କରାଯାଏ—"ରୋଗାନଶେଷାନପହଂସି ତୁଷ୍ଟା"......ଇତ୍ୟାଦି ।

ଚତୁର୍ଥରେ ଗଣପତି, ଲୋକମାନଙ୍କ ମଧ୍ୟରେ ପାରସ୍ପରିକ ଗଣ-ତାନ୍ତ୍ରିକ ଭାବ ଜାଗ୍ରତ କରି ଐକ୍ୟ ସ୍ଥାପନ କରିବା ଏହି ଦେବତାଙ୍କର କାର୍ଯ୍ୟ । ଯେହେତୁ ବେଦ ଏହାଙ୍କୁ ସ୍ତୁତିକରେ—"ଗଣାନାଂ ତ୍ୱାଂ ଗଣପତିଂ ହବା-ମହେ" ଅର୍ଥାତ୍ ହେ ଗଣମାନଙ୍କର ପତି ! ଜନତାର ସ୍ୱାମୀ ଓ ନାୟକ ! ଆପଣଙ୍କୁ ଆମ୍ଭେ ପୂଜା କରୁ । ଏହାଛଡ଼ା, ଗଣେଶ ସେନାଧ୍ୟକ୍ଷ ଥିବାରୁ କିପରି ଦେଶ ସୁଦୃଢ଼ରୂପେ ରକ୍ଷିତ ହେବ, ସେ ବିଷୟରେ ଦେଶ ରକ୍ଷୀ-ମାନଙ୍କ ହୃଦୟରେ ସ୍ୱଦେଶପ୍ରୀତି ଜାଗରଣ ପୂର୍ବକ ବୈଦେଶିକ ଅରାତି

ମାନଙ୍କୁ ଦମନ କରି ବିତାଡ଼ିତ କରିବାର ଶକ୍ତି ସଞ୍ଚୟ କରିବା ଏହି ଦେବତାଙ୍କର କାର୍ଯ୍ୟ । ଆହୁରି ମଧ୍ୟ ଏହି ଗଣେଶ 'ପ୍ରିୟାଣାଂ ତ୍ୱାଂ ପ୍ରିୟପତିଂ ହବାମହେ' ବୋଲି ବେଦ ବର୍ଣ୍ଣିତ ଥିବାରୁ ଲୋକ ମାନଙ୍କ ହୃଦୟରେ ପାରସ୍ପରିକ ପ୍ରେମ, ପ୍ରୀତି, ସ୍ନେହ, ସଦ୍‌ଭାବ ଓ ବନ୍ଧୁଭାବ ଜାଗ୍ରତ କରି ଆପଣା ଆପଣା ମଧ୍ୟରେ ସହଯୋଗ ସ୍ଥାପନ ପୂର୍ବକ ସମାନ ଭାବରେ ସୁଖ ସ୍ୱାଛନ୍ଦ୍ୟ ଉପଭୋଗ କରିବାର ପ୍ରବୃତ୍ତି ଦାନ କରୁ ଅଛନ୍ତି । ତୃତୀୟରେ ଏହାଙ୍କୁ ମଧ୍ୟ "ନିଧୀନାଂ ତ୍ୱାଂ ନିଧିପତିଂ ହବାମହେ" ବୋଲି ସ୍ତୁତି କରାଯାଏ ଅର୍ଥାତ୍ ହେ ନିଧିମାନଙ୍କର ପତି, ଅର୍ଥାତ୍ ପଦ୍ମ, ମହାପଦ୍ମ, ଶଙ୍ଖ, ମକର, କଚ୍ଛପ ମୁକୁନ୍ଦ, କୁନ୍ଦ, ନୀଳ ଓ ଖର୍ବ ରୂପକ ନବ ନିଧିର ଅଧୀଶ୍ୱର ! ତୁମ୍ଭଙ୍କୁ ଆରାଧନା କରୁଁ, ଆମ୍ଭପ୍ରତି ପ୍ରସନ୍ନ ହୁଅ । ଏହି ଗଣେଶ ସର୍ବ ନିଧିର, ସର୍ବୈଶ୍ୱର୍ଯ୍ୟର ତଥା ଧନ ସମ୍ପଦର ଅଧିପତି ଓ ନିୟନ୍ତା ହୋଇଥିବାରୁ କିପରି ସମସ୍ତେ ଧନ, ଜନ, ଗୋପ ଲକ୍ଷ୍ମୀରେ ଭୂଷିତ ହୋଇ ସୁଖରେ କାଳଯାପନ କରିବେ ତାହା ମଧ୍ୟ ଯଥାଯଥ ନିୟନ୍ତ୍ରଣ କରୁଅଛନ୍ତି । ନିଧିର ଅପରନାମ ଲଲାଟାଗ୍ନି । ଲଲାଟ ହିଁ ଭକ୍ତି ଓ ଜ୍ଞାନର କେନ୍ଦ୍ର । ଏହି ଜ୍ଞାନ ଭକ୍ତିର ଅଧୀଶ୍ୱର ଗଣେଶ ହୋଇଥିବାରୁ ପ୍ରତ୍ୟେକଙ୍କଠାରେ ଗୋ, ବ୍ରାହ୍ମଣ, ଗୁରୁ, ଦେବତାଙ୍କ ପ୍ରତି ଭକ୍ତି ତଥା ସଦସଦ୍ ବିଚାରାତ୍ମକ ସଦ୍‌ଜ୍ଞାନ ଦାନ କରି ଲୋକମାନଙ୍କୁ ସତ ପଥରେ ଚାଳିତ କରାଇବାର ପ୍ରେରଣା ଦାନ କରୁଅଛନ୍ତି । ଏହି ଦେବ ମଧ୍ୟ ଶୌର୍ଯ୍ୟ ବୀର୍ଯ୍ୟର ଆଧାର । ଏହାଙ୍କୁ ମଧ୍ୟ 'ବସୋମମ' ବୋଲି ସ୍ତୁତି କରାଯାଏ । ଅର୍ଥାତ୍ ହେ ଶୌର୍ଯ୍ୟ ବୀର୍ଯ୍ୟ ଶାଳିନ୍ ଗଣପତି ! ଆମ୍ଭମାନଙ୍କୁ ବଳ, ବୀର୍ଯ୍ୟ, ସାମର୍ଥ୍ୟ ତଥା କାର୍ଯ୍ୟକାରିଣୀ ଶକ୍ତି ଦାନ କରି ସର୍ବଦା ଜୟଯୁକ୍ତ କରାଅ । ଦେବୀ ଏହାଙ୍କୁ ଧାରଣ କରି ଥିବାରୁ ସର୍ବାଭୀଷ୍ଟ ପୂରଣ କରିବାରେ ସଦାଦକ୍ଷ । ପଞ୍ଚମରେ ସର୍ବୋପରି 'ଫଣିସମ୍ରାଟ୍' ବାସୁକି ବିଦ୍ୟମାନ । ଏହି ବାସୁକି ଦୁର୍ଦ୍ଦାନ୍ତ ଦାନବ ତଥା ଆସୁରୀ ପ୍ରକୃତି, ଗଣତନ୍ତ୍ର ବିରୋଧୀ ଅସହିଷ୍ଣୁ ଦୁର୍ଜନ ମାନଙ୍କ ଅତ୍ୟାଚାରରେ ନିଷ୍ପେଷିତା ପୃଥିବୀକୁ ନିଶ୍ଚଳ ଓ ଦୃଢ଼ଭାବରେ ବହନ କରି ସ୍ୱକର୍ତ୍ତବ୍ୟ ପାଳନରେ ଦୃଢ଼ପ୍ରତିଜ୍ଞ ରହି ଯେପରି ସହନ ଶକ୍ତିର ଜ୍ୱଳନ୍ତ ନିଦର୍ଶନ, ସେହିପରି ଏହି ଦେବୀ ଫଣିସମ୍ରାଟ୍‌ଙ୍କ ପରି ସର୍ବଂସହାତ୍ମକ ଗୁଣରେ ଭୂଷିତ ହୋଇ ଜଗଜ୍ଜନନୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରୁଅଛନ୍ତି । ଶିଷ୍ଟ, ଅଶିଷ୍ଟ ବହୁ ସ୍ୱଭକ୍ତଙ୍କର ଗୁଣ

ଦୋଷକୁ ମା' ଯେପରି ନିର୍ବିକାର ଚିତ୍ତରେ ସନ୍ତ୍ର ଦୋଷର ଆଧିକ୍ୟ ପରି- ଦୃଷ୍ଟ ହେଉଥିବା ବା ଶିଷ୍ଟଜନ ଅତ୍ୟାଚାର କରୁଥିବା ପୁତ୍ରଙ୍କୁ ଶାସନ ବିଧିରେ ଶାସନ କରେ, ସେହିପରି ଏହି ଦେବୀ ଶିଷ୍ଟ ଜନଙ୍କର ଶାନ୍ତି, ଶୃଙ୍ଖଳା, ନିର୍- ପତ୍ତି, ସୌଜନ୍ୟ ରକ୍ଷାପାଇଁ ଶାନ୍ତିବିରୋଧୀ କ୍ଷମତାର ଅପବ୍ୟବହାରକାରୀ ଦୁଷ୍ଟ ପ୍ରକୃତିର ଲୋକସମାଜକୁ ଶାସନ କରିବା ଓ ପାର୍ଥିବ ଜଗତର ସମତା ରକ୍ଷା କରିବା ପ୍ରଭୃତି ଏହାଙ୍କ ଗୁଣର ବୈଶିଷ୍ଟ୍ୟ । ଏଣୁ, ଦେବୀଙ୍କୁ ମାତୃରୂପରେ ସ୍ତୁତି କରାଯାଏ—"ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା, ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥" ତେଣୁ ସକଳାଧାରଭୂତା ସର୍ବଜଗତର ଆଦ୍ୟମାତା ଏହି ଦେବୀ ମନ୍ତ୍ରକଳ୍ପିତ ଦେବତାମାନଙ୍କ ଦ୍ୱାରା ଭୂଷିତ ହୋଇ "ଓଁ କର୍ତ୍ତ୍ରୀ କାରୟିତ୍ରୀ କରଣ- ଗୁଣମୟୀ କର୍ମହେତୁ ସ୍ୱରୂପା" ରୂପରେ ଅସୀମ ଶକ୍ତିକୁ ସସୀମ କରି 'ବିରଜା' ରୂପରେ ବିଦ୍ୟମାନା ।

## ନବଦୁର୍ଗାଙ୍କ ନାମ ଓ ଅବସ୍ଥିତି ନିରୂପଣ :—

ପ୍ରଥମଂ ଶୈଳପୁତ୍ରୀତି ଦ୍ୱିତୀୟଂ ବ୍ରହ୍ମଚାରିଣୀ ।
ତୃତୀୟଂ ଚନ୍ଦ୍ରଘଣ୍ଟେତି କୁଷ୍ମାଣ୍ଡେତି ଚତୁର୍ଥକମ୍ ॥
ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟନୀ ତଥା ।
ସପ୍ତମଂ କାଳରାତ୍ରୀତି ମହାଗୌରୀତି ଚାଷ୍ଟମମ୍ ॥
ନବମଂ ସିଦ୍ଧିଦାତ୍ରୀତି ନବଦୁର୍ଗାଃ ପ୍ରକୀର୍ତ୍ତିତାଃ ॥" (ଚଣ୍ଡୀ)

୧-ଶୈଳପୁତ୍ରୀ—ଏହାଙ୍କର ଅନ୍ୟନାମ ବଇଷା ଦେବୀ ବା ବଇଷେଶ୍ୱରୀ । ଏହି ଦେବୀ ବଇଷପୁର ଗ୍ରାମର ଗ୍ରାମଦେବତା ରୂପରେ ପୂଜା ପାଉଛନ୍ତି ।

୨-ବ୍ରହ୍ମଚାରିଣୀ—ଏହି ଦେବୀ ସିନ୍ଦୁରୀ ବା ସିନ୍ଦୁରେଇ ନାମରେ ପରି- ଚିତା । ଗମବାଗକୁ ଯିବା ବାଟରେ ସିନ୍ଦୁରେଇ ମୁହଁ- ଠାରେ ଏହି ଦେବୀ ଅବସ୍ଥିତା । ଦେବୀଙ୍କ ନାମାନୁସାରେ ସ୍ଥାନର ନାମ 'ସିନ୍ଦୁରେଇ ମୁହଁ' ହୋଇଅଛି ।

୩-ଚନ୍ଦ୍ରଘଣ୍ଟା—ଏହାଙ୍କର ଅନ୍ୟନାମ ବଲ୍ଲୀଖିଆଦେବୀ, ଏହି ଦେବୀ ଯାନବଜାର ମୁଣ୍ଡ ବଲ୍ଲୀଖିଆଘାଟ ନାମକ ସ୍ଥାନରେ ଅବସ୍ଥିତା । ଏହାଙ୍କ ନାମାନୁସାରେ 'ବଲ୍ଲୀଖିଆଘାଟ' ହୋଇଅଛି ।

୪-କୁଷ୍ମାଣ୍ଡା—ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଖୋଦୋଡ଼ା ଗ୍ରାମ ନିକଟରେ ଖିଲ୍ଲଣ୍ଟେଶ୍ୱରଙ୍କ ନିକଟରେ ଅବସ୍ଥିତା ।

୫-ସ୍କନ୍ଦମାତା—ଏହି ଦେବୀ ମାଳଘାଟର ପଶ୍ଚିମକୁ ଉତ୍ତରେଶ୍ୱର ମହାଦେବଙ୍କ ନିକଟବର୍ତ୍ତୀ ଶଚୀତୀର୍ଥ ନିକଟରେ ପ୍ରତିଷ୍ଠିତା ।

୬-କାତ୍ୟାୟନୀ—ଯାଉଁଳୀବନ୍ଧର ପୂର୍ବକୁ ତ୍ରିଲୋଚନ ମଠର ନିକଟରେ ଏହି ଦେବୀ ପ୍ରତିଷ୍ଠିତା ।

୭-କାଳରାତ୍ରୀ—ଲକ୍ଷେନ୍ଦ୍ରପୁରରେ ଏହି ଦେବୀ ଅବସ୍ଥିତା । ପ୍ରଚଳିତ ନାମ ଜୟଦୁର୍ଗା ।

୮-ମହାଗୌରୀ—ଜଗନ୍ନାଥଙ୍କ ଉତ୍ତରଦ୍ୱାରରେ ଜଗନ୍ନାଥ ବେଢ଼ା ମଧ୍ୟସ୍ଥ 'ମୁକ୍ତେଶ୍ୱର' ଶିବଙ୍କ ନିକଟରେ ଅବସ୍ଥିତା ।

୯-ସିଦ୍ଧିଦାତ୍ରୀ—ହୀରାପୁର ନିକଟବର୍ତ୍ତୀ ବୈତରଣୀ ନଦୀ କୂଳରେ ଥିବା ସିଦ୍ଧେଶ୍ୱରଙ୍କ ନିକଟରେ ଏହି ଦେବୀ 'ସିଦ୍ଧେଶ୍ୱରୀ' ନାମରେ ଅବସ୍ଥିତା । ଏହିଠାରେ ଅଶୋକାଷ୍ଟମୀ ମେଳା ହୁଏ । ଏଠାରେ ବୈତରଣୀ ନଦୀ ଉତ୍ତରବାହିନୀ ହୋଇଅଛି ।

## ଚତୁଃଷଷ୍ଟି ଯୋଗିନୀ :—

ଏମାନଙ୍କର ଅବସ୍ଥିତି ନିରୂପଣ କରିବା କଠିନ । କାରଣ, ଏମାନଙ୍କ ମଧ୍ୟରୁ କେଏ କେଉଁଠି ସିନ୍ଦୂରବୋଳିତ ସର୍ବାଙ୍ଗ ହୋଇ 'ଛେନାଖାଇ', 'କାଗୁଳାଇ', 'ମଙ୍ଗଳା' ପ୍ରଭୃତି ଭିନ୍ନ ନାମରେ ନାମିତ ହୋଇ ଗ୍ରାମଦେବତା ରୂପରେ ପୂଜା ପାଉଛନ୍ତି । କେଏ ବା କେଉଁଠି ଲୋକମାନଙ୍କ ଅଗୋଚରରେ ରହି ଯାଇଅଛନ୍ତି ।

## ଅଷ୍ଟଚଣ୍ଡୀ ବା ଅଷ୍ଟଶକ୍ତି :—

ଏମାନେ ଦେବୀଙ୍କର ଯୋଗମୂର୍ତ୍ତି । ସ୍ଥାନନିରୂପଣ—

୧-ଉଗ୍ରଚଣ୍ଡା—କୋଠବସନ୍ତପୁର, ଜୁମା ମସଜିଦ୍ ଦେଇ ଯାଇ-ଥିବା ବୈତରଣୀକୂଳ ବନ୍ଧର ଦକ୍ଷିଣ ପାର୍ଶ୍ୱରେ, ଏହି ଦେବୀଙ୍କର ମୁଖ ଉତ୍ତର ।

୨-ପ୍ରଚଣ୍ଡା—ବରାହଙ୍କ ଦକ୍ଷିଣରେ 'ସଙ୍ଗତ' ବା 'ସୂର୍ଯ୍ୟମନ୍ଦିର'ର ଉତ୍ତ-ରରେ ଏହି ଦେବୀ ବିଦ୍ୟମାନା, ଏହାଙ୍କର ମୁଖ ପୂର୍ବକୁ ।

୩-ଚଣ୍ଡୋଗ୍ରା—ଏହି ଦେବୀଙ୍କର ଅପର ନାମ 'ଶୀତଳା', ଏହି ଦେବୀ ଶୀତଳେଶ୍ୱର ଗ୍ରାମର ଦକ୍ଷିଣରେ ଅବସ୍ଥିତା ।

୪-ଚଣ୍ଡନାୟିକା—ଯାଜ୍‌ପୁର ନିକଟବର୍ତ୍ତୀ 'ହଂସରେଖା' ବା 'ହଂସିଆ' କୂଳରେ ଦେଓ୍ୱାନ ବାହାଦୁର ୬ ହରିବଲ୍ଲଭ ଦାସଙ୍କ-ଘର ପାଖରେ ଅବସ୍ଥିତା । ଏହାଙ୍କୁ ଲୋକେ ବସନ୍ତେଇ ବୋଲି କହନ୍ତି । ଏହି ଦେବୀ ପୂର୍ବାଭିମୁଖୀ ।

୫-ଚଣ୍ଡା— କୋଠବସନ୍ତପୁରରେ ଥିବା 'ଉଗ୍ରଚଣ୍ଡା'ଙ୍କ ନିକଟରେ ଏହି ଦେବୀ ଅଛନ୍ତି ।

୬-ଚଣ୍ଡବତୀ—ଏହାଙ୍କର ଅପରନାମ 'ଡାକେଶ୍ୱରୀ', ଲଖବିନ୍ଧା ପଡ଼ିଆ ନିକଟବର୍ତ୍ତୀ ।

୭-ଚଣ୍ଡରୂପା—ବୈଦ୍ୟରାଜପୁର ଗ୍ରାମରେ ଅବସ୍ଥିତା ।

୮-ଅତିଚଣ୍ଡିକା—ବଡ଼ଜାହାଠର ଦକ୍ଷିଣରେ ଦେଓ୍ୱାନ ବାହାଦୁର ୬ ହରିବଲ୍ଲଭ ଦାସଙ୍କ ଘେରବାଡ଼ ଭିତରେ ଏହି ଦେବୀ ଅଛନ୍ତି । ମହାଷ୍ଟମୀ ଦିନ ଏହାଙ୍କୁ ଯଥାଶକ୍ତି ପୂଜା କରି ଚଣ୍ଡୀପାଠ ଓ ହୋମ ମଧ୍ୟ କରାଯାଏ । ଏହା ଦେଓ୍ୱାନ୍ ବାହାଦୁରଙ୍କ ତରଫରୁ ହୁଏ

"ଉଗ୍ରଚଣ୍ଡା ପ୍ରଚଣ୍ଡା ଚ ଚଣ୍ଡୋଗ୍ରା ଚଣ୍ଡନାୟିକା
ଚଣ୍ଡା ଚଣ୍ଡବତୀ ଚୈବ ଚଣ୍ଡରୂପାତିଚଣ୍ଡିକା ॥"

ଏହା ଦଶଭୁଜା ଦୁର୍ଗାଙ୍କ "ଜଟାଜୁଟ ସମାଯୁକ୍ତାମ୍..." ଧ୍ୟାନ ମଧ୍ୟରେ ଉଲ୍ଲେଖିତ ।

## ଦ୍ୱାଦଶ ମାଧବଙ୍କର ଉତ୍ପତ୍ତି ଓ ଅବସ୍ଥାନ :—

ତତ୍ପରେ ଏହି ଦେବୀମାନଙ୍କୁ ଆବିର୍ଭୂତା ହେବାର ଦେଖି ବ୍ରହ୍ମା ଭାବିଲେ, ପୁରୁଷୋତ୍ତମ ଜନାର୍ଦ୍ଦନଙ୍କ ବ୍ୟତୀତ ଏହି ହରଗୌରୀକ୍ଷେତ୍ର 'ଅବିମୁକ୍ତ' କ୍ଷେତ୍ରରୂପରେ ପ୍ରସିଦ୍ଧି ଲାଭ କରି ପାରିବନାହିଁ । କାରଣ—

"ଯତ୍ର ପୁଣ୍ୟତମଂ କ୍ଷେତ୍ରଂ ତତ୍ର ଦେବଃ ପିନାକଧୃକ୍ ।
ତତ୍ର ଦେବୀ ସ୍ୱୟଂ ଗୌରୀ ତତ୍ର ଦେବୋ ଜନାର୍ଦ୍ଦନଃ ॥"

(ବ୍ରଃ ପୁଃ ୧ଅ, ୩୭)

ଅର୍ଥାତ୍ ଯେଉଁଠାରେ ପିନାକପାଣି ଶିବ ଓ ଗୌରୀ ବାସ କରନ୍ତି ସେଠାରେ ସ୍ୱୟଂ ଜନାର୍ଦ୍ଦନ ନିତ୍ୟ ବାସ କରନ୍ତି । ଏଣୁ କୃତାଞ୍ଜଳି ପୂର୍ବରେ ବ୍ରହ୍ମା ପୁରୁଷସୂକ୍ତ ଦ୍ୱାରା ନାରାୟଣଙ୍କୁ ନିମ୍ନୋକ୍ତ ପ୍ରକାରରେ ସ୍ତୁତି କଲେ ।

## ବ୍ରହ୍ମକୃତ ବିଷ୍ଣୁ ସ୍ତବ :— (ବ୍ରଃ ପୁଃ ୩ଅ)

'ସୂର୍ଯ୍ୟ'— ବିପ୍ରା ମୁଖାନ୍ନୃପତୟୋ ହରିଦଶ୍ୱ ଇନ୍ଦୁ-
ସ୍ତ୍ୱନ୍ମାନସା ଛ୍ରୁତି ପୃଷ୍ଠାତ୍ କଲୁଷେ ଭୁଜାଭ୍ୟାମ୍ ।
ଷଦ୍ୱାଣି ପାଦକମଳାଣ୍ଡରଣୀ ଚ ଶୂଦ୍ରା-
ଜଙ୍ଘାସ୍ତୁଶ୍ଚାସ୍ୟ ଜଦଭୂତ୍ରୁଗୁ ଗାୟବର୍ଣ୍ଣ ।୬।
ଇନ୍ଦ୍ରଃ କୃଶାନୁରପି ତେ ମୁଖତଃ ସମୀରଃ
ପ୍ରାଣାଦ୍ୟଜାୟତ ଚ ନାଭିତ ଅନ୍ତରୀକ୍ଷମ୍ ।
ଦ୍ୟୌଃ ଶୀର୍ଷତଃ ସମଭବତ୍ ବନ୍ଧବେଶ୍ଚ ପଦ୍‌ଭ୍ୟାଂ
ନାଭୀ ସବୋତ୍ରଦ୍ୱତ ଈଶ ! ମମାପି ଜନ୍ମ ।୭।
ବନ୍ଦାମି ମାନ୍ୟମଖିଳସ୍ୟ ମହେନ୍ଦ୍ର ଚନ୍ଦ୍ର-
ଚନ୍ଦ୍ରାବତଂସ ବଧିବୃନ୍ଦ ସମର୍ଚ୍ଚ୍ୟମାନମ୍ ।
ପଦ୍ମାକରାମ୍ବୁରୁହ ସମ୍ଭବ ଲବ୍ଧ କାନ୍ତି
ପାଦାରବିନ୍ଦ ଯୁଗଳଂ ଭବତୋ ମୁରାରେ ।୮।

ଯସ୍ୟ ପାଦପଦ୍ମ ଯୁଗଳଂ ଶିରସାଭିବନ୍ଦ୍ୟ
ଭକ୍ତ୍ୟା ବିନାପି ସକୃଦୁଜ୍‌ଝିତ କର୍ମବନ୍ଧଃ ।
ତଦ୍ ଯାନ୍ତି ଧାମ ପରମଂ ତନୁଭ୍ରନ୍‌ମୁଗ୍ଧ
ଦୁଷ୍ଟାପମବ୍‌ଜ ନୟନାୟ ନମୋଽସ୍ତୁ ତୁଭ୍ୟମ୍ ।୯।
ବିବଧ ମିଦମଶେଷଂ ସ୍ୱୋଦରସ୍ୟୈକଦେଶେ
ବିନ୍ହିତ ବସନ୍ତଂ କୃତ୍ୱା ବିଶ୍ୱମବ୍ୟାକୁଳଂ ଯଃ ।
ସ୍ୱପିତି ବଟ ପଲାଶେ ହନ୍ତ କଲ୍ପାବସାନେ
କପଟ ଶିଶୁ ମନନ୍ତଂ ତ୍ୱାଂ ପ୍ରପଦ୍ୟେ ଶରଣ୍ୟମ୍ ।୧୦।
ଏବଂ ସ୍ତୁବନ୍ତ ମତବନ୍ଦଭବଂ ସୁସୂକ୍ଷ୍ମ
ଦନ୍ତ ପ୍ରଶାନ୍ତିରୁଚିଭିଃ କନକାବଦାତମ୍ ।
କୁବନ୍ନମୁଷ୍ୟ ବପୁରକ୍ଷତ ଚନ୍ଦ୍ରଗୌରଂ
ବାଗ୍ମୀ କୁମାରଃ ସମଭ୍ରୁବୟୂଦମ୍ବୁଜାକ୍ଷଃ ।୧୧।

ବ୍ରହ୍ମା ଏହିପରି ସ୍ତୁତି କରୁକରୁ ଧ୍ୟାନନିମିଳିତନେତ୍ର ହୋଇ କିଛିକ୍ଷଣ ସମାଧିସ୍ଥ ହେବାରୁ—

"ଧ୍ୟାୟତୋ ଦେହତ ସ୍ତସ୍ୟତଦା ମାଧବ ମୂର୍ତ୍ତୟଃ ।
ଦ୍ୱାଦଶାବିର୍ବଭୂବୁସ୍ତ ତାଭିଃ କ୍ଷେତ୍ରଂ ବିଭୂଷିତମ୍ ॥"
(ବ୍ର: ପୁ: ୩ଅ, ୧୮)

ଧ୍ୟାନମଗ୍ନ ବ୍ରହ୍ମାଙ୍କ ଶରୀରରୁ 'ଦ୍ୱାଦଶମାଧବ' ଆବିର୍ଭୂତ ହୋଇ କ୍ଷେତ୍ରରାଜକୁ ବିଭୂଷିତ କଲେ । ବିଷ୍ଣୁଙ୍କର ଦ୍ୱାଦଶ ନାମ ଓ ଦ୍ୱାଦଶାକ୍ଷର ମନ୍ତ୍ର ଅନୁସାରେ ଏହି ଦ୍ୱାଦଶମାଧବ ଦ୍ୱାଦଶଧା ମୂର୍ତ୍ତି ବିଶେଷ ।

"ନାମାନି ଦ୍ୱାଦଶୈତସ୍ୟ ମନ୍ତ୍ରୋଽପି ଦ୍ୱାଦଶାକ୍ଷରଃ ।
ମୂର୍ତ୍ତୟୋ ଦ୍ୱାଦଶୈତସ୍ୟ ମୁଦେ ମୁଜଶପୋଃ ସଦା ॥ ୧୫ "

ଦ୍ୱାଦଶ ମାଧବ ଓ ଦର୍ଶନ ବିଧି (ବ୍ର. ପୁ. ୮ଅ) ଅନୁସାରେ—

୧-ଆଦିମାଧବ—"ଫାଲ୍‌ଗୁନସ୍ୟ ସିତେପକ୍ଷେ ଦେବ ! ଗୋବିନ୍ଦ ଫଙ୍କକେ ।
ଏକାଦଶ୍ୟାଂ ତିଥୌ...... ।

ତୀର୍ଥେ ବୈ 'ବାରୁଣେ' ଦେବ ପ୍ରାତଃ ସ୍ନାତ୍ୱା ସମାହିତଃ ।
'ଚକ୍ରାଦିମାଧବଂ' ଦେବ ମାଦିତ୍ୟାସ୍ଥିତବର୍ଚ୍ଚସମ୍ ।
ଅଭିବନ୍ଦ୍ୟ ନୃଣା ଚୈନ ମାପାପ୍ସାନନ୍ଦପୁଣ୍ଡ୍ୟସ୍ୟା ॥'' (୮ଅ, ୨୧)

ଫାଲ୍‌ଗୁନ ମାସ ଶୁକ୍ଳ ଏକାଦଶୀ ଅର୍ଥାତ୍ 'ଗୋବିନ୍ଦ ଏକାଦଶୀ' ଦିନ ବନ୍ଧାଣ ଗ୍ରାମର ପଶ୍ଚିମରେ ଥିବା ବୈତରଣୀର ବାରୁଣୀ ତୀର୍ଥରେ ସ୍ନାନକରି ଆଙ୍କୁଲି ଗ୍ରାମର ପୂର୍ବ ଭାଗରେ ବୈତରଣୀ ତଟରେ ଅବସ୍ଥିତ 'ଆଦିମାଧବ'ଙ୍କୁ ଦର୍ଶନ କରିବ ।

୨-ବରାହମାଧବ—

''ବ୍ରଜେତ୍ 'ବରାହତୀର୍ଥଂ'ତୁ ବରାହୋ ଯତ୍ର ବନ୍ଦ୍ୟତେ ।
ମଣିଚୂଡ଼ଗିରୌ ଦେବ 'ବରାହୋ' ରମତେ ସୁଖମ୍ ॥'' ୨୨

ତତ୍ପରେ ବରାହଙ୍କ ପଶ୍ଚିମରେ ଥିବା ବରାହତୀର୍ଥରେ ସ୍ନାନ କରି ଭଗବାନ୍ 'ବରାହମାଧବ' ବରାହଙ୍କୁ ଦର୍ଶନ କରିବା ଉଚିତ । ଏହି ବରାହ ଭଗବାନଙ୍କ ଅଂଶାବତାର । ଏହାଙ୍କୁ ଦର୍ଶନ କରି ଲୋକ ସର୍ବପାପରୁ ମୁକ୍ତି-ଲାଭ କରେ ।

୩-ଅନନ୍ତମାଧବ—

'ପ୍ରାଜାପତ୍ୟଂ' ବରଂ ତୀର୍ଥଂ ବ୍ରଜେତ୍ ତ୍ରୈଲୋକ୍ୟବିଶ୍ରୁତମ୍ ।
'ଅନନ୍ତମାଧବଂ' ସାକ୍ଷାତ୍ ଅଭିବନ୍ଦ୍ୟ ମହେଶ୍ୱରି ! ॥ ୨୫

'ଯାଜପୁର' 'ଅଷ୍ଟକେଶ୍ୱର'ଙ୍କ ଉତ୍ତରରେ ଅବସ୍ଥିତ 'ପ୍ରଜାପତି' ତୀର୍ଥରେ ସ୍ନାନ କରି ଯଜ୍ଞାଶିତୀର୍ଥର ନୈଋତ କୋଣରେ ଅବସ୍ଥିତ 'ଅନନ୍ତ-ମାଧବ'ଙ୍କୁ ଦର୍ଶନ କରାଯାଏ ।

୪-ଗଦାଧର ମାଧବ—

'ଗଦାତୀର୍ଥଂ' ତତୋ ଗଚ୍ଛେତ୍ ଗଦାଧର ମଥେଶ୍ୱରମ୍ ।''

ବିରଜା ଦେବୀଙ୍କ ବାମଭାଗରେ ଥିବା ଈଶାନେଶ୍ୱରଙ୍କ ଦକ୍ଷିଣରେ ଗଦାତୀର୍ଥରେ ସ୍ନାନକରି ଗୟାନାଭି କୂପର ନୈଋତ କୋଣରେ ପଶ୍ଚିମ

ପାର୍ଶ୍ୱ କାନ୍ଥରେ ଅବସ୍ଥିତ 'ଗଦାଧର ମାଧବ'ଙ୍କୁ ଦର୍ଶନ କରିବ ।

ଗୟାନାଭିରେ ପିଣ୍ଡଦାତା ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡପ୍ରଦାନ କରି ଏବଂ ଗଦାଧରଙ୍କ ଆଗରେ ହାତଯୋଡ଼ି ନିମ୍ନୋକ୍ତ ସାକ୍ଷ୍ୟ ମନ୍ତ୍ର ପାଠ କରନ୍ତୁ—(ଗୟାନାଭି ଶ୍ରାଦ୍ଧପଦ୍ଧତିରୁ)

"ସାକ୍ଷିଣଃ ସନ୍ତୁ ମେ ଦେବାଃ ବ୍ରହ୍ମେଶାନାଦୟସ୍ତଥା ।
ମୟା ଗୟାଂ ସମାସାଦ୍ୟ ପିତୃଣାଂ ନିଷ୍କୃତିଃ କୃତା ॥
ଆଗତୋଽସି ଗୟାଂଦେବ ପିତୃକାର୍ଯ୍ୟେ ଗଦାଧର !
ତ୍ୱମେବ ସାକ୍ଷୀ ଭଗବନ୍ ଅନୃଣୋଽହଂ ଋଣତ୍ରୟାତ୍ ॥"

ଋଣତ୍ରୟ—ଦେବଋଣ, ପିତୃଋଣ ଓ ଅତିଥିଋଣ ।

ଶ୍ରାଦ୍ଧ, ବୈଶ୍ୱଦେବ ଓ ଅତିଥି ସେବାଦ୍ୱାରା ଗୃହୀ ଏହି ତ୍ରିବିଧ ଋଣରୁ ମୁକ୍ତ ହୁଏ । ଏଣୁ ପ୍ରତ୍ୟେକଙ୍କର ଶ୍ରାଦ୍ଧ ବୈଶ୍ୱଦେବାଦି କରିବା ବିଧେୟ !

୫-ପୁରୁଷୋତ୍ତମ ମାଧବ—

"ଦୃଷ୍ଟ୍ୱା ପ୍ରଣମ୍ୟ ବୈ ତସ୍ମାତ୍ 'ଦୁର୍ବାସସ୍ତୀର୍ଥ' ମୁତ୍ତମମ୍ ।
ବ୍ରଜେତ୍ ତତ୍ର ମହାଦେବ ! 'ପୁରୁଷୋତ୍ତମ' ସଂଜ୍ଞକମ୍ ॥" ୨୬ ।

ଈଶାନେଶ୍ୱରଙ୍କ ଉତ୍ତରରେ ବେଢ଼ା ବାହାରେ ଥିବା ଲୋମହର୍ଷଣେଶ୍ୱରଙ୍କ ନିକଟରେ 'ଦୁର୍ବାସାତୀର୍ଥ'ରେ ସ୍ନାନ କରି ପାଉଁଳୀବନ୍ଧ ପୂର୍ବ ଭାଗସ୍ଥିତ ତ୍ରିଲୋଚନ ମହାଦେବଙ୍କ ପ୍ରାଚୀର ବାହାରେ ସିଂହଦ୍ୱାର ନିକଟରେ ଅବସ୍ଥିତ 'ପୁରୁଷୋତ୍ତମ ମାଧବ'ଙ୍କୁ ଦର୍ଶନ କରିବ ।

୬-ନରକାନ୍ତ ମାଧବ—

"ଅଭିବନ୍ଦ୍ୟ ତତୋଗଚ୍ଛେତ୍ 'ବାୟବ୍ୟଂ' ତୀର୍ଥମୁତ୍ତମମ୍ ।
ଯତ୍ରାସ୍ତେ ଭଗବାନ୍ ଦେବ 'ନରକାନ୍ତକ' ସଂଜ୍ଞକଃ ॥" ୨୭।

ଚମ୍ପାବାଗର ଦକ୍ଷିଣରେ ଥିବା ବାୟବ୍ୟତୀର୍ଥରେ ସ୍ନାନକରି ଲୋମହର୍ଷଣେଶ୍ୱରଙ୍କ ନିକଟରେ 'ନରକାନ୍ତ ମାଧବ'ଙ୍କୁ ଦର୍ଶନ କରିବ ।

୭—ଭୋଗ ମାଧବ—

ଇଷ୍ଟ୍ୱା ପ୍ରଣମ୍ୟ ଦେବେଶି ତତୋ ଗଚ୍ଛେତ୍ 'ସୁଦର୍ଶନମ୍' ।
ତତ୍ର ଗତ୍ୱା ମହାଦେବ ଭୋଗମାଧବ ସଂଜ୍ଞକମ୍ ॥" ୩୫।

ଭାଗବତପୁର ଗ୍ରାମର ପଶ୍ଚିମରେ ଥିବା କେଦାରେଶ୍ୱରଙ୍କ ଦକ୍ଷିଣ-ଭାଗସ୍ଥ 'ସୁଦର୍ଶନ' ତୀର୍ଥରେ ସ୍ନାନକରି ଭୋଗମାଧବ ଗ୍ରାମର ପଶ୍ଚିମ ମନ୍ଦାକିନୀ ତଟରେ ଅବସ୍ଥିତ 'ଭୋଗମାଧବ'ଙ୍କୁ ଦର୍ଶନ କରିବ । ଏହାଙ୍କ ନାମାନୁସାରେ ଗ୍ରାମର ନାମ ଭୋଗ ମାଧବ ।

୮-ବାସୁଦେବ ମାଧବ—

"ଦୃଷ୍ଟ୍ୱାଭିବନ୍ଦ୍ୟ ଭକ୍ତ୍ୟା ତୁ ତୀର୍ଥଂ 'ଚନ୍ଦ୍ରଂ' ତତୋ ବ୍ରଜେତ୍ ।
ତତୋ ଗଚ୍ଛେନ୍ମହାଦେବ ବାସୁଦେବାଭିଧଂ ହରିମ୍ ॥" ୩୭ ।

ଖଣ୍ଡେଶ୍ୱର ଗ୍ରାମର ପଞ୍ଚମେଳାଠାରେ 'ଚନ୍ଦ୍ରମା ବାଡ଼' ବୋଲି ପ୍ରସିଦ୍ଧ 'ଚନ୍ଦ୍ରତୀର୍ଥ'ରେ ସ୍ନାନକରି ଗୋଧନେଶ୍ୱର ଗ୍ରାମର ପଶ୍ଚିମରେ 'ବାସୁଦେବ ମାଧବ'ଙ୍କୁ ଦର୍ଶନ କରିବ ।

୯-ଯୋଗମାଧବ—

"ନାରାୟଣାଖ୍ୟମେତସ୍ମାତ୍ ତୀର୍ଥଂ ଗଚ୍ଛେତ୍ ବରାନନେ ।
ତତ୍ର ପଶ୍ୟେଦ୍ ବରାରୋହେ 'ଯୋଗମାୟିନ' ମଚ୍ୟୁତମ୍ ॥" ୩୮ ।

ଗଣପତିପୁରର ପଶ୍ଚିମ ଓ ବଲ୍ଲୀଶ୍ରୀଦେବୀଙ୍କ ପଶ୍ଚିମ (ବଲ୍ଲୀଶ୍ରୀଘାଟ) ବୈତରଣୀ ତଟରେ 'ନାରାୟଣ ତୀର୍ଥ'ରେ ସ୍ନାନକରି 'ଯୋଗମାଧବ'ଙ୍କୁ ଦର୍ଶନ କରିବ ।

୧୦-ଚମ୍ପକ ମାଧବ—

"ତୀର୍ଥଂ ସମ୍ଭିନ୍ନକଂ" ନାମ ସର୍ବସଂହାର କାରକମ୍ ।
ତତ୍ର 'ଚମ୍ପକନାମାନଂ' ମାଧବଂ ବିଶ୍ୱରକ୍ଷକମ୍ । ୪୦ ।

ଶାରଙ୍ଗେଶ୍ୱରଙ୍କ ଦକ୍ଷିଣ ବୈତରଣୀ ତୀରସ୍ଥିତ 'ସମ୍ଭିନ୍ନତୀର୍ଥ'ରେ ସ୍ନାନକରି ଏହି ତୀର୍ଥର ନୈଋତ କୋଣରେ ଅବସ୍ଥିତ 'ଚମ୍ପକମାଧବ'ଙ୍କୁ ଦର୍ଶନ କରିବ ।

୧୧-ହରିହର ମାଧବ—

ଅଭିବନ୍ଦ୍ୟ ତତୋଗଚ୍ଛେତ୍ ତ୍ରିବେଣୀଂ ଲୋକବନ୍ଦିତାମ୍ ।
ତତ୍ରାଭିବନ୍ଦ୍ୟ ଗୋବିନ୍ଦଂ ଦେବଂ 'ହରିହରାତ୍ମକମ୍' । ୪୧ ।

ସିଦ୍ଧେଶ୍ୱରଙ୍କ ବାୟୁକୋଣରେଥିବା 'ତ୍ରିବେଣୀ' ତୀର୍ଥରେ ସ୍ନାନ କରି ଏହି ତୀର୍ଥର ଉତ୍ତରରେ ଅବସ୍ଥିତ 'ହରିହର ମାଧବ'ଙ୍କୁ ଦର୍ଶନ କରିବ । ଏହା ପାହାଡ଼ପୁର ହାଇସ୍କୁଲ ମାଇନର ସ୍କୁଲ ନିକଟରେ ।

୧୨- ସିଦ୍ଧ ମାଧବ—

'ସିଦ୍ଧତୀର୍ଥଂ' ତତୋ ଗଚ୍ଛେତ୍ 'ସିଦ୍ଧୋ' ଯତ୍ର ଜନାର୍ଦ୍ଦନଃ ।
ମାଧବଂ ରମୟା ସାର୍ଦ୍ଧଂ ଦୃଷ୍ଟ୍ୱା ତ ପ୍ରଣମେତ୍ ସୁଧୀଃ ॥" ୪୨ ।

ସିଦ୍ଧେଶ୍ୱରଙ୍କ ନିକଟ ଉତ୍ତରବାହିନୀ ବୈତରଣୀରେ 'ସିଦ୍ଧତୀର୍ଥ'ରେ ସ୍ନାନ କରି ସିଦ୍ଧେଶ୍ୱରଙ୍କ ପଶ୍ଚିମରେ 'ସିଦ୍ଧମାଧବ'ଙ୍କୁ ଦର୍ଶନ କରିବ । ଏହିଠାରେ ଅଶୋକାଷ୍ଟମୀ ଯାତ୍ରା ହୁଏ ।

ବି. ଦ୍ର.— ଉଲ୍ଲିଖିତ ତୀର୍ଥ ମାନଙ୍କ ମଧ୍ୟରୁ ଅଧିକାଂଶ ତୀର୍ଥସ୍ଥାନ ପ୍ରାୟ ଲୁପ୍ତ ହୋଇ କେବଳ ନାମତଃ ରହିଅଛି । କେବଳ ଏହି ସ୍ଥାନରେ ଧୂଳି ସ୍ପର୍ଶ କଲେ ତୀର୍ଥସ୍ଥାନର ଫଳ ମିଳିଥାଏ ।

ଉଲ୍ଲିଖିତ ଗ୍ରନ୍ଥରେ ଦ୍ୱାଦଶ ମାଧବଙ୍କୁ ଦର୍ଶନ କରି ସିଦ୍ଧ ମାଧବଙ୍କ ଆଗରେ ଠିଆହୋଇ ବଦ୍ଧାଞ୍ଜଳି ପୂର୍ବକ ନିମ୍ନୋକ୍ତ ମନ୍ତ୍ର ପାଠ କରଯାଏ—

"ଗ୍ରନ୍ଥୋକ୍ତ ବିଧିନା ଦେବ କୃତଂ ମାଧବ ଦର୍ଶନମ୍ ।
ପରିପୂର୍ଣ୍ଣ ମିଦଂ ମେଽସ୍ତୁ ଭଗବନ୍ ତ୍ୱତ୍ ପ୍ରସାଦତଃ ॥
ତ୍ୱନ୍ନାମ ଶ୍ରୁତି ମାତ୍ରେଣ କର୍ମ ଶ୍ରାଦ୍ଧାଦିକଂ ହରେ !
ପରିପୂର୍ଣ୍ଣଂଭବତ୍ୟେତତ୍ ଉକ୍ତଂ ବ୍ୟାସାଦିଭିଃ ପୁରା ॥" ୫୭-୫୮ ।

## ଅଷ୍ଟଭୈରବଙ୍କ ନାମ ଓ ଅ ସ୍ଥିତି :—

ଏମାନଙ୍କ ମଧ୍ୟରୁ ପ୍ରଥମ ଭୈରବ ଚତୁଷ୍ଟୟ କ୍ଷେତ୍ରପାଳ ବା ସ୍ଥାନ-ରକ୍ଷକ ଅଟନ୍ତି । "ତଦାପୂର୍ବତନପାଳାସ୍ତେ ଚତ୍ୱାରୋ ଭୈରବା ଅପି ।"
( ୮ଅ: ୫ )

୧- ମହାଭୈରବ—

ଯାଉଁଳୀବନ୍ଧର ପୂର୍ବରେ ଥିବା ତ୍ରିଲୋଚନଙ୍କ ଆଗରେ ମଣ୍ଡପ କାନ୍ଥରେ ଅବସ୍ଥିତି ।

୨- ସଂହାର ଭୈରବ—

ବିରଜା ମନ୍ଦିରର ପଶ୍ଚିମ ପାଖ ମନ୍ଦିର ଗାତ୍ରରେ ଅବସ୍ଥିତ । ଏହାଙ୍କୁ ଏକପାଦ ଭୈରବ କହନ୍ତି ।

୩- ଅସିତାଙ୍ଗ ଭୈରବ—

ବଜାରରୁ ବିରଜାଙ୍କ ଆଡ଼କୁ ଆସିବା ବେଳେ ପ୍ରଧାନ ରାଜପଥର ପଶ୍ଚିମ ଦିଗରେ ଅବସ୍ଥିତ ଆଖଣ୍ଡଳେଶ୍ୱର ଶିବଙ୍କ ବାମ ଭାଗରେ ଏହି ଭୈରବ ବିଦ୍ୟମାନ ।

୪- ରୁରୁ ଭୈରବ—

ବିରଜା ମନ୍ଦିରରେ ଦେବୀଙ୍କ ବାହନ ସିଂହଙ୍କ ଦକ୍ଷିଣ ଦିଗ କାନ୍ଥରେ ଏହି ଭୈରବ ଅବସ୍ଥିତ ।

୫- କାଳଭୈରବ—

ସିଦ୍ଧେଶ୍ୱରଙ୍କ ବେଢ଼ାର ଉତ୍ତର ଭାଗରେ ଅବସ୍ଥିତ ।

୬- ତାମ୍ରଚୂଡ଼ ଭୈରବ—

ଜଗନ୍ନାଥ ବେଢ଼ାର ଭିତରେ ଥିବା ମୁକ୍ତେଶ୍ୱରଙ୍କ ନିକଟରେ ଏହି ଭୈରବ ଅଛନ୍ତି ।

୭- କ୍ରୋଧ ଭୈରବ—

ବରାହଙ୍କ ଆଗରେ ବିଶ୍ୱରୂପତୀର୍ଥ ନିକଟରେ କାନ୍ଥରେ ବିଦ୍ୟମାନ ।

୮- ଚନ୍ଦ୍ରଚୂଡ଼ ଭୈରବ—

ତ୍ରିଲୋଚନଙ୍କ ଦକ୍ଷିଣରେ ଅବସ୍ଥିତ ।

ବି. ଦ୍ର.—ତନ୍ତ୍ରାନ୍ତରେ କେତେକ ଭୈରବଙ୍କ ନାମାନ୍ତର ଥିବାର ଦେଖାଯାଏ ।

ଯଥା—ଚଣ୍ଡ, ଉନ୍ମତ୍ତ, ଭୟଙ୍କର, କପାଳୀ ଓ ଭୀଷଣ ଭୈରବ ।

ତତ୍ପରେ ଯଜ୍ଞକର୍ତ୍ତା ବ୍ରହ୍ମା ଦେବର୍ଷି, ବ୍ରହ୍ମର୍ଷି, ସିଦ୍ଧ, ଗନ୍ଧର୍ବ ଦେବଗଣଙ୍କ ସହିତ ଆସାଦିତ ସୁସଂସ୍କୃତ ଯଜ୍ଞାନଳରୁ ଆବିର୍ଭୂତ ହୋଇଥିବା ଈଶାନେଶ୍ୱର, ବିରଜା ତଥା ଦ୍ୱାଦଶ ମାଧବ ପ୍ରଭୃତିଙ୍କୁ ପ୍ରତିଷ୍ଠିତ କରି ବହୁ ଶିବଲିଙ୍ଗ ସ୍ଥାପନ କରିଥିଲେ, ଯଜ୍ଞ ସମାପ୍ତ ହେବାପରେ ଯଜ୍ଞାନ୍ତ ଅବଭୃଥ ସ୍ନାନ ପାଇଁ—

"ଆବାହ୍ୟ ସ୍ୱର୍ଣ୍ଣଦୀଂ ସାର୍ଦ୍ଧଂ ଦେବୈରବଭୃଥଂ ବ୍ୟଧାତ୍ ।
ମନ୍ଦାକିନୀତି ତାଂ ନାମ୍ନା ବିଧାତା ସମଭାବୟତ୍ ॥"
(ବ୍ର: ପୁ: ୩ଅ ୨୦)

ସ୍ୱର୍ଗଗଙ୍ଗାଙ୍କୁ ଆବାହନ କରି ତାହାକୁ ମନ୍ଦାକିନୀ ନାମରେ ନାମିତ କଲେ । ଏବେ ଯାହାକୁ ଲୋକେ 'ମଦାଗ୍ନି' କୁଳ ବୋଲି କହନ୍ତି । ଏହାଛଡ଼ା—

"ଅସ୍ମିନ୍ କ୍ଷେତ୍ରେ ଦକ୍ଷିଣସ୍ୟାଂ ଦିଶି ବେଧାଃ ସରୋଜଭୂଃ ।
ଅନ୍ୟାମବଭୃଥାର୍ଥଂ ସ ଆପଗାଂ ସମକଳ୍ପୟତ୍ ॥"
(ବ୍ର: ପୁ: ୩ଅ ୨୧)

ବ୍ରହ୍ମା ଏହି କ୍ଷେତ୍ରର ଦକ୍ଷିଣ ଦିଗରେ ଋଷି ମୁନି ମାନଙ୍କର ଅବଭୃଥ ସ୍ନାନ ପାଇଁ ଆଉ ଗୋଟିଏ ନଦୀ କଳ୍ପନା କଲେ ।

"କୁଶାନାଦାପ୍ୟ ତାଂ ଦୃଷ୍ଟ୍ୱା ବହନ୍ତୀଂ ବୀଚିମାଳିନୀମ୍ ।
ବ୍ରହ୍ମା 'କୁଶୀନଦୀ' ତାଂ ତୁ କଳ୍ପୟାମାସ ବୈ ପ୍ରଭୁଃ ॥"
(ବ୍ର: ପୁ: ୩ଅ, ୨୩)

ଏହି ନଦୀ ଋଷି ମୁନି ମାନଙ୍କର ଶ୍ରାଦ୍ଧ ତର୍ପଣୋପଯୋଗୀ କୁଶମାନଙ୍କୁ ତରଙ୍ଗମାଳାରେ ଭସାଇ ଆଣିବାରୁ ବ୍ରହ୍ମା ତାହାର ନାମ 'କୁଶୀନଦୀ' ଦେଲେ । ଏହି ନଦୀ ବରୁଣେଶ୍ୱରଙ୍କ ନିକଟରେ ପ୍ରବାହିତା ।

"ତସ୍ୟ ତୀବ୍ରଂ ତପସ୍ତେପେ ସହସ୍ରଂ ପରିବତ୍ସରାନ୍ ।
ପାଦସାମୀଶ୍ୱରସ୍ତସ୍ୟ ପ୍ରସାଦଂ କର୍ତ୍ତୁମୁତ୍ସୁକଃ ॥"
(ବ୍ର. ପୁ. ୩ଅ, ୨୬)

ଏହି ନଦୀରେ ଯାଦସାମ୍ ଈଶ୍ୱର— ଅର୍ଥାତ୍ ଜଳାଧିପତି ବରୁଣ ସହସ୍ରବର୍ଷ କଠିନ ତପସ୍ୟା କରିବାରୁ ଭକ୍ତବତ୍ସଳ ଶମ୍ଭୁ ଭକ୍ତ ସମକ୍ଷରେ ଆବିର୍ଭୂତ ହୋଇ ବରୁଣଙ୍କ ନାମାନୁସାରେ 'ବରୁଣେଶ୍ୱର' ନାମରେ ନାମିତ ହେଲେ ।

"ତସ୍ୟ ତଦ୍‌ବାରୁଣଂ ଲିଙ୍ଗଂ ଦର୍ଶନାତ୍ ପାପ ନାଶନମ୍ ।
ସ୍ପର୍ଶନାତ୍ ପ୍ରଣାମାତ୍ ନୃଣାଂ ମୁକ୍ତିପ୍ରଦଂ ଶୁଭମ୍ ॥" (୩ଅଃ ୨୯)

ଏହି ନଦୀରେ ଲୋକ ସ୍ନାନ କରି 'ବରୁଣେଶ୍ୱର' ଲିଙ୍ଗଙ୍କୁ ଦର୍ଶନ ଓ ସ୍ପର୍ଶ ପୂର୍ବକ ତର୍ପଣ ପ୍ରଣାମ କଲେ ସମସ୍ତ ପାପତାପରୁ ମୁକ୍ତ ହୋଇ ମୁକ୍ତି ( ମୋକ୍ଷ ) ପଦ ଲାଭ କରେ ।

## ସପ୍ତରେଖା ବା ଶାଖାନଦୀ :—

"ତସ୍ମିନ୍ନବଭୃଥେ ସ୍ନାନେ ଯତ୍ର ଯତ୍ରାବଗାହିତା ।
ଦେବା ମହର୍ଷୟଃ ସ୍କନ୍ଦ ! ତତ୍ ତତ୍ତୀର୍ଥମଭୂନ୍ନହତ୍ ॥"
( ୩ଅଃ ୩୨ )

ବ୍ରହ୍ମା ସର୍ବପାପ ପ୍ରଣାଶିନୀ ଯେଉଁ ଦେବନଦୀ ମନ୍ଦାକିନୀଙ୍କୁ ଅବଭୃଥ ସ୍ନାନ ପାଇଁ ଆହ୍ୱାନ କଲେ, ସେହି ନଦୀର ଭିନ୍ନ ଭିନ୍ନ ସ୍ଥାନରେ ଦେବତା, ଋଷି ମୁନି ମାନେ ସ୍ନାନ କରିବାରୁ ସେହି ସେହି ସ୍ଥାନଗୁଡ଼ିକ ଋଷି ମୁନିଙ୍କ ନାମାନୁସାରେ ଗୋଟିଏ ଗୋଟିଏ ତୀର୍ଥ ରୂପରେ ପରିଚିତ ହେଲା । ଏହି ନଦୀ ଉଦ୍‌ବେଳିତ ହୋଇ ଗୋଟିଏ ଧାରରେ ଉତ୍ତରକୁ, ଗୋଟିଏ ଧାରରେ ଦକ୍ଷିଣକୁ ପ୍ରବାହିତ ହେବାରୁ ଏମାନେ ଗୋଟିଏ ଗୋଟିଏ ରେଖା ରୂପରେ ପରିଚିତ ହେଲେ ।

"ତସ୍ୟ ଉତ୍ତରତୋ ରେଖାସ୍ତିସ୍ରୋ ଦକ୍ଷିଣାସ୍ତି ତାଃ ।
ବହନ୍ତି ତାସାଂ ନାମାନି ପ୍ରବକ୍ଷ୍ୟାମି ତବାଧୁନା ॥ ୩୪ ।
ମହାଗୁର୍ଜମ୍ଭୁସ୍ତଥା ହଂସୋ ବାସୁକି ଦକ୍ଷିଣାସ୍ତି ତାଃ ।
ଚନ୍ଦ୍ରଃ ପଦ୍ମଃ ଶଶୀ ନାମ ତସ୍ୟ ଉତ୍ତରତଃ ସ୍ଥିତାଃ ॥ ୩୫ ।

ତସ୍ୟାଂ ତସ୍ୟାଂ ତୁ ରେଖାୟାଂ ଯସ୍ତୁ ସ୍ନାତି ଦିନେ ଦିନେ ।
ସର୍ବପାପବିନିର୍ମୁକ୍ତଃ ଶିବଲୋକେ ମହୀୟତେ ॥"

( ବ୍ର. ପୁ. ୩୬, ୩୭ )

ଅର୍ଥାତ୍ ମଦ୍‌ଗୁରେଖା, ଜମ୍ବୁରେଖା, ହଂସରେଖା ଓ ବାସୁକି-ରେଖା ଏହି ଚାରୋଟି ରେଖା ଦକ୍ଷିଣକୁ ପ୍ରବାହିତ ହେଲେ । ଶଙ୍ଖରେଖା, ପଦ୍ମରେଖା ଓ ଶଶୀରେଖା ଏହି ତିନୋଟି ରେଖା ଉତ୍ତର ଦିଗକୁ ପ୍ରବାହିତ ହେଲେ । ଏହି ରେଖାନଦୀ ମାନଙ୍କରେ ଯେଉଁମାନେ ପ୍ରତିଦିନ ସ୍ନାନ କରନ୍ତି, ସେମାନେ ମୃତ୍ୟୁପରେ ଶିବଲୋକରେ ସ୍ଥାନ ଲଭ କରନ୍ତି, ପ୍ରତିଦିନ ସ୍ନାନ କରି ନପାରିଲେ—

"ମାସି ଭାଦ୍ରପଦେ କୃଷ୍ଣସପ୍ତମ୍ୟାମୁକ୍ତ ମାର୍ଗତଃ ।
ସ୍ନାତ୍ୱା ପଶ୍ୟତି ଯୋ ବିଦ୍ୱାନ୍ ତାସୁରେଖାସୁ ସପ୍ତସୁ ॥ ୩୭ ।
ବାଗ୍‌ଯତଃ ପ୍ରୟତୋ ଭୂତ୍ୱା ଦେବତାଃ ସପ୍ତମାତୃକାଃ ।
ତସ୍ୟ ପୁଣ୍ୟଫଳଂ ସ୍କନ୍ଦ ! ନ ମୟା ଗଦିତୁଂ କ୍ଷମଃ ॥" ୩୮ ।

ବିଶେଷତଃ ଭାଦ୍ର ମାସ କୃଷ୍ଣପକ୍ଷ ସପ୍ତମୀ ତିଥିରେ ଏହି ରେଖା ମାନଙ୍କରେ ସ୍ନାନକରି ଦଶାଶ୍ୱମେଧ ଘାଟ ଉପରେ ଅବସ୍ଥିତ ଚାମୁଣ୍ଡାଙ୍କ ସହିତ ସପ୍ତମାତୃକାଙ୍କୁ ଦର୍ଶନ କଲେ ଅଶେଷ ପୁଣ୍ୟଫଳ ଲଭ ହୁଏ । ଏହା ପୁରାଣ ପ୍ରସିଦ୍ଧ ।

## ସପ୍ତରେଖାର ପରିଚୟ :—

୧- ମଦ୍‌ଗୁରେଖା—

କପିଳେଶ୍ୱର ଶିବଙ୍କ ନିକଟରେ ଈଶାନେଶ୍ୱରଙ୍କ ଦକ୍ଷିଣରେ ପ୍ରବାହିତା ଶାଖାନଦୀଟିର ନାମ ମଦ୍‌ଗୁରେଖା ।

୨- ଜମ୍ବୁରେଖା—

ଏହା ପୋତିହୋଇ ଧାନ୍ୟ କ୍ଷେତ୍ରରେ ପରିଣତ ହୋଇଅଛି । କପୃଦାଂଶ ଭଗବତପୁର ପଶ୍ଚିମରେ କେଦାରେଶ୍ୱର ଶିବଙ୍କ ନିକଟରେ ଯେଉଁ

ଜଳ ଅଂଶଟି ଧାନବିଲ ମଧ୍ୟରେ ଦେଖାଯାଏ, ତାହା 'ଜମ୍ବୁରେଖା' । ଏହାକୁ ସୁଦର୍ଶନ ତୀର୍ଥ କହନ୍ତି । ଏଠାରେ କୁଆଁସରପୁର 'ବଲ୍ଲଭ' ଘର ଦୁର୍ଗାଙ୍କ କଳଶ ପ୍ରତିବର୍ଷ ସପ୍ତମୀ ଦିନ ବୁଡ଼େ ।

୩-ବାସୁକି ରେଖା

ବାସୁକି ରେଖାଟି ଖଣ୍ଡେଶ୍ୱର ସିଦ୍ଧ ପୁଷ୍କରିଣୀ ତଥା ଗୋବିନ୍ଦ ସାହୁଙ୍କ ପଶ୍ଚିମପଟ ବାଡିଆଡ଼କୁ ଗୋଟିଏ ଖାଲଜମି ଦେଖାଯାଏ । ଏହି ଜମିକୁ ଖୋଳିବାରେ ଏମାନେ କାନ୍ଥ ଆକାରରେ ଥିବା କେତେକ ପଥର ପାଇଲେ । ପଥରଗୁଡିକ କାରୁକାର୍ଯ୍ୟ ବିମଣ୍ଡିତ । ପ୍ରସ୍ତର ସନ୍ଧିସ୍ଥଳ ଲୁହାକୁଣ୍ଡଳି ଦ୍ୱାରା ଆବଦ୍ଧ । ଏଠାରେ ଝୁଣା, ଗନ୍ଧମଳା, କେତକୀ ଫୁଲର ସୁବାସ ବେଳେ-ବେଳେ ଅନୁଭୂତ ହେଉଥିବାର ବୟସ୍କଲୋକେ କହନ୍ତି । ପଥରଖୋଳା ଜାଗାରୁ ପାଣି ବାହାରେ, ଏହି ପାଣିରେ 'ଲଙ୍ଗଡ଼ିଆପୋକ' ଶିବଙ୍କ ସ୍ନାନ-କୁଣ୍ଡରେ ଥିଲପରି ଜଣାଯାଏ । ଏହି ସ୍ଥାନରୁ ଅନୁମିତ ହୁଏ ଏଠାରେ 'ବାସୁକୀ-ଶ୍ୱର' ଶିବ ଓ ମନ୍ଦିର ଭୂଗର୍ଭରେ ଲୁକ୍କାୟିତ । ଏହାର ନାମ 'ବାସୁକୀତୀର୍ଥ' ।

ଏହି ରେଖାର ଚିହ୍ନ ଦେଖିବାକୁ ମିଳେ ନାହିଁ । ଏହି ରେଖା ଛତୋଟି ବର୍ତ୍ତମାନ ଧାନ୍ୟକ୍ଷେତ୍ରରେ ପରିଣତ ହୋଇ କେତେକ ଅଂଶ ଟ୍ରେଞ୍ଚ ଟ୍ରେଞ୍ଚ ଗଡ଼ିଆ ବା ଡୋବଳା ପରି ଦୃଷ୍ଟିଗୋଚର ହୁଏ । କେତେକ ଅଶୀତି-ବର୍ଷୀୟ ବୃଦ୍ଧ କହନ୍ତି, ଏହି ବାସୁକି ରେଖା ଉପରେ 'ଅଠରନଳା' ବା ଅଠରଫୁକାର ବିଶିଷ୍ଟ ସୁଦୃଢ଼ ପ୍ରସ୍ତର ନିର୍ମିତ ପୋଲଟିଏ ନିର୍ମାଣ କରା-ଯାଇଛି । ଏହି 'ପୋଲଟି' କୁଆଁସରପୁର ଛକରୁ ବିରଜାଙ୍କ ମନ୍ଦିରଆଡ଼କୁ ଗଲାବେଳକୁ ପେଡ଼ିଁ କେନାଲଟି ପଡ଼େ, ତାକୁ ଲାଗିଛି । ସେହି ଅଠର ଫୁକାର ମଧ୍ୟରୁ ଗୋଟିଏ ଫୁକାର 'କେନାଲ' ସହିତ ମିଶିଯାଇଛି । ଆଉ ସତରଟି ଫୁକାର ଦୃଷ୍ଟିଗୋଚର ହୁଏ । କେତେକ କହନ୍ତି, ଏହା ମନ୍ଦାକିନୀ ନଦୀ ଉପରେ । ପୂର୍ବ କାଳରେ ଲୋକମାନଙ୍କର ଯାତାୟାତର ସୁବିଧା ପାଇଁ ପୋଲ ନିର୍ମିତ ହୋଇଥିଲା । ଏହି ପୋଲ ଏତେ ସୁଦୃଢ଼ ଯେ ଏ ପର୍ଯ୍ୟନ୍ତ ଏହାର ଅଂଶ ଟଳିନାହିଁ । (୧୧୭ ପୃଷ୍ଠା ଦ୍ରଷ୍ଟବ୍ୟ ୯୦୩୭)

୪-ହଂସରେଖା

ଡାକନାମ 'ହଂସିଆ' । ଏହି ରେଖାଟିର କେତେକ ଅଂଶ ଦୃଷ୍ଟି-ଗୋଚର ହୁଏ । ଯାଜପୁରଠାରୁ ଚଣ୍ଡିଖୋଲ ଯାଉଥିବା ବାଟରେ ଏହି ରେଖା ଉପରେ ହୋଇଥିବା ପୋଲ ଉପରେ ଦେଇ ଯିବାକୁ ହୁଏ । ଏହାର ଉପର ଅଂଶ ଧାନଜମି । ତଳକୁ ଶିବଦାସପୁର ପର୍ଯ୍ୟନ୍ତ ଜଳପୂର୍ଣ୍ଣ ଓ ଦଳପୂର୍ଣ୍ଣ ଥାଏ । ଏହା ଏତେ ଗଭୀର ଯେ ଖରାଦିନେ ମଧ୍ୟ ଶୁଖେ ନାହିଁ । ଏଥିରୁ ବହୁତ ମାଛ ମଧ୍ୟ ଧରାହୁଏ । ଏହା କୂଳରେ ଚଷାମଣ୍ଡେଇ ଗ୍ରାମର ଦକ୍ଷିଣକୁ ହଂସିଆର ଉତ୍ତର କୂଳରେ 'ହଂସେଶ୍ୱର' ଶିବଲିଙ୍ଗ ବିଦ୍ୟମାନ ।

୫—ଶଙ୍ଖରେଖା

ଏହା ପୋତିହୋଇ ଏହା ଉପରେ ଘରବାଡ଼ି ହେଲାଣି । ତେନ୍ତୁଳି-ମାଳ ୮ ନନ୍ଦସାମନ୍ତ ଘର ଆଗରେ ପ୍ରଧାନ ସଡ଼କର ପୂର୍ବ ଭାଗରେ ଗୋଟିଏ ଖାଲୁଆ ଜମି ଦେଖାଯାଏ । ଏହାକୁ 'ଚନ୍ଦ୍ରତୀର୍ଥ ବା ଚନ୍ଦ୍ରମାବାଡ଼ି' ବୋଲି ଲୋକେ କହନ୍ତି । ଏହି ରେଖା କୂଳରେ ଶିଙ୍ଗଆପୁର ମୌଜାର ପ୍ରଥମରେ ରାସ୍ତାର ବାମ ପାର୍ଶ୍ୱରେ 'ଶଙ୍ଖରେଖା' ଠାକୁରାଣୀଙ୍କ ବିଜେସ୍ଥଳୀ ବିଦ୍ୟମାନ ।

୬—ପଦ୍ମରେଖା

ଏହା ଯୋଡ଼କୁଅ ବା 'ବିରଜା ହାଇସ୍କୁଲ ଚଉଛକ' ଛକ ଯେଉଁଠାରେ ବର୍ତ୍ତମାନ କାରେସିମା ପାର୍କ ଅଛି, ସେହିଠାରୁ 'ଅମ୍ବିକାଣ୍ଡ' ଛକ ମଧ୍ୟବର୍ତ୍ତୀ ସଡ଼କରେ ଗୋଟିଏ ପଥର ପୋଲ ଅଛି । ସେହି ପୋଲଟି ପଦ୍ମରେଖା ଉପରେ ନିର୍ମିତ । ଏହାର ଉପର ଅଂଶ ଗୃହଜମି । ପୋଲ ତଳକୁ କିଛି ଅଂଶ ଜଳପୂର୍ଣ୍ଣ । ଏହି ରେଖା କୂଳରେ 'ପଦ୍ମେଶ୍ୱର' ମହାଦେବଙ୍କ ମନ୍ଦିର ସ୍ୱପ୍ନପୁର (ସପନପୁର) ଓ ସୁଖ (ଶୁକ) ପୁର ଦୁଇ ଶାସନର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । ପଦ୍ମରେଖା କୂଳରେ 'ଶିବ' ସ୍ଥାପିତ ହୋଇଥିବାରୁ ଏହାଙ୍କ ନାମ 'ପଦ୍ମେଶ୍ୱର' ହୋଇଅଛି । ଏହି ରେଖାଟି ପବିତ୍ର ତୀର୍ଥ ହୋଇ-ଥିବାରୁ 'ଚଣ୍ଡେଶ୍ୱରୀ' ଦୁର୍ଗାଙ୍କ କଳଶ ପ୍ରତିବର୍ଷ ସପ୍ତମୀଦିନ ବୁଡ଼େ ।

୭-ଶଶୀରେଖା ବା ଇନ୍ଦୁରେଖା

ଏହା ବଡ଼ବଜାରରୁ ଆସିବାବେଳେ ଶୀତଳେଶ୍ୱର ଛକ ପାର ହେଲେ ଯେଉଁ ପଥର ପୋଲଟି ଦେଖାଯାଏ, ସେହି ପୋଲଟି ଏହି ରେଖାନଦୀ ଉପରେ ନିର୍ମିତ ହୋଇଅଛି ।

ଭାଦ୍ରବମାସ ଇନ୍ଦୁ ପୂର୍ଣ୍ଣିମା (ଭଗବତ ଜନ୍ମ) ଦିନ ଏହି ରେଖାରେ ସ୍ନାନ କରି ପିତୃ ପକ୍ଷରେ ତର୍ପଣ କରୁଥିବା ବ୍ୟକ୍ତିମାନେ ତର୍ପଣ ଆରମ୍ଭ କରନ୍ତି । ଆହୁରି ମଧ୍ୟ ଶୀତଳେଶ୍ୱର ଛକ ପାଖରେ ସଡକର ପଶ୍ଚିମ ପାର୍ଶ୍ୱରେ ଅଗସ୍ତୀଶ୍ୱରଙ୍କ ସମ୍ମୁଖରେ 'ଜାଉଛି' 'ମଡ଼ଛି' ନାମକ ଦୁଇଟି କ୍ଷୁଦ୍ର ପୁଷ୍କରିଣୀ ଦେଖାଯାଏ । ଏହି ପୁଷ୍କରିଣୀରେ ଉପରୋକ୍ତ ତିଥିରେ ନାରୀମାନେ ସ୍ନାନ କଲେ ସେମାନଙ୍କର 'ମୃତବତ୍ସା' ଦୋଷ ବିନଷ୍ଟ ହୁଏ । ଅର୍ଥାତ୍ ଯେଉଁ ନାରୀ-ମାନଙ୍କର ସନ୍ତାନ ନଷ୍ଟ ହେଉଥାନ୍ତି, ସେମାନେ ପ୍ରଥମେ 'ମଡଛି' ପୁଷ୍କ-ରିଣୀରେ ସ୍ନାନକରି ତପ୍ତରେ 'ଜାଉଛି' ପୁଷ୍କରିଣୀରେ ସ୍ନାନକଲେ ସେମାନ-ଙ୍କର ସନ୍ତାନ ଦୀର୍ଘଜୀବୀ ହୁଅନ୍ତି ବୋଲି ଲୋକ କହନ୍ତି । ✳

## ଗୋଧନେଶ୍ୱରଙ୍କ ଇତିବୃତ୍ତ :—

ଶିରଆପୁର, ଗୋପାଳପୁର ଓ ଗୋଧନେଶ୍ୱର ମୌଜାର ମଧ୍ୟ ଭାଗରେ ଏହି 'ଗୋଧନେଶ୍ୱର' ଶିବଙ୍କ ମନ୍ଦିର ଅବସ୍ଥିତ । ଏହାଙ୍କ ସମ୍ବନ୍ଧରେ ଗୋଟିଏ କିମ୍ବଦନ୍ତୀ ଶୁଣାଯାଏ । ଗୋଟିଏ ଗୋପାଳର ଦୁଗ୍ଧ-ବତୀ ଧେନୁଟିଏ ଏହି ଶିବଲିଙ୍ଗ ପୋତି ହୋଇଥିବା ସ୍ଥାନରେ ଆସି ଠିଆହେବାମାତ୍ରେ ତାହାର ସ୍ତନ ( ପହ୍ନା )ରୁ ଦୁଗ୍ଧ ସ୍ୱତଃ କ୍ଷରିତ ହୁଏ । ସନ୍ଧ୍ୟାବେଳେ ଗୋପାଳ ସେହି ଧେନୁକୁ ଦୋହନ କରି ଆଦୌ କ୍ଷୀର ପାଏ-ନାହିଁ । ଏହିପରି କେତେକଦିନ ଗଲାପରେ ଗୋପାଳ ଗୋପନରେ ଉକ୍ତ

✳ ଏହି ରେଖାନଦୀ ବା ଶାଖାନଦୀ ମାନଙ୍କର ଗତିପଥରେ ଏବେ କୂପ ପୁଷ୍କରିଣୀ ଖନନ ସମୟରେ ନଦୀର ସ୍ମାରକ ସ୍ୱରୂପ 'ବାଲି' ବାହାରୁ ଥିବାର ଦେଖାଯାଏ । ତେଣୁ ଏହା ନିସ୍ପଷ୍ଟ ସତ୍ୟ, ଏଥିରେ ସନ୍ଦେହ ନାହିଁ ।

ପୂର୍ବୋକ୍ତ ରହସ୍ୟ ଦେଖିଲ । ତତ୍ପରେ ସେହି ସ୍ଥାନକୁ ଖୋଳିବାରେ ଲିଙ୍ଗ ଦୃଷ୍ଟିଗୋଚର ହେଲେ । ସେହି ଦିନଠାରୁ ଦେବତାଙ୍କ ନାମ 'ଗୋଦୋହନେଶ୍ୱର' ବା ଗୋଧନେଶ୍ୱର ହେଲା । ପରେ ପରେ ମନ୍ଦିରଟିଏ ନିର୍ମାଣ କରାହେଲା । ସେ ମନ୍ଦିର ଜୀର୍ଣ୍ଣ ଶୀର୍ଣ୍ଣ ହେବାରୁ ଏବେ ସ୍ଥାନୀୟ ଲୋକେ ମନ୍ଦିର ନିର୍ମାଣ କରୁ ଅଛନ୍ତି । ଯେଉଁ ଭାବ ଭଙ୍ଗୀରେ ଶିବଙ୍କର ଅବସ୍ଥିତି, ତାହା ଦେଖିଲେ କିମ୍ବଦନ୍ତୀ ସତ୍ୟ ପରି ଜଣାଯାଏ ।

ଉପରୋକ୍ତ ରେଖାମାନଙ୍କ ଉପରେ ପୋଲ ହେବା ପୂର୍ବରୁ କଦଳୀଗଛ ଭେଳା ଦ୍ୱାରା ଲୋକେ ଏହି ରେଖାମାନଙ୍କୁ ପାରି ହେଉଥିଲେ ବୋଲି ବୟସ୍କ ଲୋକେ କହନ୍ତି । ଏହା କେତେ ହଜାର ବର୍ଷ ତଳର କଥା, ତାହାର ଇୟତ୍ତା ନାହିଁ । ଏଣୁ ଏସବୁକୁ ନିରୂପଣ କରିବା ସହଜ ନୁହେଁ । କୌଣସି ଇତିହାସ ଏ ବିଷୟରେ କୌଣସି ପ୍ରମାଣ ଯୋଗାଇ ପାରି ନାହାନ୍ତି, ପୁରାଣ ତଥା କିମ୍ବଦନ୍ତୀ ହିଁ ଏହାର ଏକମାତ୍ର ଅବଲମ୍ବନ ।

## ମହାଶକ୍ତିତ୍ରୟୀ :—

ସର୍ବଦେବାଂଶସମ୍ଭୂତା ଭଗବତୀ ଦୁର୍ଗା ନିଜକୁ ଧର୍ମ, ଅର୍ଥ କାମ ତଥା ସତ୍ତ୍ୱ, ରଜ, ତମୋ ଗୁଣ ଭେଦରେ ତ୍ରିବିଧ ମହାଶକ୍ତିରେ ପରିଣତ କରି ଦେବଗଣବିଦ୍ୱେଷୀ ମଧୁକୈଟଭ, ମହିଷାସୁର ପ୍ରଭୃତି ଅସୁର ମାନଙ୍କୁ ବିନାଶ କରିଅଛନ୍ତି ।

୧- ମହାକାଳୀ—

ଏହି ଦେବୀ ବ୍ରହ୍ମାଙ୍କ ସ୍ତବନରେ ସନ୍ତୁଷ୍ଟା ହୋଇ ମଧୁକୈଟଭଙ୍କୁ ବିନାଶ କରିବା ପାଇଁ ଦଶମୁଖ, ଦଶଭୁଜ, ଦଶପାଦ, ତ୍ରିଂଶତ୍ ଲୋଚନ ବିଶିଷ୍ଟା, ଅଞ୍ଜନ ସଦୃଶ କୃଷ୍ଣବର୍ଣ୍ଣ ରୂପ ଧାରଣ କରି ଅବତୀର୍ଣ୍ଣ ହେଲେ । ଏହି ଦେବୀଙ୍କର ଦଶ ଭୁଜ ମଧ୍ୟରୁ ଦକ୍ଷିଣହସ୍ତ ପାଞ୍ଚୋଟିରେ ତଳୁ ଉପରକୁ କ୍ରମରେ ଖଡ୍ଗ, ବାଣ (ଶର), ଗଦା, ଶୂଳ ଓ ଶଙ୍ଖ, ବାମ ହସ୍ତ ପାଞ୍ଚୋଟିରେ ଚକ୍ର, ଭୁଶୁଣ୍ଡି (ଆୟୁଧ ବିଶେଷ) ପରିଘ (ଅସ୍ତ୍ରବିଶେଷ), କାର୍ମୁକ ଓ ରୁଧିରସ୍ରାବୀ ନରମୁଣ୍ଡ, ଏହିପରି ଦଶୋଟି ଆୟୁଧ ଧାରଣ କରି ଅଛନ୍ତି ।

"ଦଶବକ୍ତ୍ରା ଦଶଭୁଜା ଦଶପାଦାଞ୍ଜନପ୍ରଭା ।
ବିଶାଳୟା ରାଜମାନା ତ୍ରିଂଶଲ୍ଲୋଚନମାଳୟା ॥"

\+ \+ \+ \+ \+

ଏହାଙ୍କର ଆୟୁଧ—

"ଖଡ୍ଗବାଣ ଗଦାଶୂଳ ଶଙ୍ଖ ଚକ୍ର ଭୁଶୁଣ୍ଡିଭୃତ୍ ।
ପରିଘ କାର୍ମୁକଂ ଶୀର୍ଷଂ ନିଶ୍ଚ୍ୟୋତଦ୍ରୁଧିରଂଦଧୌ ॥"
( ଚଣ୍ଡୀ ବୈକୃତିକରହସ୍ୟ )

ଏହି ଧ୍ୟାନକଳ୍ପିତ ମୂର୍ତ୍ତି କେଉଁଠାରେ କି ପ୍ରକାରରେ ଅଛନ୍ତି ତାହା ନିର୍ଣ୍ଣୟ କରି ଯାଇ ପାରି ନାହିଁ । ହୁଏତ କଳାପାହାଡ଼ କବଳରେ କେଉଁଠି ଜଳମଗ୍ନ ବା ସ୍ଥଳମଗ୍ନ ହୋଇଥିବେ, ଅସମ୍ଭବ ନୁହେଁ । କେତେକ କୁଆଁସ ମଙ୍ଗଳାଙ୍କୁ ମହାକାଳୀ ବୋଲି କହନ୍ତି । କିନ୍ତୁ ସେ ଚତୁର୍ଭୁଜା । ଦେଖାଯାଏ, ଚମ୍ପାମଡ଼େଇ ଗ୍ରାମର ମୁଣ୍ଡରେ ଶିବଦାସପୁରକୁ ଯାଇଥିବା ରାସ୍ତାର ଦକ୍ଷିଣରେ ବକୁଳବୃକ୍ଷ ମୂଳରେ ଯେଉଁ ମୂର୍ତ୍ତି ବିଦ୍ୟମାନ, ତାଙ୍କର ମୁଖ ପଶ୍ଚିମକୁ । ଏହି ମୂର୍ତ୍ତି ଦଶଭୁଜା; ଦଶପାଦ ବା ଦଶମସ୍ତକ ନାହିଁ । ଏହାଙ୍କୁ 'ଖାଙ୍କାଳୀ' ବୋଲି ଲୋକେ କହନ୍ତି । 'ମହାକାଳୀ'ର ନାମ କାଳକ୍ରମେ ଲୋକମୁଖରେ 'ଖାଙ୍କାଳୀ' ବା 'କଙ୍କାଳିଣୀ' ହେବା ଅସମ୍ଭବ ନୁହେଁ । ପୂର୍ବୋକ୍ତ କୁଆଁସମଙ୍ଗଳାଙ୍କ ପାଖରେ ପ୍ରତିବର୍ଷ ପଣାସଂକ୍ରାନ୍ତି ( ମହା ବିଷୁବ ସଂକ୍ରାନ୍ତି ) ଦିନ ବଡ଼ ଧରଣର ମେଳାଟିଏ ହୁଏ । ବହୁ-ଲୋକଙ୍କ ସମାବେଶରେ ଯାତ୍ରାଟି ବହୁଦିନ ଧରି ଚାଲେ ।

ମହାଲକ୍ଷ୍ମୀ—

ଯାଜପୁର ବିରଜା ଜୀବନ୍ଧର ପୂର୍ବକୁ ତ୍ରିଲୋଚନ ମନ୍ଦିରକୁ ଯିବାବେଳେ ଡାହାଣ ହାତ ଉତ୍ତରାଭିମୁଖୀ ଯେଉଁ ଦେବୀ ମନ୍ଦିରରେ ଅଛନ୍ତି, ତାହାଙ୍କର ନାମ 'ମହାଲକ୍ଷ୍ମୀ' । ନଅ ହାତ ମନ୍ଦିରରେ 'ଅଠରହାତ କାଳୀ' ବା 'ଅଠରଭୁଜା କାଳୀ' ବୋଲି ଲୋକେ ଏହାଙ୍କୁ କହନ୍ତି । ଦୁର୍ଦ୍ଦାନ୍ତ ଦାନବ ମହିଷାସୁରକୁ ବଧକରିବା ସମୟରେ ଦେବୀ ଦୁର୍ଗା ତ୍ରିଗୁଣମୟୀ, ଶ୍ୱେତା-

ନନା, ନୀଳବର୍ଣ୍ଣ ଭୂଜଶୋଭନା, ରକ୍ତକଣ୍ଠୀ, ରକ୍ତପାଦା, ନୀଳଜଙ୍ଘା ରୂପରେ ବିଚିତ୍ର ବର୍ଣ୍ଣରେ ବିଭୂଷିତା ହୋଇ ଆବିର୍ଭୂତା ହୋଇଥିଲେ । ଏହାଙ୍କର ଅଷ୍ଟାଦଶଭୁଜ ସମୂହରେ ଅଠରଟି ଆୟୁଧ ଶୋଭା ପାଉଅଛି । ଦକ୍ଷିଣଭୁଜ ନଅଟିରେ ତଳୁ ଉପରକୁ ଯଥାକ୍ରମରେ—

"ଅକ୍ଷମାଳା ଚ କମଳଂ ବାଣୋଽସିଃ କୁଳିଶଂ ଗଦା ।
ଚକ୍ରଂ ତ୍ରିଶୂଳଂ ପରଶୁଃ ।"

ବାମଭୁଜ ନଅଟିରେ ତଳୁ ଉପରକୁ—

"ଶଙ୍ଖୋ ଘଣ୍ଟା ଚ ପାଶକଃ ।
ଶକ୍ତି ର୍ଦ୍ଦଣ୍ଡଶ୍ଚର୍ମ ଚାପଂ ପାନପାତ୍ରଂ କମଣ୍ଡଳୁଃ ॥"

( ଚଣ୍ଡୀବୈକୃତିକରହସ୍ୟ )

ଅର୍ଥାତ୍ ଅକ୍ଷମାଳା ( ଜପମାଳା ) କମଳ, ବାଣ, ଅସି ( ଖଡ୍ଗ ) କୁଳିଶ ( ବଜ୍ର ) ଗଦା, ଚକ୍ର, ତ୍ରିଶୂଳ ଓ ପରଶୁ ( କୁଠାର ) ଏଗୁଡ଼ିକ ଦକ୍ଷିଣରେ । ଶଙ୍ଖ, ଘଣ୍ଟା, ପାଶ ( ନାଗପାଶ ) ଶକ୍ତି, ଦଣ୍ଡ, ଚର୍ମ ( ଢାଲ) ଚାପ ( ଧନୁ ) ପାନପାତ୍ର ( ମଦ୍ୟପାତ୍ର ) ଓ କମଣ୍ଡଳୁ, ଏ ସମସ୍ତ ବାମରେ । ଶରତ୍ କାଳୀନ ମହାପାର୍ବଣର ମହାଷ୍ଟମୀଦିନ ଓ କାର୍ତ୍ତିକମାସ ଦୀପାବଳି ଅମାବାସ୍ୟା ( ଶ୍ୟାମାପୂଜା ) ରାତ୍ରୀରେ ଏହାଙ୍କର ବିଶେଷ ଭାବରେ ପୂଜା ତ୍ରିଲୋଚନପଣ୍ଡା ଗ୍ରାମବାସୀଙ୍କ ଦ୍ୱାରା ସମ୍ପାଦନ କରାଯାଏ ।

ମହାସରସ୍ୱତୀ—

ଏହି ଦେବୀ କେଉଁଠାରେ ଅଛନ୍ତି, ତାହା ମଧ୍ୟ ସ୍ଥିର କରାଯାଇ ପାରି ନାହିଁ । ତଥାପି କୋଠବସନ୍ତପୁର ଜମାଇଁବାବୁଙ୍କ ଘରପାଖରେ ଯେଉଁ ବାଗ୍‌ଦେବୀ ମୂର୍ତ୍ତି ଅଛନ୍ତି, ଏହାଙ୍କୁ ମହାସରସ୍ୱତୀ କହନ୍ତି । କାରଣ ବାଗ୍‌ଦେବୀଙ୍କର ଅପର ନାମ ସରସ୍ୱତୀ ବା ମହାସରସ୍ୱତୀ । ଏହାଙ୍କର ଆବିର୍ଭାବ କାଳ ଶୁମ୍ଭ ଓ ନିଶୁମ୍ଭ ନାମକ ମହାପରାକ୍ରମଶାଳୀ ଅସୁରଦ୍ୱୟଙ୍କୁ ବିନାଶ କରିବା ପାଇଁ ।

"ଗୌରୀଦେହାତ୍ ସମୁଦ୍‌ଭୂତା ଯା ସତ୍ତ୍ୱୈକଗୁଣାଶ୍ରୟା ।
ସାକ୍ଷାତ୍ ସରସ୍ୱତୀ ପ୍ରୋକ୍ତା ଶୁମ୍ଭାସୁର ନିବର୍ହିଣୀ ॥
ଦଧୌ ଚାଷ୍ଟଭୁଜା ବାଣ ମୁଷଲେ ଶୂଳଚକ୍ରଭୃତ୍ ।
ଶଙ୍ଖଂ ଘଣ୍ଟାଂ ଲାଙ୍ଗଲଂ ଚ କାର୍ମୁକଂ ବସୁଧାଧିପ ॥"
(ଚଣ୍ଡୀ ବୈ: ରହସ୍ୟ)

ଅର୍ଥାତ୍ ଗୌରୀଙ୍କ ଶରୀରରୁ ଶୁଦ୍ଧସତ୍ତ୍ୱମୟୀ, ଶୁଭ୍ରବର୍ଣ୍ଣା ଅଷ୍ଟଭୁଜା ମହାସରସ୍ୱତୀ ଆବିର୍ଭୂତା ହେଲେ । ଏହାଙ୍କର ଅଷ୍ଟଭୁଜ ମଧ୍ୟରୁ ଦକ୍ଷିଣଭୁଜ ଚତୁଷ୍ଟୟରେ ତଳୁ ଉପରକୁ ବାଣ, ମୁଷଳ, ଶୂଳ ଓ ଚକ୍ର, ବାମଭୁଜ ଚତୁଷ୍ଟୟରେ ଉପରୁ ତଳକୁ ଶଙ୍ଖ, ଘଣ୍ଟା, ଲଙ୍ଗଳ ଓ କାର୍ମୁକ ଆୟୁଧମାନ ଶୋଭା ପାଉଅଛି ।

ଆହୁରି ମଧ୍ୟ କେତେକ ବାଉଳିଗିଆ ନିକଟ ଚନ୍ଦ୍ରେଶ୍ୱର ଶିବ-ଲିଙ୍ଗଙ୍କ ପାଖରେ ଯେଉଁ ଦେବୀ ମୂର୍ତ୍ତି ଅଛନ୍ତି, ତାହାଙ୍କୁ 'ବାଗ୍‌ଦେବୀ' ବୋଲି କହନ୍ତି । ବ୍ରହ୍ମାଣ୍ଡ ପୁରାଣ ଅନୁସାରେ ଏହା କେତେକାଂଶରେ ସତ୍ୟ ।

"ତସ୍ମାତ୍ ଦକ୍ଷିଣତଃ ସ୍କନ୍ଦ ! ନାତିଦୂରେ ମନୋରମେ ।
ଭୂ ପ୍ରଦେଶେ ବଶିଷ୍ଠସ୍ୟ ମୁନେଃ ସ୍ଥାନ ପରଗ୍ରହଃ ॥
ଉଗ୍ରେ ତପସି ତସ୍ୟର୍ଷେଃ ବର୍ତ୍ତମାନସ୍ୟ ଶଙ୍କରେ ।
ବ୍ରହ୍ମଣା ପ୍ରହିତା ଦେବୀ ସ୍ୱୟଂ ବାଗୀଶ୍ୱରୀ ଶୁଭା ॥
ପ୍ରାଦୁରଭୂବ...... ।" (ବ୍ର: ପୁ: ୩ଅ ୭୮, ୭୯)

ଅର୍ଥାତ୍ ଉତ୍ତରେଶ୍ୱର ଦକ୍ଷିଣରେ ଶଚୀତୀର୍ଥ, ଏହାର ଦକ୍ଷିଣରେ ଅଳ୍ପ ଦୂରରେ ମନୋରମ ଭୂଖଣ୍ଡରେ ବଶିଷ୍ଠ ମହର୍ଷିଙ୍କର ଆଶ୍ରମ ସ୍ଥାନ । ଏକଦା ଋଷି ବଶିଷ୍ଠଙ୍କୁ କଠୋର ତପସ୍ୟାରେ ସମାଧିସ୍ଥ ଥିବାର ଦେଖି ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଦେବୀ ବାଗୀଶ୍ୱରୀ ସରସ୍ୱତୀ ଆବିର୍ଭୂତା ହେଲେ । ଏହାଙ୍କର ଭୁଜ ବିଷୟରେ କୁହାଯାଇଛି—

"ଅଙ୍ଗୈରଷ୍ଟାଭି ରଗ୍ନେୟ୍ୟ ! ସା ଦେବୀ ଭକ୍ତବତ୍ସଳା ।
ଅଷ୍ଟାଭିର୍ବାହୁଭି ର୍ଦେବୀ ଦଧତୀ ସମଭବଯୁତ୍ ॥" (ବ୍ର: ପୁ: ୩ଅ, ୮୭)

ନନ୍ଦିକେଶ୍ୱର କହିଲେ—ହେ ଆଗ୍ନେୟ ଅର୍ଥାତ୍ କାର୍ତ୍ତିକେୟ ! ଭକ୍ତ ବାଞ୍ଛା କଳ୍ପତରୁ ସେହି ଦେବୀ ସରସ୍ୱତୀ ଅଷ୍ଟଭୁଜରେ ଆୟୁଧ ଧାରଣ କରି ବଶିଷ୍ଠଙ୍କର ସନ୍ତୋଷ ବିଧାନ କଲେ । ତତ୍ପରେ ବଶିଷ୍ଠ ନିମ୍ନୋକ୍ତ ପ୍ରକାରରେ ତାହାଙ୍କୁ ସ୍ତୁତି କଲେ—

ବଶିଷ୍ଠକୃତ ସରସ୍ୱତୀସ୍ତବ— (ବୃ: ପୁ: ୩ଅ)

ଓଁ ଦେବୀ ପଙ୍କଜଭୂବୋ ବଦନାମ୍ବୁଜସ୍ଥା
ପଞ୍ଚାଶଦକ୍ଷର ବପୁଃ ପରମାସି ବାଣୀ ।
ଓଁ ମାତୃକା ସକଳ ଯୋଗିଜନ ସେବ୍ୟମାନା
ନ୍ତାମଙ୍ଗକେଷୁ ମୁନୟୋ ବିନିବେଶୟନ୍ତି ।୮୨।
ଅଭ୍ୟସ୍ୟନ୍ତ୍ୟନିଶଂ ବେଦାନ୍ତୁଚାର୍ଯ୍ୟ ତବ ବାଙ୍ମତ
ମନୀଷିଣୋ ମହାମୋହ ଧ୍ୱଂସନାୟ ମନୋନ୍ମନ ।୮୩।
ମାଂସାସ୍ଥି ଶୋଣିତ ବିଶେଷ ବିଜୃମ୍ଭମାଣା—
ନ୍ୟଙ୍ଗାନି ସଙ୍ଗରହିତାଃ କଳଦେହଭାଜଃ ।
ଆଦୈ୍ୟଃ ସରସ୍ୱତି ତବେଶ୍ୱରି ବର୍ଣ୍ଣଭେଦୈ—
ସ୍ତେଜୋମୟାନି ମନସା ପରିଭାବୟନ୍ତି ।୮୪।
ତ୍ୱୟା ବିନା ବ୍ୟକ୍ତିରମୁଷ୍ୟ ଲୋକେ
ବିଶ୍ୱସ୍ୟ ବିଶ୍ୱେଶ୍ୱରି ବିଶ୍ୱବନ୍ଦ୍ୟେ ।
ତବୋଦୟେ ସର୍ବମିଦଂ ଜହାତି
ଜାଡ୍ୟଂ ତମୋ ଭାସ୍ୱତି ! ଭାସ୍ୱତୀବ ।୮୫।

ବଶିଷ୍ଠ ଏହି ପରି ସ୍ତୁତି କରିବାରୁ—

"ଦେବୀ ଦୟାର୍ଦ୍ର ହୃଦୟା ତଦାଦ୍ୟାପି ପ୍ରକାଶତେ ।" (୩ଅ, ୯୩)
ଦେବୀ ସରସ୍ୱତୀ ସେଠାରେ ସର୍ବୁଜନ ପାଇଁ ପ୍ରକାଶିତ ହେଲେ ।

## ବରାହଙ୍କ ଉତ୍ପତ୍ତି

"ବିଷସ୍ୟେ ମାସେ ତୁ ଶୁକ୍ଳ ଦ୍ୱାଦଶ୍ୟାଂ ଲଗ୍ନେ କର୍କଟ ସଞ୍ଜକେ ।
ଆବିରାସୀତ୍ ବ୍ରହ୍ମନାସାବିବରାତ୍ କୋଡ଼ରୂପଧୃକ୍ ॥

ବ୍ରହ୍ମାଣ୍ଡ ପୁରାଣରୁ—

ବୈତରଣୀନଦୀର ଉତ୍ତରତୀରରେ କ୍ଷେତ୍ରର ଅନ୍ତର୍ଗତରେ ସୁବିଶାଳ ସୁଚିକ୍କଣ ଶିଳାସମୂହ ସୁଶୋଭିତ 'ମଣିଚୂଡ଼' ନାମକ ଗୋଟିଏ ରମଣୀୟ ପର୍ବତଥିଲା । ଅଶୋକ ଚମ୍ପକ ପ୍ରଭୃତି ଅତ୍ୟୁଚ୍ଚ ପୁଷ୍ପିତ ବୃକ୍ଷରାଜିରେ ପର୍ବତଟି ଅତି କମନୀୟ ହୋଇଥିଲା । ଚତୁଃପାର୍ଶ୍ୱରେ ଝରଣା ଜଳ ପ୍ରବାହିତ ହୋଇ ସ୍ଥାନଟି ଅତ୍ୟନ୍ତ ସୁଶୀତଳ ହୋଇଥିବାରୁ ଧନୁର୍ଦ୍ଧାରୀ ଶବରମାନେ କିରାତ ରମଣୀମାନଙ୍କ ସହିତ ଏଠାରେ ସଞ୍ଚରଣ କରି ସୁମଧୁର ସ୍ୱରରେ ସଙ୍ଗୀତ ଗାନ କରୁଥିଲେ, ଯେଉଁ ସ୍ୱରରେ ସଚେତନ ମୃଗ–ବରାହାଦି ପ୍ରାଣୀ ତଥା ଅନ୍ୟଚେତନ ବୃକ୍ଷଲତାଦି ମୁଗ୍ଧ ହେଉଥିଲେ । ଏହି ପର୍ବତର କିଛି-ଦୂର ପଶ୍ଚିମକୁ ପନସ, ପଲାଶ, ବିଲ୍ୱ, ଆମ୍ର, ଆମ୍ରାତକ, କର୍ଣ୍ଣିକାର, ଅଶୋକ ପ୍ରଭୃତି ବୃକ୍ଷ ରାଶିରେ ସୁଶୋଭିତ ନିବିଡ଼ ବନ ମଧ୍ୟରେ ମୃଗବରାହାଦି ପଶୁଗଣ ନିତ୍ୟ ବିହାର କରୁଥିଲେ । ଏହି ବନକୁ କିରାତମାନେ 'ବିଲ୍ୱେଶ୍ୱର ବନ' ବା 'ବେଲସୁନ୍ଦରୀ ବନ' ବୋଲି କହୁଥିଲେ । ସେହି ବନ ନିକଟରେ 'କୌଶିକୀ' ନାମକ କ୍ଷୁଦ୍ର ନଦୀଟିଏ ପ୍ରବାହିତ ହେଉଥିଲା, ଯେଉଁଠାରେ ବର୍ତ୍ତମାନ 'କୁଶୀଗ୍ରାମ' ବିଦ୍ୟମାନ । ଏବେ ମଧ୍ୟ ଏହି ଗ୍ରାମର ଉତ୍ତର-ପାର୍ଶ୍ୱରେ 'ନାଳ' ପରି ନଦୀର କିୟଦଂଶ ଜଳ ଥିବାର ଦେଖାଯାଏ ।

ଏହି ନଦୀତୀରରେ 'ଦୀର୍ଘତପା' ନାମକ ଜନୈକ ମୁନି ତପସ୍ୟା କରୁଥିଲେ । ଏକଦା 'କାମରୂପେଶ୍ୱର' ରାଜାଙ୍କ ପୁତ୍ର ମୃଗୟା ବ୍ୟାପାରରେ ମୃଗଶୂକରମାନଙ୍କୁ ଅନୁସରଣ କରୁ କରୁ ସେହି ମୁନିଙ୍କ ଆଶ୍ରମରେ ପ୍ରବେଶ କଲେ । ଦୟାର୍ଦ୍ର ହୃଦୟ ମୁନି ପଶୁମାନଙ୍କର ଆର୍ତ୍ତନାଦ ଶୁଣି କହିଲେ—ହେ ରାଜପୁତ୍ର ! ତୁମ୍ଭେ ପବିତ୍ର ବଂଶରେ ଜନ୍ମ ଗ୍ରହଣ କରି ଏପରି ପ୍ରାଣିବିନାଶ ରୂପକ ଜଘନ୍ୟ ଦୁଷ୍କୃତ କର୍ମ କାହିଁକି କରୁଛ ? ଏହି ପାପରେ ତୁମେ ପର-ଜନ୍ମରେ ଲୁବ୍ଧକ ଜାତିରେ ଜନ୍ମ ଗ୍ରହଣ କରିବ । ମୁନିଙ୍କ ମୁଖରୁ ଏପରି ଅଭିଶାପ ବାଣୀ ଶୁଣି ରାଜପୁତ୍ର ସାଷ୍ଟାଙ୍ଗ ପ୍ରଣାମ ପୂର୍ବକ କୃତାଞ୍ଜଳି ପୁଟରେ ଅନୁନୟ ବିନୟ କରିବାରୁ ମୁନି କୋପ ସମ୍ବରଣ କରି କହିଲେ—ବତ୍ସ ! ତୁମେ ପରଜନ୍ମରେ ଉତ୍ତମଜ୍ଞାନ ଲାଭକରି ସିଦ୍ଧି ଲାଭ କରିବ । ତତ୍ପରେ ରାଜ-ପୁତ୍ର ଜନ୍ମାନ୍ତରରେ ପାପଜନିତ ଦୁଃଖ ଭୋଗକରି 'ଶିବେଣୁ' ନାମକ ଶବର

ଗୃହରେ 'ବଚାବଧନ୍ୱା' ନାମ ଧାରଣ କରି ଜନ୍ମ ଗ୍ରହଣ କଲା । ସିଂହସଦୃଶ ମହା ବୀର୍ଯ୍ୟଶାଳୀ ସେହି ବଚାବଧନ୍ୱା ଶବର ବାଳକଙ୍କ ସହିତ ମୃଗ ଶୂକରାଦି ପଶୁ ବଧକରି କଚ୍ଛୁଦିନ ପରେ ମୁନିଙ୍କ ବାକ୍ୟାନୁସାରେ ମଦ୍ଜ୍ଞାନ ଲଭିକଲା । ତାହାପରେ ନାଗସୂଣପରାୟଣ ହୋଇ 'ବ୍ରହ୍ମସତ୍ୟଂ ଜଗନ୍ମିଥ୍ୟା' ଏହି ତତ୍ତ୍ୱ କଥା ଭାବି ଭାବି ଶ୍ରବଣଶକ୍ତି ଓ ବାକ୍‌ଶକ୍ତି ରହିତ ହୋଇ କ୍ଷୁଧାତୃଷାକୁ ଭୁଲି ସେହି ଗହନବନରେ ଭ୍ରମଣ କରୁ କରୁ ଏକଦା ସେହି ବଚାବଧନ୍ୱାକୁ ମନ୍ଦରଗିରି ସଦୃଶ ଦୀର୍ଘକାୟ, ନବଜଳଧର କାନ୍ତି, ଆରକ୍ତନୟନ, ସଟାଭାର-ସୁନ୍ଦର, ବିଶାଳ ଦନ୍ତ, ସୁବିଶାଳ ନାସା ଶୋଭିତ ଯମଦୂତ ସଦୃଶ ମହା-ପରାକ୍ରମଶାଳୀ ମହାବରାହ ମୁଖବ୍ୟାଦାନ କରି ଆକ୍ରମଣ କଲା । ଏହା ଦେଖି ବଚାବଧନ୍ୱା ଧନୁରେ ଶାଣିତ ଶର ସଂଯୋଗ କରି ତାହାକୁ ବଧ କରିବା ପାଇଁ ନିର୍ଭୀକ ଭାବରେ ଅନୁଧାବନ କରନ୍ତେ ବରାହ ଘୋରଗର୍ଜନ ପୂର୍ବକ କେଶର କଳାପ ତଥା ଶରୀର ଲୋମ ରାଜିକୁ ଉତ୍‌ଫୁଲ୍ଲ କରି ଅଟ୍ଟହାସ୍ୟର ସହିତ ବୃକ୍ଷଲତା ସମାକୀର୍ଣ୍ଣ ସେହି ନିବିଡ଼ବନ ମଧ୍ୟରେ ଦୌଡ଼ିବାକୁ ଆରମ୍ଭ-କଲା । ବନାନ୍ତରାଳରେ କେତେବେଳେ ଦୃଷ୍ଟି ପଥରୁ ଅନ୍ତର୍ହିତ ହୋଇ କେବେ ବା ଦୃଷ୍ଟିଗୋଚର ହୋଇ ଦୌଡ଼ୁ ଦୌଡ଼ୁ ସେହି ବରାହ ଭୂମିବିଦାରଣ କରି ପାତାଳରେ ପ୍ରବେଶ କଲା । ଶବର ପୁତ୍ର ଧନୁଶର ଧରି ନିର୍ଭୟରେ ଅନୁଗମନ କରିବାରୁ ଶୂକର ଅତ୍ୟଧିକ ବ୍ୟଗ୍ରଗତିରେ ଯାଇଁ ଯାଇଁ ହଠାତ୍ ଗଦାକୃତ ହୋଇ ଆକାଶ ମଣ୍ଡଳକୁ ଲମ୍ଫ ପ୍ରଦାନ କରି ମଣିଚୂଡ଼ ପର୍ବତରେ ଏପରି ଭାବରେ ପଡ଼ିଲା ଯେ ପର୍ବତଟି ରସାତଳଗାମୀ ହେଲା । ଦେବ, କିନ୍ନର ଖେଚରଗଣ ଏହା ଦେଖୁ ଦେଖୁ ସେହି ମହାଗର୍ତ୍ତ ପାତାଳରୁ ଗଙ୍ଗା ବରାହର କ୍ରୀଡ଼ା କୌତୁକ ପାଇଁ ଆବିର୍ଭୂତା ହେଲେ । ବର୍ତ୍ତମାନ ବରାହ-ମନ୍ଦିର ପୃଷ୍ଠ ଭାଗରେ ଚୋଖଣ୍ଡ ପରି ଯେଉଁ ଖାଲୁଆ ଜମିଟି ଦେଖାଯାଏ ତାହାକୁ ଲୋକେ 'ପାତାଳଗଙ୍ଗା' ବା 'ଗୁପ୍ତଗଙ୍ଗା' ବୋଲି କହନ୍ତି । ତାହା ବର୍ତ୍ତମାନ ପୋତି ହୋଇ ଗଲାଣି ।

ତାହାପରେ ବଚାବଧନ୍ୱା ତାହାପ୍ରତି ଶର ପ୍ରୟୋଗ କରିବାକୁ ଉଦ୍ୟତ ହୁଅନ୍ତେ ସେହି ବରାହ ମନୁଷ୍ୟସ୍ୱରରେ କହିଲା—ହେ ଧନୁର୍ଦ୍ଧର ବୀର ! ବର୍ତ୍ତମାନ ତୁମ୍ଭର ଏହି କାନ୍ତାରରେ ଭ୍ରମଣ କରିବା ବୃଥା । ମୁଁ ତୁମ୍ଭ

ଉପରେ ପ୍ରସନ୍ନ ହେଲି, ଅଭିଳଷିତ ବର ପ୍ରାର୍ଥନା କର । ତାହାପରେ ବରାହ-ରୂପୀ ଭଗବାନ୍ ମାଧବ ଏହିପରି କହି ବିଚଣ୍ଧନ୍ୱାଙ୍କୁ ପାଞ୍ଚଜନ୍ୟଶଙ୍ଖରୁ ଅମୃତ ପାନ କରାଇ ତାହାର କ୍ଳାନ୍ତି ଦୂର କରାଇଲେ । ଲକ୍ଷ୍ମୀକୋଳରେ ଥିବା ଭଗବାନ୍ ବରାହଙ୍କୁ ଦେଖି ବିଚଣ୍ଧନ୍ୱା ଭକ୍ତିପୂତ ହୃଦୟରେ ସାଷ୍ଟାଙ୍ଗ ପ୍ରଣାମ କରି ଗଦ୍ ଗଦ କଣ୍ଠରେ ସ୍ତୁତି ଆରମ୍ଭକଲେ—

ବିଚନ୍ଦ୍ରଧନ୍ୱାକୃତ ବରାହସ୍ତବ :— (ବ୍ର: ପୁ: ୯ଅ)

ପ୍ରତପ୍ତ ଜମ୍ବୂନଦ ଭାସ୍ୱରାଙ୍ଗ
ଚନ୍ଦ୍ରାଯୁତ ଜ୍ୟୋତିଃ ସମାନ ରୂପ ।
ଜ୍ୱଳତ୍ କୃପୀଠ ପ୍ରଭବୋଜ୍ଜ୍ୱଳାତ୍ମନ୍
ପ୍ରଭୋ ଗରୁତ୍ମନ୍ ମଣି ନୀଳବର୍ଣ୍ଣ ।୬୪।।
ନମୋ ନମସ୍ତୁଭ୍ୟ ମଚିନ୍ତ୍ୟ ପୌରୁଷ
ପ୍ରଧ୍ୱସ୍ତଲୋକଶତ୍ରୁ ବୀର ବିଦ୍ୱିଷ ।
ନିତାନ୍ତ ତୀକ୍ଷ୍ଣାଗ୍ର ବରୂଢ଼ଦଂଷ୍ଟ୍ରୟା
ବିଦାରିତ କ୍ଷୌଣିତଳାଢ଼ ପୂରୁଷ ।୬୫।।
ପ୍ରକୋଷ୍ଠ ମୂଳାଯୁତନାଚଳୋଲ୍ଲସତ୍
ମୁଖାମ୍ବୁଜ-ପ୍ରେକ୍ଷିତ ଦିବ୍ୟଚକ୍ଷୁଷେ ।
ପରିଷ୍କୃତାରକ୍ତ କରାଙ୍ଗୁଳି ତ୍ୱିଷା
ନିତାନ୍ତ ମାରଞ୍ଜିତ ଦିବ୍ୟବାସସେ ।୬୬।।
ରଥାଙ୍ଗ ଶଙ୍ଖ ପ୍ରଚୁର ପ୍ରଭାଙ୍କୁରୈଃ
ସହସ୍ର ଭାନ୍ୱିନ୍ଦୁ କରାବମିଶ୍ରମ୍ ।
ପ୍ରଭୋ ବିତନ୍ୱନ୍ ବନତାମ୍ବୁଜ ସ୍ତୁତ
ପ୍ରସୀଦ ମେ ତୁଭ୍ୟମନୁକ୍ଷଣଂ ନମଃ ।୬୭।।
ସଭୂଧରାରଣ୍ୟ ନଦୀ ମହାର୍ଣ୍ଣବେ
ସଭସ୍ୱତୀ ଦୂରବମାଶ୍ରିତା ତବ ।
ସଦାଗତିଃ ଶ୍ୱାସମରୁତ୍ ସମେଧିତୋ
ଭୁଜଦ୍ୱୟେ ତିଷ୍ଠତି ପାବକଃ ସ୍ୱୟମ୍ ।୬୮।।

ତବୋଦରାନ୍ତ ବଂସବୋ ଦଶଃ ଶ୍ରୁତୌ
ତଥାଶ୍ରିତୌ ଲବ୍ଧପଦୌ ତୁ ନାସୟୋଃ ।
ତବାଙ୍ଘ୍ରି ପଙ୍କେରୁହୟୋଃ ସରୋଜଭୂଃ
ସଶଙ୍ଖଚକ୍ରୋ ହୃଦୟେ ହରିଃ ସ୍ୱୟମ୍ ।୬୯॥
ମୁଖେ ଜଗତ୍ ସଂହରଣେ ବିଧାତା
ଚକାସ୍ତି ଦେବସ୍ତରୁଣେନ୍ଦୁ ଶେଖରଃ ।
ଦସ୍ୟାଦ୍ୱଂ ସଂପ୍ଲାବିତ ମାଶ୍ରିତୋ ମନୋ
ବିଭ୍ରାନ୍ତ ଧର୍ମୀ ଜଗଦେକ ଧାରକଃ ।୭୦॥
ପ୍ରଣାମ ଲେଖାମର ମୌଳି ମାଳିକା—
ପତଦ୍ଭିବାରକ୍ତ ତବାଙ୍ଘ୍ରି ପଙ୍କଜଃ ।
ତଦୁତ୍ଥ ମାଣିକ୍ୟ ମୟୂଖ ସଙ୍ଗମା—
ନବୀନ ସନ୍ଧ୍ୟାସଦୃଶାଙ୍ଗ ! ହେ ନମଃ ।୭୧॥
ନମଃ ସୁରର୍ଷିସ୍ତବ ବନ୍ଧ ସଂଚର—
ପ୍ରକାମ ଲବ୍ଧ ପ୍ରମଦ ଶ୍ରବୋଯୁଗ ।
ତଥାପି ହସ୍ତସ୍ଥ ବସୁନ୍ଧରସ୍ତବେ
ମନଶ୍ଚ କର୍ତ୍ତୁଂ ଦଦତେ ନମୋ ନମଃ ।୭୨॥
ସଶଙ୍ଖ ଭେଶ୍ୱ ପଣବାନ କାଳବାନ୍
ଭୁଜସ୍ୟଜସ୍ରଂ ବିଦଧତ୍ ସ୍ୱହର୍ଷିତମ୍ ।
ସ୍ଫୁରନ୍ନଖେନ୍ଦୁ ସରୋରୁହ ଛବିଂ
ଦୃଶଂ ପ୍ରସନ୍ନାଂ ଦଧତେ ନମୋନମଃ ।୭୩॥
ଶ୍ରିୟା ସମୀପସ୍ଥିତୟା ସରୋରୁହ—
ସ୍ଫୁରତ୍ କରାମ୍ଭୋରୁହୟା ପ୍ରସନ୍ନୟା ।
ଦୃଗଞ୍ଚଳା ମୀଳିତ ଦିବ୍ୟ ମୂର୍ତ୍ତୟେ
ମହାନୁ ଭାବାୟ ବରାୟ ତେ ନମଃ ।୭୪॥
ସ୍ୱଭାବ ସଂଲେଳ ଗରୁତ୍ ବିନିର୍ଗତ
ପ୍ରଭଞ୍ଜନାନନ୍ଦ ବିଶୃଙ୍ଖଳୋଦ୍ ଗତୈଃ ।
ପ୍ରହର୍ଷ ବିସ୍ତୀର୍ଣ୍ଣ ଦୃଶୋ ଗରୁତ୍ମତା
ପ୍ରବାହ୍ୟମାନାୟ ବରାୟ ତେ ନମଃ ।୭୫॥

ଲସତ୍ କଗଣ୍ଠାମଳ କୁଣ୍ଡଳାରୁଣ
ପ୍ରଭା ପିଶଙ୍ଗାନନ-ପଙ୍କଜାୟ ତେ ।
ନମୋ ଚଳଲାଲାୟତ ହାର ଭାସ୍ୱର
ସ୍ୱଦେହ ଜାମ୍ବୁନଦ ଚିତ୍ରବାସସେ ।୭୬।।
ନମୋଽସ୍ତୁ ସାମସ୍ୱରଥେ ଜଗତ୍ ସ୍ୱୀ—
ମହର୍ଷି ମୂଲାୟତନାଜ୍ଞ ପୃଚ୍ଛ ।
ନମୋଽସ୍ତୁ ଭକ୍ତାର୍ଚ୍ଚିତ ପାଦପଙ୍କଜ
ପ୍ରସାଦ-ସଦ୍ମନ୍ ପ୍ରଣତାର୍ତ୍ତିହୃନ୍ମନଃ ।୭୭।।
ମୟି ପ୍ରସାଦ ପ୍ରବଣଂ ମନୋଽନିଶଂ
କୁରୁଷ୍ୱ ଦେବେଶ ଜଗନ୍ନିବାସଭୂଃ ।
ଦୃଶାନୁକମ୍ପାଦ୍ରବ ପୂର୍ଣ୍ଣୟା ନୟା
ପ୍ରଭୋଽଭିଷିଞ୍ଚ ଦ୍ରୁତ ମମ୍ବୁଜାକ୍ଷ ମାମ୍ ।୭୮।।
ପ୍ରଭୋ ଭବନ୍ତଂ କମଳାସନାଦୟଃ
ସ୍ୱତେୟରୂପଂ ଭଗବନ୍ ଦୃଶାନୟା ।
ସ୍ୱଲୋକୟାମି ପ୍ରଚୁର ପ୍ରମୋଦଭାକ୍
କୁତୋ ମନୈଷା ଚରିତାର୍ଥତା ସ୍ୱଭୋ ।୭୯।।
ଅହୋ ମହୋ ବସ୍ତୁତରମ୍ୟରଂ ମହା
ଦଶସ୍ତଥାଷ୍ଟୌ ସ୍ୱଦଶୋ ଜଗତ୍ପତେ ।
ଅଶେଷ ମାଧୁର୍ଯ୍ୟ ଭବନ୍ମୟଂ ଜଗତ୍
ପ୍ରକାଶରୂପଂ କୁରୁତେଽଦ୍ଭୁତଂ ମହତ୍ ।୮୦।।

ଚିତ୍ରଧନ୍ୱାଙ୍କର ଏହି ସ୍ତବରେ ସନ୍ତୁଷ୍ଟ ହୋଇ ଭଗବାନ୍ ବରାହ ସେହିଠାରେ ଚତୁର୍ଭୁଜ ହୋଇ ଶୋଭା ପାଇଲେ । ଏହି ସ୍ତବକୁ ପାଠକରି ଯେଉଁ ବ୍ୟକ୍ତି 'କ୍ରୋଡ' ନାମକ କୁଣ୍ଡରେ ସ୍ନାନକରେ ଓ ପିତୃ ଲୋକଙ୍କୁ ତର୍ପଣ ପିଣ୍ଡଦାନ କରେ, ସେ ଅଶେଷ ଫଳ ଲଭ କରେ ।

"ଆଦ୍ୟ ଯଜ୍ଞ ଶ୍ୱେତଲକ୍ଷ୍ମୀତ୍ୟାଦ୍ୟ ମୂର୍ତ୍ତି ଚତୁଷ୍ଟୟମ୍ ।" କ.ଫ. ୭୨

ଏହି ବରାହ ଆଦିବରାହ, ଯଜ୍ଞବରାହ, ଶ୍ୱେତବରାହ ଓ ଲକ୍ଷ୍ମୀ-ବରାହ ଭେଦରେ ଚତୁର୍ମୂର୍ତ୍ତିରେ ଶୋଭା ପାଇଲେ । କିମ୍ବଦନ୍ତୀରୁ ଜଣାଯାଏ,

ପରମ ବିଷ୍ଣୁଭକ୍ତ ଅନଙ୍ଗଭୀମ ଦେବ ତ୍ରିସନ୍ଧ୍ୟା ଅଶ୍ୱମେଧାଦି ପୂର୍ବକ ଏହି ବରାହଙ୍କୁ ଦର୍ଶନ କରିବାକୁ ଆସୁଥିଲେ । ତାଙ୍କର ଏପରି କଠିନ ପରିଶ୍ରମକୁ ଜାଣି ଭକ୍ତ ଚିନ୍ତାମଣି ଲକ୍ଷ୍ମୀବରାହ ସ୍ୱପ୍ନରେ ରାଜାଙ୍କୁ କହିଲେ—ବତ୍ସ ! ତୁମ୍ଭର ପ୍ରଗାଢ଼ ଭକ୍ତିରେ ମୁଁ ସନ୍ତୁଷ୍ଟ । ଏଣୁ, କାଲି ମୋତେ ଦର୍ଶନ କରି ଫେରିବା ବେଳେ ମୁଁ ତୋର ପଛେପଛେ ଆସି ତୋର ରାଜ୍ୟ ଅଳଂକୃତ କରିବି । ତତ୍ପରଠାରୁ ଆଜି ପର୍ଯ୍ୟନ୍ତ 'ଲକ୍ଷ୍ମୀବରାହ' ଆଳିରେ ଅବସ୍ଥାନ କରି ରାଜ୍ୟକୁ ମଣ୍ଡନ କରୁ ଅଛନ୍ତି । ବର୍ତ୍ତମାନ ଆଉ ତିନମୂର୍ତ୍ତି ବରାହଙ୍କ ମଧ୍ୟରୁ ସିଂହାସନରେ ଦୁଇମୂର୍ତ୍ତି ବରାହ, ଏକ ମୂର୍ତ୍ତି ଲକ୍ଷ୍ମୀ ଓ ଲକ୍ଷ୍ମୀବରାହଙ୍କ ସ୍ଥାନରେ ଜଗନ୍ନାଥ ପୂଜା ପାଉଅଛନ୍ତି । ଆଉ ଏକମୂର୍ତ୍ତି ବରାହ 'ଖରାଖିଆବରାହ' ନାମ ଧାରଣକରି ବରାହ ମନ୍ଦିରର ଦକ୍ଷିଣ ଭାଗରେ ଆଉ ଏକ ମନ୍ଦିରରେ ଅଛନ୍ତି । ଏହାଙ୍କର ମୁଖ ଉତ୍ତରକୁ । ଏଠାରେ ଦେବତାଙ୍କ ନାମାନୁସାରେ 'ବରାହନାଥ' ନାମରେ ଗୋଟିଏ ଗ୍ରାମ ଅଛି । ଏଠାରେ ବରାହଙ୍କ ସେବକ ବ୍ରାହ୍ମଣମାନେ ବାସକରନ୍ତି । ଏହାଙ୍କ ବ୍ୟତୀତ ୮ ଜୟରାମ ସାହୁ, ୮ ବନମାଳି ସାହୁ, ୮ ଭାଗବତ ଖଣ୍ଡିତ ନାମକ ତିନୋଟି ଧର୍ମ ପରିବାରଙ୍କର ଦାୟାଦମାନେ ବାସକରନ୍ତି ।

ବରାହବିଷ୍ଣୁ ବିଷୟରେ ବ୍ରହ୍ମପୁରାଣ—

"ଆଦ୍ୟେ ସ୍ୱୟମ୍ଭୁସ୍ତଦୈବ ଢୋଲଗୁରୁପୀ ହରିଃ ସ୍ୱୟମ୍
ଦୃଷ୍ଟ୍ୱା ପ୍ରଣମ୍ୟ ତଂ ଭକ୍ତ୍ୟା ପରଂ ବିଷ୍ଣୁଂ ବ୍ରଜନ୍ତି ତେ ।"

ପୁଷ୍କରତୀର୍ଥରେ ଭଗବାନ ବ୍ରହ୍ମାଙ୍କପରି ଏହି ତୀର୍ଥରେ ଭଗବାନ ବିଷ୍ଣୁବରାହ ପୂଜା ପାଉଅଛନ୍ତି । ଏହି ତୀର୍ଥ ବ୍ୟତୀତ ଭାରତର ଅନ୍ୟ କୌଣସି ସ୍ଥାନରେ ବିଷ୍ଣୁ ବରାହ ରୂପରେ ପୂଜା ପାଇବାର ଦେଖାଯାଏ ନାହିଁ ।

ବୈଷ୍ଣବ ଧର୍ମର ପ୍ରଧାନ ପୃଷ୍ଠପୋଷକ ଶ୍ରୀ ଚୈତନ୍ୟ ମହାପ୍ରଭୁ ୧୫୧୦ ଖ୍ରୀଷ୍ଟାବ୍ଦରେ ଏହି ତୀର୍ଥରେ ଅବସ୍ଥିତ ବରାହଦେବଙ୍କୁ ଦର୍ଶନକରି, ଏ ସମ୍ବନ୍ଧରେ ନିଜ ଚୈତନ୍ୟାମୃତର ମଧ୍ୟଲୀଳା ୫ମ ଅଧ୍ୟାୟ—ତାରାଚାନ୍ଦ ପ୍ରକାଶକ, ୧୩୮ ପୃଷ୍ଠାରେ ବର୍ଣ୍ଣନା କରି କହିଅଛନ୍ତି—

"ଏଇମତ ଚଲି ଅଇଲ ଯାଜପୁର ଗ୍ରାମେ
ବରାହ ଠାକୁର ଦେଖି କରିଲ ପ୍ରଣାମେ ।

ନୃତ୍ୟଗୀତ କୌତୁକମନେ ଅନେକ ସ୍ତବନ
ସେହି ରଥ ତହିଁ ରହି କରିଲ ଗମନ ॥"

ଏବେ ମଧ୍ଯ ଏହିଠାରେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ପାଦପଦ୍ମ ଯୁଗଳ ଝୋଡ଼ବାସିମାଙ୍କ ଦକ୍ଷିଣ ଦିଗରେ ଥିବା ମନ୍ଦିରରେ ବିଦ୍ୟମାନ ।

ଏବେ ମଧ୍ଯ ପ୍ରାଚୀନ କାଳରୁ ଲିଖିତ ସଙ୍କଳ୍ପ ମହାବାକ୍ୟରେ ପ୍ରତ୍ୟେକ କର୍ମରେ ଉଚ୍ଚାରଣ କରାଯାଏ—

"ଜମ୍ବୁଦ୍ୱୀପେ ଭରତଖଣ୍ଡେ ଭାରତବର୍ଷେ ଶ୍ୱେତବରାହକଳ୍ପେ
ଉତ୍କଳଦେଶେ ବିରଜଃ କ୍ଷେତ୍ରେ ବୈତରଣ୍ୟାଃ ଉତ୍ତରେ
(ବା ଦକ୍ଷିଣେ) ତୀରେ...... ।"

ଆହୁରି ମଧ୍ଯ—

"ବୈଧସ୍ୟୋତ୍ତରତୋ ନଦ୍ୟା ବୈତରଣ୍ୟା ହରିଃ ସ୍ୱୟମ୍ ।
ବରାହରୂପୀ ଭଗବାନଗ୍ରତସ୍ତସ୍ୟ ପୂର୍ବତଃ ॥"

**ବରାହଙ୍କ ପର୍ବ—**

ପ୍ରତିବର୍ଷ ପୌଷମାସ କୃଷ୍ଣ ଅମାବାସ୍ୟା ଦିନ ଏହି ବରାହଙ୍କ ଜନ୍ମୋତ୍ସବ ପାଳିତ ହୁଏ । ସ୍ଥାନୀୟ ବହୁତଯାତ୍ରୀ ଦେବଙ୍କ ଦର୍ଶନକୁ ଆସନ୍ତି । ସମ୍ଭବତଃ ଏହି ଅମାବାସ୍ୟାଦିନ ଋଷିଯଯାତି ବରାହଙ୍କ ସ୍ୱରୂପ ଦର୍ଶନ କରିଥିବା ଅନୁମାନ କରାଯାଏ । ସେହି ଦିନଟିର ସ୍ମରଣ ପାଇଁ ଏହି ଜନ୍ମୋତ୍ସବ ପାଳିତ ହୁଏ । **ବରାହଦୋଳ**—ଦୋଳପୂର୍ଣ୍ଣିମାର ପୂର୍ବଦିନ ଚତୁର୍ଦ୍ଦଶୀ ବା ଗୌଡ଼ଦୋଳ ଦିନ ବରାହଙ୍କ ବିଜେ ପ୍ରତିମା ମଦନ ମୋହନଙ୍କୁ ସୁସଜ୍ଜିତ ବିମାନରେ ଦୋଳମଣ୍ଡପକୁ ଆଣି ଦୋଳରେ ବସାଇ ଝୁଲାନ୍ତି । ଏଠାରେ ବ୍ରାହ୍ମଣ, ପୁରୋହିତ ଦର୍ଶକମଣ୍ଡଳୀଙ୍କ ଉପସ୍ଥିତିରେ ଢିଅଁଙ୍କ ସମ୍ମୁଖରେ ଜ୍ୟୋତିଷ ଠିଆହୋଇ ନୂତନ ପଞ୍ଜିକା ପାଠକରେ । ଏହି ଦୋଳମଣ୍ଡପରେ ଦୋଳାଯୁମାନ ବରାହଙ୍କୁ ଦର୍ଶନକଲେ ମହାପାପ ବିନଷ୍ଟ ହୁଏବୋଲି କପିଳ ସଂହିତାରେ କୁହାଯାଇଛି ।

"ଦୋଳାଯୁମାନଂ ଝୋଡ଼ଞ୍ଚ ତଂ ପଶ୍ୟନ୍ତି ଯେ ନରାଃ ।
ବ୍ରହ୍ମହତ୍ୟାଦି ପାପାନି କ୍ଷପୟିତ୍ୱା ମୁକ୍ତିଭାଗିନଃ ॥" (କଃ ସଂ:)

ଅର୍ଥାତ୍ ଯେଉଁ ଲୋକମାନେ ଦୋଳରେ ଝୁଲୁଥିବା ବିଗ୍ରହଙ୍କୁ ଦର୍ଶନ କରନ୍ତି ସେମାନଙ୍କର ବ୍ରହ୍ମହତ୍ୟାଦି ପାପ ବିନଷ୍ଟ ହୁଏ । ଶେଷରେ ସେମାନେ ମୁକ୍ତି ଲାଭ କରନ୍ତି ।

## ଚନ୍ଦନଯାତ୍ରା—

ବୈଶାଖମାସ ଚନ୍ଦନପୂର୍ଣ୍ଣିମାର ପୂର୍ବ ତିନଦିନରୁ ଅର୍ଥାତ୍ ତ୍ରୟୋ-ଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ତିନଦିନ ବିଗ୍ରହଙ୍କ ବିଜେ ପ୍ରତିମାକୁ ସଜ୍ଜିତ ବିମାନରେ ନେଇ ବୈତରଣୀ ନଦୀରେ ନାବକେଳି ବା ନୌକା ବିହାର କରାଯାଏ । ପୂର୍ଣ୍ଣିମା ଦିନ ମହାସମାରୋହରେ ନଗର ପରିକ୍ରମା କରାଯାଏ । କାର୍ତ୍ତିକ ମାସରେ ମଙ୍ଗଳ ଆଳତି ସମ୍ପାଦିତ ହୁଏ । ଏହିପରି ଅନ୍ୟାନ୍ୟ ବାର୍ଷିକ ପର୍ବ ମଧ୍ୟ ଅଳ୍ପ ବହୁତ ପାଳିତ ହୁଏ ।

## ବିଗ୍ରହମନ୍ଦିର ନିର୍ମାଣ—

ଖ୍ରୀ: ୧୪୩୫ ଠାରୁ ୧୫୩୪ ପର୍ଯ୍ୟନ୍ତ କଳିଙ୍ଗରେ ସୂର୍ଯ୍ୟ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଏହି ବଂଶର ରାଜା ପ୍ରତାପରୁଦ୍ରଦେବ ବିଜୟନଗରର ରାଜାଙ୍କୁ ଯୁଦ୍ଧରେ ଜୟକରି ତାଙ୍କ ସହିତ ବୈବାହିକ ବନ୍ଧନରେ ଆବଦ୍ଧ ହୋଇଥିଲେ । ଶେଷରେ ରାଜା ଶ୍ରୀଚୈତନ୍ୟ ଦେବଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ବିଗ୍ରହମନ୍ଦିର ନିର୍ମାଣ କରାଇ ଥିଲେ । ମନ୍ଦିରଟି ସମ୍ପୂର୍ଣ୍ଣ ପ୍ରସ୍ତରନିର୍ମିତ । ଏହି ବିଶାଳ ମସୃଣ ଶିଳାସମୂହ ଏଠାରେ ଥିବା 'ମଣିଚୂଡ଼' ପର୍ବତରୁ ଆସିଥିବାର ଅନୁମାନ କରାଯାଏ । ଏହି ମନ୍ଦିର ଏତେ ଉଚ୍ଚ ଥିଲା ଯେ ଲୋକ ମନ୍ଦିର-ଚୂଡ଼ା ନିକଟରେ ଠିଆ ହୋଇ ଧାମନଗର ଓ ଶୋହିରାଟିକିରି ପ୍ରଭୃତି ସ୍ଥାନ ଦେଖି ପାରୁଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଏହାର ଗୁଇ ବହୁଦୂରକୁ ପଡୁଥିଲା । ଖ୍ରୀ: ୧୫୬୮ରେ କଳାପାହାଡ଼ ଓଡ଼ିଶା ଆକ୍ରମଣ କରିବା ସମୟରେ ତାହାର ଘୋଡ଼ା ଏହି ମନ୍ଦିର ଗୁଇ ଦେଖି ଭୟ କରିବାରୁ କଳା-ପାହାଡ଼ ପ୍ରଧାନ ମନ୍ଦିରଟି ଅର୍ଦ୍ଧଭଗ୍ନ କରିଥିଲା । ତତ୍ପରେ ମୁସଲମାନ ରାଜତ୍ୱର ଅବସାନ ଘଟିବାରୁ ମନ୍ଦିର ପୁନଃନିର୍ମାଣ କରାଯିବାରେ ପୂର୍ବପରି ଉଚ୍ଚତା ଆଉ ରହିଲା ନାହିଁ । ଏହାର ମୁଖଶାଳାକୁ ମନ୍ଦିର ସହିତ ତୁଳନା

କଲେ ମନ୍ଦିର ପୁନର୍ଗଠିତ ହୋଇଅଛି ବୋଲି ଯେ କେହି ଅନୁମାନ କରିପାରିବ । ସବୁଠାରେ ମୁଖଶାଳାଠାରୁ ପ୍ରଧାନ ମନ୍ଦିରର ଉଚ୍ଚତା ପ୍ରାୟ ଦେଢ଼ ଗୁଣରୁ ଅଧିକ । ଆହୁରି ମଧ୍ୟ ଏହି ମନ୍ଦିରର ମୁଖଶାଳାର ନିର୍ମାଣ କୌଶଳ ଅତ୍ୟନ୍ତ ଚମତ୍କାର । ବୈତରଣୀ ନଦୀକୁ ଅବତରଣ କରିବା ପାଇଁ କେତେକ ପଥର ପାହାଚ ପଶ୍ଚିମଦିଗକୁବ୍ୟାପି ନିର୍ମାଣ କରାଯାଇଛି । ତନ୍-ମଧ୍ୟରୁ ଅଧିକାଂଶ ନଦୀ ଗର୍ଭରେ ପୋତିହୋଇ ମୂର୍ତ୍ତିମେସ୍ କେତୋଟି ଦେଖାଯାଉ ଅଛି ।

## ଦଶାଶ୍ୱମେଧଘାଟ :—

ମୌର୍ଯ୍ୟ ବଂଶର ସର୍ବଶ୍ରେଷ୍ଠ ରାଜା ଅଶୋକ ଖ୍ରୀ: ୨୬୧ ଠାରୁ ୩୨୨ ମଧ୍ୟରେ କଳିଙ୍ଗ ଜୟ କରି ଫଳପରେ ଉତ୍ତରାଞ୍ଚଳରୁ କେତେକ ଶୁଦ୍ଧପୂତ ବୈଦିକ ବ୍ରାହ୍ମଣ ଆସି ବିଭିନ୍ନ ସ୍ଥାନରେ ବସତି ସ୍ଥାପନ କରିଥିଲେ । ସେତେ-ବେଳେ ଏହି ଓଡ଼ିଶା ଉତ୍ତରକଳିଙ୍ଗ, ମଧ୍ୟକଳିଙ୍ଗ ଓ କଳିଙ୍ଗ ନାମରେ ତିନି ଭାଗରେ ବିଭକ୍ତ ହୋଇଥିବାରୁ ଏହାକୁ 'ତ୍ରିକଳିଙ୍ଗ' ନାମରେ ନାମିତ କରି ଯଯାତି କେଶରୀଙ୍କ ପିତା ଭବଗୁପ୍ତଦେବ, ଲୋକପ୍ରସିଦ୍ଧ 'ଶିବଗୁପ୍ତ' ଓଡ଼ିଶାର ପଶ୍ଚିମସୀମାନ୍ତ ପ୍ରଦେଶ ଜୟ କରିଥିଲେ । ଯାଜପୁର କ୍ଷେତ୍ର ପ୍ରତି ତାଙ୍କର ବିଶେଷ ନଜର ନ ଥିଲା । ତତ୍ପରେ ଏହାଙ୍କର ପୁତ୍ର ଯଯାତି କେଶରୀ ତ୍ରିକଳିଙ୍ଗ ଜୟ କରି ତ୍ରିକଳିଙ୍ଗାଧିପତି ହୋଇଥିଲେ । ଏହାଙ୍କର ରାଜଧାନୀ ପ୍ରଥମେ ସୋନପୁର ଠାରୁ ୨୦ ମାଇଲ ଦୂରରେ ଥିବା ମହାନଦୀ କୂଳବର୍ତ୍ତୀ 'ବିନୀତପୁର' ଆଧୁନିକ ନାମ 'ବିନିକା'ରେ ଥିଲା । ଓଡ଼ିଶାକୁ ଦଖଲ କରିବା ପରେ ଏହି ଯାଜପୁରକୁ ଅତି ପବିତ୍ରସ୍ଥାନ ମନେକରି ଏଠାରେ ରାଜଧାନୀ ସ୍ଥାପନ କରିଥିଲେ । ଏହାର ନିଦର୍ଶନ ସ୍ୱରୂପ ନଅରପଦା, ଦାଣ୍ଡୀଗଡ଼ଆ, ହାତୀଙ୍କ ସ୍ନାନ ପାଇଁ ହାତୀଗଡ଼ଆ, ଅଲବାଗ (ଆଲବାଗ), ଶିବଗୁପ୍ତଙ୍କ ନାମାନୁସାରେ ଶିବଦାସପୁର, ବୈତରଣୀର ଉତ୍ତର କୂଳରେ ଦେଢ଼ମାଇଲ ଦୂରରେ ଥିବା ଷୋଳମପୁର ବା ଷୋଳଶପୁର ଅଦ୍ୟାବଧି ଅବସ୍ଥିତ । ଭୌମ ରାଜା ପ୍ରଥମ ଶୁଭାକର ଦେବ କୋମ୍ପାରକ ଓ ଷୋଳମପୁର ଏହି ଉଭୟକୁ ଏକ ସମୟରେ ବ୍ରାହ୍ମଣମାନଙ୍କୁ ଦାନ ଦେଇଥିଲେ । ସୋମବଂଶୀ ରାଜା କର୍ଣ୍ଣଦେବଙ୍କ ରାଣୀ କର୍ପୂରଶ୍ରୀ ଷୋଳମପୁରର ଗୋଟିଏ ଦେବଦାସୀ ପରିବାରର କନ୍ୟା ଥିଲେ । ଏଠାରେ ଯଯାତିକେଶରୀଙ୍କର ଷୋଳଟି

ଚଉପାଡ଼ୀ ବଶିଷ୍ଟ ଗୋଟିଏ ଗଡ଼ଥିଲା, ରାଜାଙ୍କ ପାଇକମାନେ ଏଠାରେ ବାସ କରୁଥିଲେ । ଏବେ ମଧ୍ୟ ଗଡ଼ର କେତେକାଂଶ ଦୃଷ୍ଟିଗୋଚର ହୁଏ । ଏଠାରେ 'ଦକ୍ଷିଣ କବାଟ', 'ଉତ୍ତର କବାଟ' ଉପାଧିରେ ଭୂଷିତ କ୍ଷତ୍ରିୟ ବଂଶଧରମାନେ ଅଛନ୍ତି । ଏହି ଉପାଧିରୁ ଜଣାଯାଏ, ଏମାନେ ଦକ୍ଷିଣ ଦ୍ୱାର ଓ ଉତ୍ତର ଦ୍ୱାର ରକ୍ଷକ ଭାବରେ ନିଯୁକ୍ତ ଥିଲେ । ବର୍ତ୍ତମାନ ଏହି ଷୋଳମ-ପୁରରେ ପଥରକାନ୍ଥ ଥିବା ଘର ଓ ପୁଷ୍କରିଣୀର ଭଗ୍ନାବଶେଷ ଦେଖାଯାଏ । ଏହାର କେତେକ ଘଟର ପାଛିଣ୍ଡି ମଧ୍ୟ ଏବେ ଦେଖାଯାଉଛି । ଗଡ଼ ଦ୍ୱାରରେ କଂସାର କବାଟ ଥିଲା ବୋଲି ଲୋକେ କହନ୍ତି । ଏହାପରି ମଣିନାଥପୁର ବୋଲି ଗୋଟିଏ ଗ୍ରାମ ଅଛି । ଏହି ଦୁଇ ଗ୍ରାମରେ ପାଇକ ବଂଶର ନିଦର୍ଶନ ସ୍ୱରୂପ ଖଣ୍ଡାୟତ ବସତି ଅଛି । ଉତ୍କଳର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଉତ୍କଳର ପୂର୍ବଗୌରବ ପୁନଃ ପ୍ରତିଷ୍ଠା ପାଇଁ ବଙ୍ଗଦେଶ ଜୟକରି ବିଜୟର ଚିହ୍ନ ସ୍ୱରୂପ ଗଙ୍ଗା କୂଳରେ ହୁଗୁଳୀ ଜିଲ୍ଲା ଅନ୍ତର୍ଗତ ତ୍ରିବେଣୀଠାରେ ଘାଟ ଓ ଜଗନ୍ନାଥ ମନ୍ଦିର ସ୍ଥାପନ କରିଥିଲେ । ଦେଶର ଆଭ୍ୟନ୍ତରୀଣ ଶତ୍ରୁମାନେ ବାହାର ଶତ୍ରୁମାନଙ୍କ ସହିତ ଗୁପ୍ତମନ୍ତ୍ରଣା କରି କଳାପାହାଡ଼କୁ ଅଣାଇଥିଲେ । ଏହାଙ୍କ ସହିତ ଷୋଳମପୁରଠାରେ ପାଇକମାନଙ୍କର ଘୋର ଯୁଦ୍ଧ ହେଲା । ପାଇକମାନେ ଆପ୍ରାଣ ଯୁଦ୍ଧକରି ଅବଶେଷରେ ନିହତ ହେଲେ । ମୁକୁନ୍ଦଦେବ ଗଙ୍ଗା କୂଳରେ ବଙ୍ଗୀୟ ଶତ୍ରୁମାନଙ୍କ ସହିତ ଯୁଦ୍ଧରତ ଥିବାବେଳେ ଏହି ସମ୍ବାଦ ପାଇ ଏଠାକୁ ଆସି ମୂର୍ତ୍ତିମେୟ କେତେକ ପାଇକମାନଙ୍କ ସହାୟତାରେ କଳାପାହାଡ଼ର ସମ୍ମୁଖୀନ ହେଲେ । ଗୋହିରାଟିକିରିଠାରେ ଏ ଦୁହିଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ମୁକୁନ୍ଦଦେବ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଯୁଦ୍ଧକରି ଶେଷରେ ଯବନ ସେନାପତି କଳାପାହାଡ଼ ଦ୍ୱାରା ପ୍ରାଣ ହରାଇଲେ । ଏହାଙ୍କ ପରେ ଉତ୍କଳର ସ୍ୱାଧୀନତା ସୂର୍ଯ୍ୟ ଅସ୍ତମିତ ହେଲେ ।

ଏହି ଓଡ଼ିଶା ତ୍ରିକଳିଙ୍ଗରେ ବିଭକ୍ତ ହେବା ପୂର୍ବରୁ ଏହାର ବିସ୍ତୃତି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । କେଶରୀ ବଂଶୀୟ ରାଜାଙ୍କର ରାଜଧାନୀ ପଶ୍ଚିମାଞ୍ଚଳରେ ଥିବା 'ସୋନପୁର' ରାଜ୍ୟରେ ଥିଲା । ଏହାର ଉତ୍ତର ସୀମାନ୍ତ ବଙ୍ଗପ୍ରଦେଶ

ପଶ୍ଚିମ ସୀମାନ୍ତ ବିହାର, ଦକ୍ଷିଣ ସୀମାନ୍ତ ଆନ୍ଧ୍ର ଥିଲା । ଅଳ୍ପ କେତେବର୍ଷ ତଳେ ମେଦିନୀପୁରକୁ ବଙ୍ଗ ବଳପୂର୍ବକ ଦଖଲ କଲା । ଏବେ ମଧ୍ୟ ମେଦିନୀପୁରର ଲୋକମାନେ ଅନ୍ତବର୍ତ୍ତୀ ଜଗନ୍ନାଥ ଦାସଙ୍କ ଓଡ଼ିଆ ନବାକ୍ଷରୀ ଭାଗବତ ପୋଥି ପୂଜା କରନ୍ତି ଓ ମଧ୍ୟେ ମଧ୍ୟେ ଚର୍ଚ୍ଚା କରନ୍ତି ତଥା ଓଡ଼ିଆ ଭାଷା ବ୍ୟବହାର କରନ୍ତି । ଏହିପରି ୩୦ / ୩୨ ବର୍ଷ ତଳେ ପଶ୍ଚିମରେ ଥିବା ଷଡ଼େଇକଳା, ଖରସୁଆଁ, ସିଂହଭୂମ ପ୍ରଭୃତି ରାଜ୍ୟକୁ ବିହାର ଜବରଦସ୍ତି ଦଖଲ କରି ଓଡ଼ିଆ ବିଦ୍ୟାଳୟମାନ ଉଠାଇଦେଇ ହିନ୍ଦୀଭାଷା ପ୍ରଚାର କରିଅଛନ୍ତି । ଦକ୍ଷିଣରେ ବ୍ରହ୍ମପୁର ଶେଷ ସୀମାରୁ ଗୋଦାବରୀ ପର୍ଯ୍ୟନ୍ତ ଆନ୍ଧ୍ର ଦଖଲ କରିଅଛି । ୧୯୮୦ ମସିହା ଜୁଲାଇର ଶେଷ ଭାଗରେ ପାଦଗୟା, ଗୋଦାବରୀ ସ୍ନାନସାରି ଫେରିବା ବାଟରେ ସୀମାଚଳମ୍‌ର ଶିଖର ପ୍ରଦେଶରେ ଥିବା 'ନୃସିଂହନାଥ' ମନ୍ଦିର ପରିଦର୍ଶନ କରିବାର ସୁଯୋଗ ଲାଭ କଲି । ପାହାଡ଼ର ପ୍ରାୟ ଦୁଇ ମାଇଲ ଉପରେ ଏହି ପ୍ରଶସ୍ତ ମନ୍ଦିର ବିଦ୍ୟମାନ । ଏହି ମନ୍ଦିରର କାରୁକାର୍ଯ୍ୟ, କଳା, ସ୍ଥାପତ୍ୟ ଉତ୍କଳୀୟ ମନ୍ଦିରର ପୂର୍ଣ୍ଣ ସାମଞ୍ଜସ୍ୟ ରହିଅଛି ତଥା ଉତ୍କଳୀୟ ଶିଳ୍ପୀମାନଙ୍କ ଦ୍ୱାରା ଏହା ନିର୍ମିତ ହୋଇଥିବା ବିଷୟ ନିଃସନ୍ଦେହରେ କୁହାଯାଇପାରେ । ଏହି ମନ୍ଦିରର ମସୃଣ ମୁଗୁନି ପଥର ନିର୍ମିତ ବିଶାଳ ସ୍ତମ୍ଭଗୁଡ଼ିକ ପୁରୀ ମନ୍ଦିରର ନାଟ ମନ୍ଦିର ସ୍ତମ୍ଭ ସହିତ ସମାନ । ପ୍ରତ୍ୟେକ ସ୍ତମ୍ଭ ଲତା, ପତ୍ର, ପୁଷ୍ପ, ନର୍ତ୍ତକ–ନର୍ତ୍ତକୀ ନାନା ଚିତ୍ରାବଳିରେ ବିମଣ୍ଡିତ । ଚାରିକୋଣିଆ ସ୍ତମ୍ଭଗୁଡ଼ିକର ମୋଟ ପ୍ରାୟ ଅ।୦ ହାତରୁ ଊଣା ନୁହେଁ । କୋଣାର୍କ ମନ୍ଦିରର ପ୍ରତ୍ୟେକ ଶିଳାଖଣ୍ଡ ଯେପରି ଲତା, ପତ୍ରାଦିରେ ଚିତ୍ରିତ, ସେହିପରି ସ୍ତମ୍ଭଗୁଡ଼ିକର କୌଣସି ଅଂଶ ଚିତ୍ରାବଳି ଶୂନ୍ୟ ଥିବାର ଦେଖାଗଲା ନାହିଁ । କୌଣସି ଉତ୍କଳୀୟ ରାଜା ଏହାକୁ ନିର୍ମାଣ କରାଇଥିବାର ଅନୁମିତ ହେଲା । କାନ୍ଥର ବହୁ ସ୍ଥାନରେ ତେଲୁଗୁ ଅକ୍ଷରରେ ଲେଖାଥିବା ଶିଳାଲିପି ଦୃଷ୍ଟିଗୋଚର ହେଲେ ମଧ୍ୟ ସେ ଭାଷା ପଢିବାର ଅଭିଜ୍ଞତା ନଥିବାରୁ ପଢିହେଲା ନାହିଁ । କାରୁକାର୍ଯ୍ୟ ବିମଣ୍ଡିତ ମନ୍ଦିରର ଭିତର ବାହାର ଦୃଶ୍ୟ ଦେଖୁଦେଖୁ କେତେକ ସ୍ତମ୍ଭରେ ଲେଖାଥିବା ଓଡ଼ିଆ ଶିଳାଲିପି ଦୃଷ୍ଟିରେ ପଡିଲା । ସେଥିରେ ଲେଖାଥିଲା—"ଶ୍ରୀ ଶ୍ରୀ ନରସିଂହ ମହାପ୍ରଭୁଙ୍କ ପୋଖରୀକୁ ରାସ୍ତା" । ଆଉ ଗୋଟିଏ ସ୍ତମ୍ଭରେ ଲେଖାଥିଲା ଓଡ଼ିଶାର ରାଜା ସୁବର୍ଣ୍ଣ କେଶରୀ ପ୍ରଭୃତିଙ୍କର ଦାନ ମଧ୍ୟରେ "ନରସିଂହ

ମହାପ୍ରଭୁଙ୍କ ମନ୍ଦିର ନିମନ୍ତେ ଦାନ" । ଆଜି କେତେକ କରଣୀଆ ଅକ୍ଷର ବହୁଦିନର ଲେଖା ହେତୁ ମଳାଧୂଳି ଲାଗିଯାଇ ଅସ୍ପଷ୍ଟ ହୋଇଥିବାରୁ ପଡି ହେଲନାହିଁ ।

ଏ ଦୃଷ୍ଟିରୁ ଅନୁମିତ ହୁଏ, ଓଡ଼ିଶାର ସୀମା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ତେଲୁଗୁ ଭାଷାଭାଷୀ ଅଞ୍ଚଳକୁ ରାଜା ମୁକୁନ୍ଦଦେବ ଶାସନ କରୁଥିବାରୁ ତାଙ୍କୁ "ତେଲଙ୍ଗା ମୁକୁନ୍ଦଦେବ" ବୋଲି କୁହାଯାଉଥିଲା । ମୁକୁନ୍ଦଦେବଙ୍କ ପତନ ପରେ ଓଡ଼ିଶାର ପୂର୍ବଗୌରବ ଖ୍ୟାତିର ପତନ ଘଟିଲା । ଇଂରେଜମାନଙ୍କ ଶାସନ କାଳରେ ଓଡ଼ିଶା 'ଛିନ୍ନମସ୍ତା' ରୂପ ଧାରଣକଲା । ଏଣୁ, ଓଡ଼ିଶା ଅନ୍ୟାନ୍ୟ ରାଜ୍ୟ ମଧ୍ୟରେ ସୁବୃହତ୍ ରାଜ୍ୟ ଥିଲା, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

## ନୃସିଂହନାଥଙ୍କ ମୂର୍ତ୍ତି :—

ଏହି ମନ୍ଦିରକୁ ଅଳଂକୃତ କରୁଥିବା ନୃସିଂହନାଥଙ୍କ ନାମରୁ ଜଣା ଯାଉଥିଲା— ଏହି ମୂର୍ତ୍ତି ନିଶ୍ଚୟ ହିରଣ୍ୟକଶିପୁ ବିଦାରକ ନାରାୟଣଙ୍କର ନରସିଂହ ମୂର୍ତ୍ତି ହୋଇଥିବ । କିନ୍ତୁ, ତାହା ନୁହେଁ— ଏହି ମୂର୍ତ୍ତି ଏହି ଯାଜପୁରର ଯାଜ୍ଞିକବିନ୍ଧ ନୀଳକଣ୍ଠବର୍ତ୍ତୀ ତ୍ରିଲୋଚନଙ୍କ ଦକ୍ଷିଣ ଦିଗରେ ତଥା ହଂସରେଖା କୂଳରେ ଥିବା 'ତିଳସ୍ୱର୍ଣ୍ଣେଶ୍ୱର' ଶିବଙ୍କ ପରି ବିଶାଳକାୟ 'ଶିବଲିଙ୍ଗ'ରୂପ ଅଗ୍ନୀଶ୍ୱର ଲିଙ୍ଗ ସଦୃଶ ପାଣ୍ଡୁର ବର୍ଣ୍ଣ, ମସ୍ତକ ଉପରେ ଗୋଟିଏ ମୁଖଚନ୍ଦ୍ର । ଏହି ମନ୍ଦିର ପଶ୍ଚିମପାଖ କାନ୍ଥରେ ପ୍ରସ୍ତର ଖୋଦିତ ନୃସିଂହ ମୂର୍ତ୍ତି ବିଦ୍ୟମାନ ।

ଏ ମନ୍ଦିରର ଆଉ ଗୋଟିଏ ଦର୍ଶନୀୟ ସ୍ଥାନ 'ଦୋଳଗୃହ' । ଏଠାରେ ସବୁଆଡ଼େ ଦୋଳି ଝୁଲୁଥାଏ । ଈଶାନକୋଣରେ ବଡ଼ବଡ଼ ପିତ୍ତଳ-ଦୀପ ଗଛ ଉପରେ ବଡ଼ବଡ଼ ଦୀପ ଜଳୁଥାଏ । ତେଲ ପୂନାଙ୍ଗ ତେଲପରି ଜଣାଯାଉଥାଏ । ଏହି ମୂର୍ତ୍ତିରୁ ଅନୁମିତ ହୁଏ, କେଶରୀ ବଂଶୀୟ ରାଜାମାନେ ଶୈବ ଥିବାରୁ ଏଠାରେ ଏହି ଶିବମୂର୍ତ୍ତି ପ୍ରତିଷ୍ଠା କରିଅଛନ୍ତି ।

## ବ୍ରାହ୍ମ ଧର୍ମ ବା ବୈଦିକ ଧର୍ମ :—

ପ୍ରାକ୍ ବୈଦିକ ଯୁଗ ଶ୍ରୁତିଶାସ୍ତ୍ର ଅନୁସାରେ ସମସ୍ତ ଯାଗ ଯଜ୍ଞାଦି ଅନୁଷ୍ଠାନମାନ କରା ଯାଉଥିଲା । ଏସବୁ ବୈଦିକ କର୍ମପାଇଁ ଅତ୍ୟନ୍ତ କଠୋର ନିୟମମାନ ଥିଲା । ଉଦାହରଣ ସ୍ୱରୂପ, ବ୍ରାହ୍ମଣ ଅହ୍ନିକ ଧ୍ୟାନସନ୍ଧ୍ୟାଦି ବୈଦିକ କାର୍ଯ୍ୟ କରୁଥିବା ବେଳେ ଶୂଦ୍ରର ଛାୟାପାତକୁ ଅପବିତ୍ର ମନେକରି ସ୍ଥାନ ତ୍ୟାଗ କରୁଥିଲେ ବା ବିଷ୍ଣୁ ସ୍ମରଣ ପୂର୍ବକ ଷଡ଼ାଚମନ ଦ୍ୱାରା ଦେହ ଶୁଦ୍ଧି କରି ପୁନଃ କାର୍ଯ୍ୟଟିକୁ ମୂଳରୁ ଆରମ୍ଭ କରୁଥିଲେ । ନିର୍ଜନରେ ଉପାସନାଦି କରିବା ନିମିତ୍ତ ଭାରତ ଆର୍ଯ୍ୟ ଋଷି ମୁନିମାନେ ବ୍ୟାଘ୍ର ଭଲ୍ଲୁକସଙ୍କୁଳ ଅରଣ୍ୟାଙ୍କ ମଧ୍ୟରେ ଆଶ୍ରମ ସ୍ଥାପନ କରୁଥିଲେ । ଆହାର ବିହାରାଦି କ୍ରିୟା ନିର୍ଜନରେ ଅର୍ଥାତ୍ ଲୋକଚକ୍ଷୁ ଅଗୋଚରରେ ସମ୍ପାଦନ କରିବା ଶାସ୍ତ୍ର ସମ୍ମତ ; ଏଣୁ ମହର୍ଷି ଚରକ ଆୟୁର୍ବେଦ ଶାସ୍ତ୍ରରେ କହିଛନ୍ତି—"ଆହାର ନିର୍ହାର ବିହାର ଯୋଗାଃ ସଦୈବ ସଦ୍‌ଭିର୍ବିଜନେ ବିଧେୟାଃ" ଏଣୁ ବିଭିନ୍ନ ଧର୍ମର ଉପାସନା ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ମଧ୍ୟ କରାଯାଇଅଛି । ଯେପରି ହିନ୍ଦୁମାନଙ୍କର ଦେବ ଦେବୀ ମନ୍ଦିର, ସେହିପରି ମହମ୍ମଦ ଧର୍ମର ଉପାସନା ପାଇଁ ମସଜିଦ୍, ଖ୍ରୀଷ୍ଟଧର୍ମାବଲମ୍ବିମାନଙ୍କ ପାଇଁ ଗୀର୍ଜା, ବୌଦ୍ଧଧର୍ମ ପାଇଁ ବୌଦ୍ଧମଠ ବା ବୌଦ୍ଧ ବିହାର ଗୁମ୍ଫାମାନ ପ୍ରତିଷ୍ଠିତ ହୋଇଅଛି । ଏହାର କାରଣ ପବିତ୍ର ବାତାବରଣ ମଧ୍ୟରେ ଶୁଦ୍ଧପୂତ ମନରେ ହସ୍ତପାଦାଦି ପ୍ରକ୍ଷାଳନ ପୂର୍ବକ ଧୌତ ବସ୍ତ୍ରାଦି ପରିଧାନ କରି ଜଗଦୀଶ୍ୱରଙ୍କୁ ପ୍ରାର୍ଥନା କରିବା ବିଧିସଙ୍ଗତ । ଧର୍ମଭିନ୍ନ ହେଲେ ମଧ୍ୟ "ନୃଣାମେକୋ ଗମ୍ୟସ୍ତ୍ୱମସି ପୟସା ମର୍ଣ୍ଣବଇବ" ଅର୍ଥାତ୍ ଜଳସ୍ରୋତ ଯେପରି ଭିନ୍ନ ଭିନ୍ନ ଗତିପଥରେ ସମୁଦ୍ର ସହିତ ମିଳିତ ହୁଏ, ସେହିପରି ଲୋକମାନେ ଭିନ୍ନ ଭିନ୍ନ ଧର୍ମ ମାର୍ଗରେ ସେହି ପରମାତ୍ମାଙ୍କୁ ଲାଭ କରନ୍ତି ।

ଆହୁରି ମଧ୍ୟ ଯଜ୍ଞାଦି ଅନୁଷ୍ଠାନ ପାଇଁ ଯେଉଁ ଅକ୍ଷତ ପ୍ରଭୃତିର ଆବଶ୍ୟକ ହେଉଥିଲା, ତାହାର ପ୍ରସ୍ତୁତି ପାଇଁ ବିଧି ବା ନିୟମମାନ ଥିଲା । ଯଥା—ବ୍ରାହ୍ମଣ ବ୍ରାହ୍ମଣୀ ହବିଷାନ୍ନ ଭୋଜନ ପୂର୍ବକ ଉପବାସ ରହି ଉଦୂଖଳ ମୂଷଳ (ଆଜିକାଲି ଯାହାକୁ ହେମାମ୍‌ଦସ୍ତା କହନ୍ତି) ସାହାଯ୍ୟରେ ଶୁକ୍ଳ ଧାନରୁ କ୍ଷତ ନ ହୋଇଥିବା ଅକ୍ଷତ ତଣ୍ଡୁଳ ପ୍ରସ୍ତୁତ କରୁଥିଲେ । କ୍ଷତ ବା

ଝର୍ଙ୍କି ଯାଇଥିବା ଗୁଡ଼ଲକୁ . ବାଦ୍ ଦିଆ ଯାଉଥିଲା । ଏହାପର ସମସ୍ତ ଯଜ୍ଞୋପକରଣ କୁଶସମିଧାଦି ଓ ସ୍ନାନଯୋଗ୍ୟ ଜଳ ପ୍ରଭୃତି ସଂଗ୍ରହ କରା ଯାଉଥିଲା । କ୍ରମେ କ୍ରମେ ଏହା କଷ୍ଟସାଧ୍ୟ ତଥା ଦୁଷ୍ପ୍ରାପ୍ୟ ହେବାରୁ ବୈଦିକ କର୍ମପ୍ରତି ଲୋକମାନଙ୍କର ବିତୃଷ୍ଣା ଭାବ ଦେଖାଗଲା । ଏବେମଧ୍ୟ ପ୍ରାଚ୍ୟ ସଂସ୍କୃତିର ସ୍ମାରକ ସ୍ୱରୂପ ଯାଗଯଜ୍ଞାଦି ପ୍ରତିଷ୍ଠା ବୃଷୋତ୍ସର୍ଗ ପ୍ରଭୃତି ଅନୁଷ୍ଠାନ ମାନଙ୍କରେ ଉଦୂଖଳ ମୂଷଳ ସୂର୍ପ (କୁଲା) ଅର୍ଦ୍ଧପକ୍ୱ ପୁରୋଡ଼ାସ ପାଇଁ ଚୁଲ୍ଲୀ ପ୍ରଭୃତିର ଆବଶ୍ୟକତା ରହିଅଛି । ଅବଶ୍ୟ ସେ କାଳର ଅକ୍ଷତ ଆଜି ନାହିଁ କି ଅର୍ଦ୍ଧ ପରିପକ୍ୱ ଚରୁ ପୁରୋଡ଼ାଶ ପ୍ରଭୃତି ନାହିଁ, କେବଳ ପୂର୍ବ ସ୍ମୃତି ରକ୍ଷାପାଇଁ ନାମତଃ ବିଧି ପାଳନ କରାଯାଉଛି ।

ଏହାଛଡ଼ା ଶାସ୍ତ୍ରବିଧି ଅନୁସାରେ ଯଜ୍ଞାଦିରେ ପଶୁ ବଧ କରାଯାଉଥିଲା । ଶ୍ରୁତିରେ ଉଲ୍ଲେଖ ଅଛି—

"ସପ୍ତାସ୍ୟାସନ୍ ପରିଧୟ ସ୍ତ୍ରିଃ ସପ୍ତସମିଧଃ କୃତାଃ ।
ଦେବା ଯଦ୍‌ଯଜ୍ଞଂ ତନ୍ୱାନା ଅବଧ୍ନନ୍ ପୁରୁଷଂ ପଶୁମ୍ ॥" ପୁରୁଷସୂକ୍ତ

ଏହି ଯଜ୍ଞ-ପୁରୁଷର ସାତୋଟି ସମୁଦ୍ର ପରିଧି ବା ପରିବେଷ୍ଟନ ହୋଇଥିଲା । ଗାୟତ୍ରୀ ପ୍ରଭୃତି ସାତୋଟି ଛନ୍ଦ ସାତୋଟି ଉପ-ଛନ୍ଦ ଭୂର୍ଭୁବଃସ୍ୱଃ ପ୍ରଭୃତି ବ୍ୟାହୃତି ଏପରି ଏକୋଇଶ ଖଣ୍ଡି ସମିଧ ହେଲା । ଯେଉଁ ଯଜ୍ଞକୁ ଦେବତା ଋଷିମାନେ ବିସ୍ତାର କଲେ ସେହି ଯଜ୍ଞରେ ପଶୁ ରୂପକ ଅର୍ଥାତ୍ ପଶ୍ୱାକୃତିଯୁକ୍ତ ପୁରୁଷମାନଙ୍କୁ ବଧକଲେ ବା ବଳି ରୂପରେ ପ୍ରଦାନ କଲେ ।

ଆହୁରି ମଧ୍ୟ "ଯଜ୍ଞାର୍ଥେ ପଶବଃ ସୃଷ୍ଟାଃ ସ୍ୱୟମେବ ସ୍ୱୟମ୍ଭୁବା ।
ଅତସ୍ତ୍ୱାଂ ଘାତୟିଷ୍ୟାମି ତସ୍ମାତ୍ ଯଜ୍ଞେ ବଧୋଽବଧଃ ॥"

ଅର୍ଥାତ୍ ଭଗବାନ ପ୍ରଜାପତି ଯଜ୍ଞାଦି ସାଧନ ପାଇଁ ଗୁଣ ମେଷାଦି ପଶୁମାନଙ୍କୁ ସୃଷ୍ଟି କଲେ । ଏଣୁ ଯଜ୍ଞ କର୍ମରେ ପଶୁ ବଧକୁ ପ୍ରକୃତ ବଧ ବା ହିଂସା କୁହାଯାଉ ନଥିବାରୁ ପଶୁ ବଧକୁ ପ୍ରଶ୍ରୟ ଦିଆ ଯାଇଅଛି ।
ଶ୍ରୀମଦ୍ ଭାଗବତରେ ବର୍ଣ୍ଣିତ ଅଛି—

"କେବଳ ଯଜ୍ଞେ ପଶୁବଧ ଅନ୍ୟତ୍ର ବଧଟି ପ୍ରମାଦ ।"

ଏହି ବିଧିମାନୁଯାୟୀ ଯଜ୍ଞରେ କେବଳ ଛାଗ, ମେଷ, ମହିଷ, ଅଶ୍ୱାଦିଙ୍କୁ ବୈଦିକ ମନ୍ତ୍ରରେ ପ୍ରୋକ୍ଷଣ କରି ବଳି ରୂପରେ ଉତ୍ସର୍ଗ କରା ଯାଉଅଛି । ଏତଦ୍‌ଭିନ୍ନ ଜିହ୍ୱାଲାଳସାର ପରିତୃପ୍ତି ପାଇଁ ଜୀବହତ୍ୟାକୁ 'ହିଂସା' ମନେକରି ଘୃଣା କରୁଥିଲେ ଓ ବର୍ଜନ ମଧ୍ୟ କରୁଥିଲେ । କାଳକ୍ରମେ ଏହି ଯଜ୍ଞୀୟ ପଶୁବଧ ଆସି ସାଧାରଣ ପଶୁବଧରେ ପରିଣତ ହେଲା । ଲୋକେ ବୈଦିକ ଆଚାର ପଦ୍ଧତିରୁ ଓହରି ଆସିଲେ । ଏହି ସମୟରେ ବୌଦ୍ଧ ଯୁଗର ଆବିର୍ଭାବ ହେଲା । ସ୍ୱୟଂ ଗୌତମ ବୁଦ୍ଧ ମଧ୍ୟ ଦୟାର୍ଦ୍ର ହୃଦୟରେ ଅହିଂସା ଧର୍ମର ବିଜୟ ବୈଜୟନ୍ତୀ ସାରା ଭାରତରେ କାହିଁକି, ଭାରତ ବାହାର ଅନ୍ୟାନ୍ୟ ଦେଶରେ ମଧ୍ୟ ଉଡ଼ାଇଲେ, ଯେଉଁ ବୁଦ୍ଧଙ୍କୁ ସ୍ତୁତିକରି ପରମ ବୈଷ୍ଣବାଗ୍ରଣୀ ଜୟଦେବ ସ୍ୱରଚିତ ଗୀତ ଗୋବିନ୍ଦ କାବ୍ୟରେ ଗାଇଛନ୍ତି —

''ନିନ୍ଦସି ଯଜ୍ଞବିଧେ ରହହଶ୍ରୁତିଜାତଂ, ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ! ଧୃତ ବୁଦ୍ଧଶରୀର ଜୟ ଜଗଦୀଶ ହରେ ।''

ଏହି ସମୟରେ ବୈଦିକ ଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଟିକିଏ ସଂଘର୍ଷ ସୃଷ୍ଟି ହେଲା । ଉତ୍କଳର ଶୈବଧର୍ମାବଲମ୍ବୀ ରାଜାମାନଙ୍କ ମଧ୍ୟରେ ଅନଙ୍ଗ ଭୀମଦେବ, ଧର୍ମ ପରାୟଣ ଯଯାତି କେଶରୀ ଅନ୍ୟତମ । ଯଯାତି-କେଶରୀ ହରିହର ଶକ୍ତି ସମନ୍ୱିତ ଅସଂଖ୍ୟ ଶିବଲିଙ୍ଗରେ ପରିପୂର୍ଣ୍ଣ ହୋଇ-ଥିବା ପୁଣ୍ୟତୋୟା ବୈତରଣୀ ନଦୀଦ୍ୱାରା ପରିବେଷ୍ଟିତ, ବହୁତୀର୍ଥ ସମ୍ବଳିତ ତଥା ଦେବଦେବୀ ରେଖାବଳି ବିରାଜିତ ଏହି 'ଅବିମୁକ୍ତ' ବିରଜାଃ କ୍ଷେତ୍ରକୁ ପ୍ରସିଦ୍ଧ ଶକ୍ତି ପୀଠରେ ପରିଣତ ହୋଇଥିବାର ଦେଖି ବେଦବେଦାଙ୍ଗ ପାରଗ, ବୈଦିକ ତାନ୍ତ୍ରିକ ଯାଗଯଜ୍ଞାଦି କର୍ମ କୁଶଳ ଋକ୍‌ବେଦରେ ଦୀକ୍ଷିତ ଦଶ ସହସ୍ର ବ୍ରାହ୍ମଣ କାନ୍ୟକୁବ୍ଜ (କନୌଜ)ରୁ ଆଣାଇ ସେହିମାନଙ୍କ ଦ୍ୱାରା ବୈତରଣୀ ନଦୀ କୂଳରେ ଦଶାଶ୍ୱମେଧ ନାମକ ମହାଯଜ୍ଞାନୁଷ୍ଠାନ କରାଇ-ଥିଲେ । ଏହି ଯଜ୍ଞରେ ଦଶଗୋଟି ଅଶ୍ୱ ପୂର୍ଣ୍ଣାହୁତି ସମୟରେ ଅଜସ୍ର ଘୃତାହୁତି ଦ୍ୱାରା ପ୍ରଜ୍ୱଳିତ ଅଗ୍ନି କୁଣ୍ଡରେ ଅଗ୍ନିଦେବଙ୍କୁ ଅର୍ପଣ କରା ଯାଇଥିଲା । ଏହି ପରି ଦଶଗୋଟି ଅଶ୍ୱମେଧ ବା ଅଶ୍ୱାହୁତି ରୂପକ ଯଜ୍ଞ କରାଯାଇ ଥିବାରୁ ଏହାକୁ 'ଦଶାଶ୍ୱମେଧ' କୁହାଯାଉଅଛି ।

ପ୍ରାଗ୍ ବୈଦିକ କାଳରେ ଗୋମେଧ (ଗବାଲମ୍ଭ) ଇନ୍ଦ୍ରଦେବଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞ, ଚର୍ମଣ୍ୱତୀ (ଚମ୍ବଲ) ନଦୀ ଯାହାର ସାକ୍ଷ୍ୟ ପ୍ରଦାନ କରେ ।

## ଚର୍ମଣ୍ବତୀ ନଦୀର ଇତିବୃତ୍ତ :—

ଏକଦା କାମଧେନୁ ସୁରଭୀଙ୍କର କନ୍ୟାବୃନ୍ଦ ସ୍ୱର୍ଗପ୍ରାପ୍ତି କାମନାରେ ସୁରଭୀଙ୍କୁ ଅନୁରୋଧ କରିବାରୁ ସୁରଭୀ କହିଲେ—ତୁମ୍ଭେମାନେ ଧର୍ମ ପରାୟଣ ରାଜା ଇନ୍ଦ୍ରଦେବଙ୍କ ନିକଟକୁ ଯାଇ ଯଜ୍ଞରେ ଆତ୍ମବଳି ଦେବାକୁ ପ୍ରାର୍ଥନା କର । ଏହାଙ୍କ ଆଦେଶରେ ଧେନୁ ସମୂହ ରାଜାଙ୍କୁ ଅନୁରୋଧ କରନ୍ତେ ରାଜା ଇନ୍ଦ୍ରଦେବ ଗୋମେଧ (ଗବାଲମ୍ଭ) ଯଜ୍ଞକରି ଅସଂଖ୍ୟ ଗୋହତ୍ୟା କରିବାରୁ ସେମାନଙ୍କ ଚର୍ମନିଃସୃତ ରକ୍ତରେ ଗୋଟିଏ ନଦୀ ପ୍ରବାହିତ ହେଲା । ଏହି ନଦୀର ନାମ ଚର୍ମଣ୍ୱତୀ ଅଟେ । ଏହା ଅବନ୍ତୀ ନିକଟରେ ।

ଏହିପରି ନରମେଧ ପ୍ରଭୃତି ଯଜ୍ଞ ସମ୍ପାଦିତ ହେଉ ଥିବାର ପ୍ରମାଣ ପୁରାଣମାନଙ୍କରୁ ମିଳେ । ଏ ପ୍ରଥା କ୍ରମେ କଳିଯୁଗାରମ୍ଭରେ ନିଷିଦ୍ଧ କରା-ଗଲା । ତେଣୁ କୁହାଯାଇଛି—

"ଅଶ୍ୱମେଧଂ ଗବାଲମ୍ଭଂ ସନ୍ନ୍ୟାସଂ ପଲପୈତୃକମ୍ ।
ଦେବରେଣ ସୁତୋତ୍ପତ୍ତିଂ କଳୌ ପଞ୍ଚ ବିବର୍ଜୟେତ୍ ॥" ମନୁ

ଅର୍ଥାତ୍ କଳିଯୁଗରେ ଅଶ୍ୱମେଧ, ଗୋମେଧ, ସନ୍ନ୍ୟାସଧର୍ମ, ମାଂସ-ଦ୍ୱାରା ପିତୃଶ୍ରାଦ୍ଧ ତଥା ସ୍ୱାମୀ କ୍ଳୀବଥିଲେ ଦେବର (ଦିଅର)ଦ୍ୱାରା ବଂଶ-ରକ୍ଷାର୍ଥ ପୁତ୍ରୋତ୍ପାଦନ କରିବା ପାଞ୍ଚୋଟି କର୍ମ ସମ୍ପୂର୍ଣ୍ଣ ବର୍ଜନ କରାଗଲା ।

ଏହି ଅଶ୍ୱମେଧ ଯଜ୍ଞକୁ ଆଧ୍ୟାତ୍ମିକ ବା ତାତ୍ତ୍ୱିକ ଦୃଷ୍ଟିରେ ବିଚାର କଲେ ଦେଖାଯାଏ, ବେଦର ଶାଖା 'ଶତପଥ' ନାମକ ବ୍ରାହ୍ମଣ ଗ୍ରନ୍ଥରେ 'ଅଶ୍ୱମେଧ'ର ଅର୍ଥ — 'ଅଶ୍ୱୋ ବୈ ରାଷ୍ଟ୍ରମ୍' ଶତପଥର—୧୩ । ୧୭ । ୩ ମନ୍ତ୍ର । 'ଅଗ୍ନିର୍ବାଅଶ୍ୱଃ', 'ଆଜ୍ୟଂ ମେଧଃ' ଅର୍ଥାତ୍ ରାଷ୍ଟ୍ରର ବା ରାଜ୍ୟର

ଅର୍ଥ 'ଅଶ୍ୱ' । କେହି କେହି ଅଗ୍ନିକୁ 'ଅଶ୍ୱ' ବୋଲି କହନ୍ତି । 'ଆଜ୍ୟଂ' ବା ଘୃତକୁ ମେଧ କୁହାଯାଏ । ସମଗ୍ର ରାଜ୍ୟର ବା ରାଷ୍ଟ୍ରର ଅର୍ଥାତ୍ ପ୍ରଜାବର୍ଗଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ବାଣିଜ୍ୟ ଇତ୍ୟାଦି ପ୍ରଭୃତି ସର୍ବାଙ୍ଗୀନ ଉନ୍ନତି ବିଧାନ ପାଇଁ ରାଜାମାନେ ରାଜ୍ୟରେ ଏକଛତ୍ରାଧିପତ୍ୟ ବିସ୍ତାର କରିବା ପାଇଁ ଅଗ୍ନି ମୁଖରେ ଶାସ୍ତ୍ରୀୟ ବିଧିରେ ବହୁଳ ଭାବରେ ଘୃତାହୁତି ଦେଇ "ଅଗ୍ନିମୁଖା ବୈ ଦେବାଃ" ମନ୍ତ୍ରରେ ଦେବତାମାନଙ୍କୁ ସନ୍ତୁଷ୍ଟ କରିବାର ଅର୍ଥ 'ଅଶ୍ୱ-ମେଧ' । ଦେବତାଙ୍କୁ ଯଜ୍ଞାନଳରେ ଘୃତାହୁତି ଓ ପୁରୋଡ଼ାଶ ପ୍ରଭୃତି ଦାନକଲେ କି ଫଳ ବା ଉନ୍ନତି ସାଧିତ ହୁଏ, ତାହା ଗୀତାରେ ବର୍ଣ୍ଣିତ ଅଛି—

"ଯଜ୍ଞାଦ୍ ଭବତି ପର୍ଜନ୍ୟଃ ପର୍ଜନ୍ୟାଦନ୍ନ ସମ୍ଭବଃ ।
ଅନ୍ନାଦ୍ ଭବନ୍ତି ଭୂତାନି ଯଜ୍ଞଃ କର୍ମସମୁଦ୍ଭବଃ ॥" ୩ । ୪

ଅର୍ଥାତ୍ ବିଧି ପ୍ରତିପାଦିତ ପ୍ରଜ୍ୱଳିତ ଅଗ୍ନିରେ ମନ୍ତ୍ରପୂତ ଚରୁ ପୁରୋଡ଼ାଶ ପ୍ରଭୃତି ହବନୀୟ ପଦାର୍ଥ ସହିତ ଘୃତାହୁତି ଦାନକଲେ ଘୃତାଦି ପଦାର୍ଥରେ ଅଣୁ ମିଶ୍ରିତ ହୋଇଥିବାରୁ ଅଧିକ ଧୂମ୍ରକର ଯଜ୍ଞଜନିତ ହବିର୍ଧୂମ ଦ୍ୱାରା 'ପର୍ଜନ୍ୟ' ଅର୍ଥାତ୍ ଧୂମଜ୍ୟୋତିଃ ସଳିଳ ମରୁତ୍ ସମ୍ବଳିତ ମେଘ ସୃଷ୍ଟି ହୁଏ । 'କାଲେ ବର୍ଷତୁ ପର୍ଜନ୍ୟଃ' ଏହିପରି ସ୍ତୁତି କରିବା ଦ୍ୱାରା ଯଥାସମୟରେ ସୁବୃଷ୍ଟି ହୋଇ ପୃଥିବୀରୁ ଧାନ୍ୟ, ବ୍ରୀହି, ମୁଦ୍ଗ, ଯବ, ଗୋଧୂମାଦି ଶସ୍ୟ ବହୁଳ ଭାବରେ ଉତ୍ପନ୍ନ ହୁଏ । ଏହି ଶସ୍ୟଜାତ ଅନ୍ନଦ୍ୱାରା ପ୍ରାଣିମାନଙ୍କର ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା କ୍ରମାନ୍ୱୟରେ ପରି-ପକ୍ୱ ହୋଇ ଶୁକ୍ରରେ ପରିଣତ ହୁଏ । ସ୍ତ୍ରୀ ପୁରୁଷଙ୍କର ଅନ୍ନଜାତ ଶୋଣିତ ଶୁକ୍ରଦ୍ୱାରା ସୁସନ୍ତାନ ଜାତ ହୁଅନ୍ତି । ଏଣୁ ଯଜ୍ଞ ହିଁ ସର୍ବକର୍ମର ସାଧକ ଓ ପରିପୂରକ । ପୁନଶ୍ଚ—

"ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟକ୍ ଆଦିତ୍ୟ ମୁପତିଷ୍ଠତେ ।
ଆଦିତ୍ୟା ଜ୍ଜାୟତେ ବୃଷ୍ଟିଃ ବୃଷ୍ଟେରନ୍ନଂ ତତଃ ପ୍ରଜା ॥" ମନୁ

ଅର୍ଥାତ୍—ଅଗ୍ନିରେ ମନ୍ତ୍ରପୂତ ଘୃତାହୁତି ଦାନକଲେ ତାହା ଉତ୍ତମ ରୂପେ ଆଦିତ୍ୟ ଅର୍ଥାତ୍ ସୂର୍ଯ୍ୟଙ୍କଠାରେ ପ୍ରଥମେ ପ୍ରବେଶ କରେ । ଏହି

ଆଦିତ୍ୟଙ୍କର ତେଜରେ ଜଳ ବାଷ୍ପାକାରରେ ପରିଣତ ହୋଇ ଆକାଶରେ ମେଘ ଜାତହୁଏ । ଏହି ମେଘରୁ ବୃଷ୍ଟି, ବୃଷ୍ଟିରୁ ଧାନ୍ୟ, ଯବ, ଗୋଧୂମାଦି ଶସ୍ୟଜାତ ଖାଦ୍ୟ ଜାତହୁଏ, ଏହି ଖାଦ୍ୟଦ୍ୱାରା ଜୀବଜଗତ ପରିପୁଷ୍ଟ ହୁଅନ୍ତି ।

"ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ ।
ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ ॥"

(ଗୀତା ୩ । ୧୧)

ଅର୍ଥାତ୍ ଯଜ୍ଞରେ ହବିର୍ଭାଗ ଦ୍ୱାରା ଇନ୍ଦ୍ରାଦି ଦେବତାମାନଙ୍କୁ ସନ୍ତୁଷ୍ଟ କଲେ ସେମାନେ ଯଥା ସମୟରେ ବୃଷ୍ଟିଦାନ କରି ପୃଥିବୀକୁ ଶସ୍ୟଶାଳିନୀ କରନ୍ତି । ଏହିପରି ପରସ୍ପର ପରସ୍ପରକୁ ଚିନ୍ତାକଲେ ଅର୍ଥାତ୍ ଯଜ୍ଞଦ୍ୱାରା ଦେବତାଙ୍କୁ ମନ୍ତ୍ର ପ୍ରଭୃତିରେ ଆହ୍ୱାନ ପୂର୍ବକ ସ୍ମରଣକଲେ ସେମାନେ ମର୍ତ୍ତ୍ୟ-ବାସୀଙ୍କର ମନୋଭାବ ଜାଣି ସେମାନଙ୍କର କାମନା ପରିପୂର୍ତ୍ତି କରନ୍ତି । ଏଣୁ ଜଗତର ଅଶେଷ କଲ୍ୟାଣ ସାଧିତ ହୁଏ ତଥା ସର୍ବାଙ୍ଗୀନ ଉନ୍ନତି ଘଟେ । ଏଣୁ ପୂର୍ବାଚାର୍ଯ୍ୟମାନେ ଯଜ୍ଞର ଗୁରୁତ୍ୱ ବହୁଳ ଭାବରେ ବର୍ଣ୍ଣନା କରି ଯାଇଅଛନ୍ତି । ଏହି ଯଜ୍ଞଦ୍ୱାରା ବହିର୍ଜଗତ ଓ ଅନ୍ତର୍ଜଗତର ବିକାଶ ହୁଏ ।

ଏହିପରି ରାଷ୍ଟ୍ରର ମଙ୍ଗଳ ପାଇଁ ତଥା ଏଠାରେ ପ୍ରତିଷ୍ଠିତ ରାଜ-ଧାମର ପ୍ରତିଷ୍ଠାପାଇଁ ଯଯାତିକେଶରୀ ଏତାଦୃଶ ଦଶୋଟି ଅଶ୍ୱମେଧ ଯଜ୍ଞ କରିବା ଅସମୀଚୀନ ନୁହେଁ ।

## ଗୋମେଧର ତାତ୍ତ୍ୱିକ ଅର୍ଥ :—

'ଗୋ' ଅର୍ଥାତ୍ ଇନ୍ଦ୍ରିୟଗଣ, ଏମାନଙ୍କୁ ମେଧ କରିବା, ଅର୍ଥାତ୍ ଯଜ୍ଞକରିବା ବା ଆୟତ୍ତ କରିବା । ଯେଉଁମାନେ କର୍ମେନ୍ଦ୍ରିୟ—ବାକ୍, ପାଣି ପାଦ, ପାୟୁ (ମଳଦ୍ୱାର) ଉପସ୍ଥ (ଜନନେନ୍ଦ୍ରିୟ) ଏହି ପାଞ୍ଚୋଟିକୁ, ତଥା ଜ୍ଞାନେନ୍ଦ୍ରିୟ ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା ଓ ଘ୍ରାଣ ଏହି ପାଞ୍ଚୋଟିକୁ, ଅର୍ଥାତ୍ ଦଶେନ୍ଦ୍ରିୟଙ୍କୁ ଓ ଏମାନଙ୍କର ନିୟନ୍ତା ମନ, ଏହିପରି ଏକାଦଶ ଇନ୍ଦ୍ରିୟଙ୍କୁ ଆୟତ୍ତ ବା ସଂଯମ କରନ୍ତି ସେମାନେ ଗୋମେଧ ବା 'ଗୋ' ଯଜ୍ଞ କରନ୍ତି ।

## ନରମେଧ :—

ଅନ୍ତ୍ୟେଷ୍ଟି କ୍ରିୟା ମୃତ୍ୟୁପରେ ବୈଦିକ ମତରେ ପ୍ରେତଶୁଦ୍ଧି ପାଇଁ ଯେଉଁ କର୍ମ କରାଯାଏ ତାହାର ନାମ ନରମେଧ ବା ନରଯଜ୍ଞ । ଏହା ମହାମନୀଷୀ ଯୋଗାଧିରୂଢ଼ ବ୍ୟକ୍ତିମାନଙ୍କର ଯୌଗିକ ବା ତାନ୍ତ୍ରିକ ଅର୍ଥ । ଏଣୁ ପ୍ରତ୍ୟେକ ବିଷୟରେ ସାମାଜିକ ଓ ତାନ୍ତ୍ରିକ ବା ଆଧ୍ୟାତ୍ମିକ ଅର୍ଥ ଅଛି ।

ଯଜ୍ଞ ଶେଷରେ ରାଜା ଯଯାତିକେଶରୀ ଆମନ୍ତ୍ରିତ ବ୍ରାହ୍ମଣମାନଙ୍କୁ ଯଥାବିଧି ଦକ୍ଷିଣା "ଦାନସ୍ୟ ଦକ୍ଷିଣା ପତ୍ନୀ ବା ବିନା ଦକ୍ଷିଣୟା ଦେବ ଫଳଂ ତେ ବନ୍ଧ୍ୟ ବୃକ୍ଷବତ୍" ନ୍ୟାୟରେ ଜୀବିକା ନିର୍ବାହ ପାଇଁ ବୃତ୍ତିବାଡ଼ି ଖଞ୍ଜିଦେଇ ଏହି କ୍ଷେତ୍ରର ବିଭିନ୍ନସ୍ଥାନରେ ଗୋଟିଏ ଗୋଟିଏ ଶାସନ ପ୍ରତିଷ୍ଠା କରି ରଖାଇଲେ । ଏମାନେ ନିତ୍ୟ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ ଏହି ଷଟ୍‌କର୍ମ ନିରତ ହୋଇ କାଳ ଯାପନ କରିବାକୁ ଲାଗିଲେ । କ୍ରମେ ଏମାନେ କଳିଯୁଗର ପ୍ରାଦୁର୍ଭାବରେ ବୈଦିକ କର୍ମ ସମ୍ପାଦନ କରିବା କଷ୍ଟସାଧ୍ୟ ମନେକରି 'କଳୌ ତନ୍ତ୍ରଂ ପ୍ରଶସ୍ୟତେ' ମତ ଅନୁସାରେ ତନ୍ତ୍ରୋକ୍ତ ବିଧି ବିଧାନରେ ସମସ୍ତ ବୈଦିକ କର୍ମ ସମ୍ପାଦନ କଲେ । କାରଣ

"କଳିକଳ୍ମଷଦୀନାନାଂ ଦ୍ୱିଜାତୀନାଂ ସୁରେଶ୍ୱରି ।
ମେଧ୍ୟାମେଧ୍ୟ ବିଚାରାଣାଂ ନ ଶୁଦ୍ଧିଃ ଶ୍ରୌତକର୍ମଣି ॥" (ତନ୍ତ୍ରସାର)

ଅର୍ଥାତ୍— କଳିଯୁଗ ଦୋଷରେ ଦୀନ ବ୍ରାହ୍ମଣ କ୍ଷତ୍ରିୟାଦିଙ୍କର ପବିତ୍ର ଅପବିତ୍ରର ବିଚାର ଭଲ୍ପବ ନାହିଁ । ସୁତରାଂ ବେଦବିହିତ କର୍ମଦ୍ୱାରା ସେମାନେ କୌଣସି ପ୍ରକାର ସିଦ୍ଧିଲାଭ କରିପାରିବେ ନାହିଁ ।

"ବିନା ଆଗମମାର୍ଗେଣ କଳୌ ନାସ୍ତି ଗତିଃ ପ୍ରିୟେ ।
ଆଗମୋକ୍ତ ବିଧାନେନ କଳୌ ଦେବାନ୍ ଯଜେତ୍ ସୁଧୀଃ ॥"
(ତନ୍ତ୍ରସାର)

ତନ୍ତ୍ରଶାସ୍ତ୍ରର ବକ୍ତା ସଦାଶିବ ପାର୍ବତୀଙ୍କୁ କହିଲେ—ହେ ଦେବି ! କଳିଯୁଗରେ ଆଗମ ଅର୍ଥାତ୍ ତନ୍ତ୍ର ପଥ ବ୍ୟତୀତ ମୁକ୍ତି ଲାଭର ଅନ୍ୟ ପନ୍ଥା

ନାହିଁ । ମୁଁ ବେଦ, ସ୍ମୃତି ତଥା ପୁରାଣମାନଙ୍କରେ କହୁଛି, କଳିଯୁଗର ସାଧକମାନେ ତନ୍ତ୍ରୋକ୍ତ ବିଧାନରେ ଅଭୀଷ୍ଟ ଦେବଦେବୀଙ୍କୁ ପୂଜା ଆରାଧନା କରିବା ଉଚିତ ।

"କଲୌ ତନ୍ତ୍ରୋଦିତା ମନ୍ତ୍ରାଃ ସିଦ୍ଧାସ୍ତୂର୍ଣ୍ଣ ଫଳପ୍ରଦାଃ ।
ଶାସ୍ତାଃ ସର୍ବେଷୁ କାର୍ଯ୍ୟେଷୁ ଜପଯଜ୍ଞ କ୍ରିୟାଦିଷୁ ॥" ତନ୍ତ୍ରସାର

ଅର୍ଥାତ୍ କଳିଯୁଗର ବୈଦିକ ମନ୍ତ୍ର ବିଷହୀନ ସର୍ପ ସଦୃଶ । ସତ୍ୟ ତ୍ରେତା ଓ ଦ୍ୱାପର ଯୁଗରେ ଯେଉଁ ବୈଦିକ ମନ୍ତ୍ର ସଫଳ ହେଉଥିଲା, ବର୍ତ୍ତମାନ ତାହା ମୃତପ୍ରାୟ । ଏଣୁ କଳିଯୁଗରେ ତନ୍ତ୍ରୋକ୍ତ ମନ୍ତ୍ରଦ୍ୱାରା ସମସ୍ତ ଜପ ଯଜ୍ଞାଦି କର୍ମ ଆଶୁ ଫଳପ୍ରଦ ।

"କଳାବନ୍ୟୋଦିତୈର୍ମାର୍ଗୈଃ ସିଦ୍ଧିମିଚ୍ଛତି ଯୋ ନରଃ ।
ତୃଷିତୋ ଜାହ୍ନବୀତୀରେ କୂପଂ ଖନତି ଦୁର୍ମତିଃ ॥" ତନ୍ତ୍ରସାର

ଯେଉଁ ବ୍ୟକ୍ତି କଳିଯୁଗରେ ତନ୍ତ୍ରୋକ୍ତ ବିଧିକୁ ବର୍ଜନ କରି ଅଭିପ୍ସିତ କର୍ମରେ ସିଦ୍ଧିଲାଭ କରିବାକୁ ଇଚ୍ଛାକରେ ସେହି ବୁଦ୍ଧିହୀନ ବ୍ୟକ୍ତି ତୃଷାତୁର ହୋଇ ଗଙ୍ଗାକୂଳରେ ଥାଇ କୂପ ଖନନ କରି ଜଳଲାଭ କରିବାକୁ ଇଚ୍ଛୁକ ବ୍ୟକ୍ତିପରି ବିଫଳ ପ୍ରୟାସ ହୁଏ । ଏଣୁ, କଳିଯୁଗରେ ଶକ୍ତି ଭିନ୍ନ ମୁକ୍ତିନାହିଁ ! ଏହିପରି ପ୍ରମାଣମାନ ଥିବାରୁ ଏହି କ୍ଷେତ୍ରରେ ତନ୍ତ୍ରୋକ୍ତ ବିଧିରେ ଶକ୍ତିପୂଜାର ପ୍ରସାର ଲାଭକଲା । ଶକ୍ତିପୂଜାର ପ୍ରଧାନ ଅଙ୍ଗ ମଦ୍ୟ ମାଂସାଦି ପଞ୍ଚମକାରରେ ଆସକ୍ତଥିବା ତଥା ଯଜ୍ଞାନ୍ତ ସୋମରସ ପାନ କରୁଥିବା ବ୍ରାହ୍ମଣମାନଙ୍କ ସଂସର୍ଗକୁ ଘୃଣାବୋଧ କରି କେତେକ ବ୍ରାହ୍ମଣ ଏସ୍ଥାନ ପରିତ୍ୟାଗକରି ଦକ୍ଷିଣକୁ ଅର୍ଥାତ୍ ପୁରୀ ବ୍ରହ୍ମପୁର ପ୍ରଭୃତି ସ୍ଥାନକୁ ଯାଇ ବସତି ସ୍ଥାପନକଲେ । ଯେଉଁମାନେ ଏହି ଯାଜପୁର ମଣ୍ଡଳରେ ଅବସ୍ଥାନ କଲେ ସେମାନେ ଯାଜପୁରତ୍ୟ (କଥିତ ଭାଷାରେ ଯାଜପୁରିଆ) ବୋଲି ଅଭିହିତ ହେଲେ । ଯେଉଁମାନେ ଦକ୍ଷିଣକୁ ଚାଲିଗଲେ ସେମାନଙ୍କୁ ଦାକ୍ଷିଣାତ୍ୟ (ଦକ୍ଷିଣିଆ) ବୋଲି କୁହାଗଲା । ପରସ୍ପର ପରସ୍ପରଙ୍କୁ ନିକୃଷ୍ଟ ମନେକରି ଘୃଣା କରୁଥିବାରୁ ଏମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ସ୍ଥାପନ ହେଉ ନଥିଲା । ଏବେ ତାହା କେତେକାଂଶରେ ଦୂରୀଭୂତ ହେଉଅଛି ।

ପରମ୍ପରାକ୍ରମେ ଯାଜପୁରସ୍ଥ ବ୍ରାହ୍ମଣମାନେ ବିବାହ ବ୍ରତ ପ୍ରଭୃତି ଉତ୍ସବରେ ଉତ୍କଳର ପ୍ରସିଦ୍ଧ ଦେବତା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଉଦ୍ଦେଶ୍ୟରେ, ବିରଜାକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ଶ୍ରୀବିରଜା ଓ ବରାହଙ୍କ ଉଦ୍ଦେଶ୍ୟରେ ତଥା ଦଶସହସ୍ର ଯାଜ୍ଞିକ ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ନିମ୍ନୋକ୍ତ ମନ୍ତ୍ର ପାଠକରି ପାଣିପାଦାର୍ଘ୍ୟ ଅର୍ପଣ କରନ୍ତି ।

୧- ଶ୍ରୀ ନୀଳଶୈଳ ଶିଖରାଧିବାସିନେ
ଉତ୍କଳଦେଶ ଜନତାଘ ନାଶିନେ ।
ଅର୍ଘ୍ୟମାଦ୍ୟ ପୁରୁଷାୟ ତେ ନମୋ-
ଽସ୍ତୁ ତେ ଭୂୟ ମିହୋତ୍ସବାଳୟେ ॥
ଶ୍ରୀଜଗନ୍ନାଥ ବଳଭଦ୍ର ସୁଭଦ୍ରାଭ୍ୟଃ ପାଣିପାଦାର୍ଘ୍ୟଂ ସ୍ୱାହା ।

୨- ନମୋଽସ୍ତୁତେ ଯଜ୍ଞବରାହ ମୂର୍ତ୍ତୟେ
ଜଳେ ନିମଗ୍ନା-କ୍ଷିତିରୁଦ୍ଧୃତା ଯୟା ।
ନମାମି ମାତର୍ବିରଜେ ଯୁବାଭ୍ୟାଂ
ପ୍ରସୀଦ ପାଦାର୍ଘ୍ୟ ମିଦଂ ଦଦାନ ॥
ବରାହ ବିରଜାଭ୍ୟାଂ ପାଣି ପାଦାର୍ଘ୍ୟଂ ସ୍ୱାହା ।

୩- କନୌଜଦେଶାତ୍ ସ୍ୱୟମାହୃତା ଯେ
ଦଶାଶ୍ୱମେଧାୟ ପୁରା ବିଧାତ୍ରା । *

---

* ବି: ଦ୍ର:— ବିଧାତୃ ଶବ୍ଦର ୩ୟା ଏକବଚନରେ 'ବିଧାତ୍ରା' ହୋଇ-ଅଛି, ବିଧାତା-ବ୍ରହ୍ମା ଓ ଯେ ବିଧାନକରେ । ପୂର୍ବୋକ୍ତ 'ବିଧାତ୍ରା'ର ଅର୍ଥ ବ୍ରହ୍ମାଙ୍କଦ୍ୱାରା ନ ହୋଇ ଯେ ଯଜ୍ଞକର୍ମ ବିଧାନ ବା ସମ୍ପାଦନ କରିଥିଲେ ତାହାଙ୍କୁ ବୁଝାଉଅଛି । କାରଣ, ବ୍ରହ୍ମା ଦଶାଶ୍ୱମେଧ କରିଥିବାର କୌଣସି ପ୍ରମାଣ ନାହିଁ । ବ୍ରହ୍ମା ଦେବ, ଋଷି, ଯକ୍ଷ, କିନ୍ନର, ଗନ୍ଧର୍ବମାନଙ୍କ ସହିତ ଯଜ୍ଞାରମ୍ଭ କରିବା ପୂର୍ବରୁ ନିଜ ମନ ମଧ୍ୟରୁ ଋତ୍ୱିକ୍ ପୁରୋହିତ ପ୍ରଭୃତିଙ୍କୁ ଜାତକରି ଯଜ୍ଞ ସମ୍ପାଦନ କରିଥିଲେ । ଏହା ପୂର୍ବରୁ ବର୍ଣ୍ଣିତ ହୋଇଅଛି । ତାଙ୍କର ଯଜ୍ଞାନଳରୁ ଈଶାନେଶ୍ୱର ଓ ବିରଜା ଉତ୍ପତ୍ତି ହେଲେ ।

ମର୍ତ୍ତ୍ୟଫଳୌ ସ୍ୱର୍ଗପଦଂ ଚ ଲବ୍ଧଂ
ତେଭ୍ୟୋ ଦ୍ୱିଜେଭ୍ୟୋ ବନବେଦସ୍ତ୍ୱର୍ଘ୍ୟମ୍ ॥
ଦଶସହସ୍ର ବ୍ରାହ୍ମଣେଭ୍ୟଃ ପାଣିପାଦାର୍ଘ୍ୟଂ ସ୍ୱାହା ।

**ଫଳଶ୍ରୁତିଃ—**

"ତ୍ରୀଣି ପାଦାର୍ଘ୍ୟତୋୟାନି ଯୋ ଦଦ୍ୟାତ୍ ମଙ୍ଗଳୋତ୍ସବେ ।
ଗଙ୍ଗାସ୍ନାନଫଳଂ ଲବ୍ଧ୍ୱା ବ୍ରହ୍ମଲୋକମବାପ୍ନୁୟାତ୍ ॥"

କିନ୍ତୁ ଯଯାତିକେଶରୀ କାନ୍ୟକୁବ୍ଜରୁ ବ୍ରାହ୍ମଣ ଅଣାଇ ଦଶାଶ୍ୱମେଧ କରିଥିଲେ । ଏଣୁ ଦଶାଶ୍ୱମେଧର ବିଧାତା ଅର୍ଥାତ୍ ଯଜ୍ଞ ସମ୍ପାଦନ କର୍ତ୍ତା ଯଯାତିକେଶରୀ ଅଟନ୍ତି । ଏହି ବ୍ରାହ୍ମଣମାନଙ୍କ ଆସିବା ପୂର୍ବରୁ ଏଠାରେ ଯେଉଁ ବ୍ରାହ୍ମଣମାନେ ଥିଲେ ସେମାନେ ବୈଦିକ ଯାଗଯଜ୍ଞାଦି କାର୍ଯ୍ୟରେ ସେପରି ସୁଦକ୍ଷ ନଥିଲେ ମଧ୍ୟ ଯଜ୍ଞର ସାଧାରଣ କାର୍ଯ୍ୟରେ ଅଂଶ ଗ୍ରହଣ-କରିଥିଲେ ।

ଆହୁରି ମଧ୍ୟ ଏହି ଯାଜପୁରସ୍ଥ ବ୍ରାହ୍ମଣମାନଙ୍କ ମଧ୍ୟରୁ କେତେକ ଅଗ୍ନିହୋତ୍ରାଦି କର୍ମରେ ଦୀକ୍ଷିତ ହୋଇ ନିଜ ଗୃହରେ ଶାସ୍ତ୍ରୀୟ ବିଧିରେ ଅରଣି ସାହାଯ୍ୟରେ ଅଗ୍ନି ଆଧାନ କରି ନିତ୍ୟ ହୋମ, ବଳି ବୈଶ୍ୱଦେବାଦି ପଞ୍ଚମହାଯଜ୍ଞ କରୁଥିଲେ । ଏମାନଙ୍କୁ ଅଗ୍ନିହୋତ୍ରୀ କୁହାଯାଉଥିଲା । କେତେକ ଯଜନ ଯାଜନାଦି ଶାନ୍ତି ସ୍ୱସ୍ତ୍ୟୟନ କର୍ମକରି, କେହି ବା ଅଧ୍ୟୟନ ଅଧ୍ୟାପନ, ଦାନ, ପ୍ରତିଗ୍ରହାଦି କର୍ମରେ ସ୍ୱକୀୟ ଜୀବିକା ନିର୍ବାହ କରିବାକୁ ଲାଗିଲେ । ଏହି ପୂର୍ବୋକ୍ତ କର୍ମମାନଙ୍କର ନିଦର୍ଶନ ସ୍ୱରୂପ ସେମାନଙ୍କ ରଚିତ ଓ ବ୍ୟବହୃତ ଆଶୀର୍ବାଦ ମନ୍ତ୍ରରୁ ସ୍ପଷ୍ଟ ପ୍ରତୀତ ହୁଏ । ଯଥା :—

**ଆଶୀର୍ବାଦ ମନ୍ତ୍ର—**

ଓଁ ବ୍ରହ୍ମ ଭବନ ସୌଧସୋପାନ ସରଣୀ ନିଖିଳପୁଣ୍ୟାରଣୀ ଶ୍ରୀମଦ୍ ବୈତରଣୀ ଜଳ-ପଟଳ- ସ୍ନାନପାନାବଗାହନ- କ୍ଷପିତାଶେଷକଳୁଷାନାଂ ଅନବରତ ହବିର୍ଧୂମ -ଶ୍ୟାମଳିତ - ନଭୋମଣ୍ଡଳାନାଂ ପ୍ରତ୍ୟହଂ ପୂର୍ବୋ-

ତ୍ରାଣାଶନାନ୍ତଃ କରଣନିର୍ମଳାନାମ୍ ଅନୁଦିନଂ ଯଜନ ଯାଜନାଦି ଷଟ୍‌କର୍ମନିରତାନାଂ ବେଦବେଦାନ୍ତ-ସାହିତ୍ୟେତିହାସ -ପୁରାଣ-କାବ୍ୟ - ନାଟକାଳଙ୍କାର-ପଠନ -ପାଠନ ଶ୍ରବଣ ବ୍ୟାଖ୍ୟାନ ନିପୁଣାନାଂ କାନ୍ୟକୁବ୍‌ଜାଗତ ଦଶସହସ୍ର ବ୍ରାହ୍ମଣାନାମ୍ ଆଶିଷଃ ସତ୍ୟାଃ ସନ୍ତୁ ।

ଏହି ମନ୍ତ୍ର ପାଠକରି ବ୍ରତ ବିବାହାଦି ଉତ୍ସବ ଶେଷରେ ବ୍ରାହ୍ମଣମାନେ ଯଜମାନଙ୍କୁ ଆଶୀର୍ବାଦ କରିଥାନ୍ତି ।

ଅଶ୍ୱମେଧ ଯଜ୍ଞ ଶେଷରେ ଯଯାତିକେଶରୀ ବୈତରଣୀ ନଦୀରେ ସୁଖସ୍ନାନ ତଥା ଅବତରଣର ସୁଗମତା ପାଇଁ ନଦୀର ଉଭୟ ତୀରରେ ପ୍ରସ୍ତର ପାବଚ୍ଛ ସମ୍ବଳିତ ଘାଟ ବନ୍ଧାଇଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଏହି ପାଇଛ ଗୁଡ଼ିକ ନଦୀର ଉଭୟ କୂଳରୁ ଅର୍ଥାତ୍ ଉତ୍ତରତୀରସ୍ଥ ବରାହଙ୍କଠାରୁ ତଥା ଦକ୍ଷିଣତୀରସ୍ଥ ସପ୍ତମାତୃକାଙ୍କ ମନ୍ଦିରଠାରୁ ଆସି ମଧ୍ୟଭାଗରେ ମିଳିତ ହୋଇଅଛି । ଏହା କେତେଦୂର ସତ୍ୟ ତାହା ନଦୀଗର୍ଭ ଖୋଳି ନଦେଖିବା ପର୍ଯ୍ୟନ୍ତ ଜଣାଯିବ ନାହିଁ । ଏବେ ୧୯୭୬ ମସିହାରେ ମହା ମହା ବାରୁଣୀ ପୂର୍ବରୁ ଲୋକପ୍ରିୟ ସରକାରଙ୍କ ଆନୁକୂଲ୍ୟରେ ଖୋଳାହୋଇ କେତେକ ମୂର୍ତ୍ତି ମେଘୁ ପାଇଛ ଲୋକଲୋଚନ ଗୋଚରକୁ ଆସିଅଛି । ଏହି ଘାଟକୁ 'ଦଶାଶ୍ୱମେଧ ଘାଟ' କୁହାଯାଏ ।

ଯଯାତିକେଶରୀ ବାରାଣସୀ ଅନୁକରଣରେ ଏହି ଯାଜପୁରକୁ ଗଢିଥିଲେ । ବାରାଣସୀରେ ଏକ ସ୍ଥାନରେ ଗଙ୍ଗା, ବିଶ୍ୱନାଥ ମନ୍ଦିର, ହରିଶ୍ଚନ୍ଦ୍ର ଘାଟ ଓ ମହାଶ୍ମଶାନ ଯେପରି ଅଛି ସେହିପରି ଏଠାରେ ବୈତରଣୀ ସାକ୍ଷାତ୍ ଗଙ୍ଗା ରୂପରେ ବିଦ୍ୟମାନ । କାରଣ ଯେଉଁଠାରେ ପାର୍ବତୀ ବା ଶକ୍ତି ସ୍ୱରୂପା ଦେବୀ ବାସ କରନ୍ତି ସେଠାରେ ବିଷ୍ଣୁ, ଶିବ ଓ ଗଙ୍ଗା ମଧ୍ୟ ବାସ କରନ୍ତି । ଏହାର ପ୍ରମାଣ ବ୍ରହ୍ମାଣ୍ଡ ପୁରାଣରୁ ମିଳେ ।

"ଯତ୍ର ପୁଣ୍ୟତମଂ କ୍ଷେତ୍ରଂ ତତ୍ରାସ୍ତି ଦୁର୍ଦେବ୍ୟା ଧ୍ରୁବମ୍ ।
ବିଷ୍ଣୁଂ ଯତ୍ର ତଦାଚକ୍ଷ୍ୟୁଃ ପୁଣ୍ୟକ୍ଷେତ୍ରଂ ମନୀଷିଣଃ ॥
ଏତାସୁ ବିଷ୍ଣୁ ସ୍ଥୂଣ୍ୟାନି ସ୍ଥାନାନି ଗିରିନନ୍ଦନ ।
ଅସ୍ମାଭିରେବ ନାସ୍ମାକଂ ବିଯୋଗଃ କୁତ୍ରଚିଦ୍ ଭବେତ୍ ॥
ବିଷ୍ଣୁଂ ଯତ୍ର ମହାଦେବ ତତ୍ର ଗଙ୍ଗା ସ୍ୱୟଂ ଭବେତ୍ ॥"

ଅର୍ଥାତ୍ ଶିବ ବକ୍ତାରୂପରେ ପାର୍ବତୀଙ୍କୁ କହିଲେ—ହେ ଦେବି ! ଯେଉଁଠାରେ ପୁଣ୍ୟକ୍ଷେତ୍ର ସେଠାରେ ଆମ୍ଭେମାନେ ବାସକରୁ । ଶିବ, ବିଷ୍ଣୁ ଓ ଶକ୍ତି ରୂପିଣୀ ଦେବୀ ବାସ କରୁଥିବାରୁ ତାହାକୁ ବିଦ୍ୱାନ୍‌ମାନେ ପୁଣ୍ୟ-କ୍ଷେତ୍ର ବୋଲି କହନ୍ତି, ଏଣୁ ଏହି କ୍ଷେତ୍ରରୁ ଆମ୍ଭମାନଙ୍କର ବିଚ୍ଛେଦ ଘଟି ନପାରେ । ଅନ୍ୟତଃ ମଧ୍ୟ ଯେଉଁଠାରେ ପୂର୍ବୋକ୍ତ ଦେବତାମାନେ ଅବସ୍ଥାନ କରନ୍ତି ସେଠାରେ ସ୍ୱୟଂ ଗଙ୍ଗା ବିଦ୍ୟମାନ ଥା'ନ୍ତି । ଏଣୁ କୁହାଯାଇଛି—

**ବୈତରଣୀ ଗଙ୍ଗା :—**

"ମଧ୍ୟେ ବହନ୍ତି କଲ୍ୟାଣି ଗଙ୍ଗା ହରି ବରାହୟୋଃ ।
ବୈତରଣ୍ୟାଃଖ୍ୟୟା ଭୂମୌ ଯା ଗଙ୍ଗା କୀର୍ତ୍ତ୍ୟତେ ବୁଧୈଃ ॥"

ଅଥାତ୍ ଆଖଣ୍ଡଳେଶ୍ୱର ଓ ବରାହଙ୍କ ମଧ୍ୟଭାଗରେ ପ୍ରବାହିତ ବୈତରଣୀ ନଦୀର ଅଂଶକୁ ଗଙ୍ଗା ବୋଲି କୁହାଯାଏ । ଏହି ଗଙ୍ଗା ରୂପିଣୀ ବୈତରଣୀ ତ୍ରିସ୍ରୋତା ଗଙ୍ଗା, ଯମୁନା, ସରସ୍ୱତୀ ପରି ତିନୋଟି ଧାରରେ ଅର୍ଥାତ୍ କୌଶିକୀ (କୁଶୀ ବାରଦ୍ୱାରିଆ ଗ୍ରାମ ନିକଟବର୍ତ୍ତୀ) ମନ୍ଦାକିନୀ (ଯାହାକୁ ମନ୍ଦାକିନୀ କୂଳ ବୋଲି ଲୋକେ କହି ଆସୁ ଅଛନ୍ତି, ଯେଉଁଠାରେ 'ଡକ୍' ବା ପୋତାଶ୍ରୟ ନିର୍ମିତ ହୋଇଅଛି, ଏହା ବୈତରଣୀର ଶାଖାନଦୀ) ଓ ଖାଣ୍ଡୁଆରେ ବେଗବତୀ ବେଙ୍ଗା, (ଏହା ସିନ୍ଦୂରେଇ ମୁହଁ ନିକଟ, ଯେଉଁ-ଠାରେ ଗଙ୍ଗେଶ୍ୱର ନାମକ ଶିବଲିଙ୍ଗ ବିଦ୍ୟମାନୋ ରୂପରେ ପରିଣତ ହୋଇ ଏହି ତୀରରେ ଥିବା ସମସ୍ତ ଦେବଦେବୀଙ୍କୁ ସନ୍ତୁଷ୍ଟ କରୁଅଛନ୍ତି । ଏହି ହରି-ବରାହ ମଧ୍ୟବର୍ତ୍ତୀ ବୈତରଣୀରେ ବାରୁଣୀ ସ୍ନାନଯୋଗ, ମହାକାର୍ତ୍ତିକ ସ୍ନାନ-ଯୋଗ ପ୍ରଭୃତି ଯୋଗସ୍ନାନମାନ କରଯାଏ । ଯଥା ସ୍ଥାନରେ ଏହି ଯୋଗ-ସ୍ନାନ ସମ୍ବନ୍ଧରେ ଆଲୋଚନା କରାଯିବ । ଆହୁରି ମଧ୍ୟ ଏଠାରେ ବାରୁଣୀ ଡେଉଁରେ ଯେଉଁ ଶ୍ମଶାନ ଅଛି ତାହାକୁ ମହାଶ୍ମଶାନ କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁଠାରେ ଅସଂଖ୍ୟ ଶବମାନଙ୍କର ଦାହାଦି ସଂସ୍କାର କରା-ଯାଏ, ତାହାକୁ ମହାଶ୍ମଶାନ କୁହାଯାଏ ।

**ଯାଜପୁରର ଅର୍ଥ—**

ଯଯାତିକେଶରୀଙ୍କ ଶାସନ ପୂର୍ବରୁ ଏହାର ନାମ କଳିଙ୍ଗ ଉତ୍ତ୍ର ବା ବିରଜାଃ କ୍ଷେତ୍ର ଥିଲି । ଏଠାରେ ଯଜ୍ଞାଦି ସମ୍ପାଦନ କରିବାପରେ ଏହାକୁ

'ଯଜ୍ଞପୁର', 'ଯଯାତିପୁର' ବା 'ଯାଜପୁର' ବୋଲି ଲୋକେ କହୁଥିଲେ । ବର୍ତ୍ତମାନ କେବଳ 'ଯାଜପୁର' ନାମ ସରକାର କାଗଜପତ୍ରରେ ରହିଅଛି । ଏହାକୁ ଲୋକେ କଥିତ ଭାଷାରେ ତଥା ଲିଖିତ ଭାଷାରେ 'ଯାଜପୁର' ବୋଲି କହି ଆସୁଛନ୍ତି । ଏହା ବ୍ୟାକରଣ ଗତ ଭୁଲ୍, କାରଣ, ଏହା 'ଯଜ୍' ଧାତୁ-ନିଷ୍ପନ୍ନ ଶବ୍ଦ । ଯଜ୍ ଧାତୁର ଅର୍ଥ ଯଜ୍ ଦେବପୂଜା ସଙ୍ଗତିକରଣ ଦାନେଷୁ । ଅର୍ଥାତ୍ ଦେବତା ପୂଜାପୂର୍ବକ ଯଜ୍ଞାଦି ବିଧି ଅନୁଷ୍ଠାନ କରିବା, ସମାଜସହିତ ସୁସମ୍ପର୍କ ସ୍ଥାପନ କରିବା ତଥା ମିଳିମିଶି ଚଳିବା, ନିଜର ଶକ୍ତି ଅନୁପାତରେ ଅର୍ଥଦାନ, ଶିକ୍ଷାଦାନ ଓ ଶାରୀରିକ ସାହାଯ୍ୟ ଦାନ କରିବା । ତେଣୁ ଯାଜନାଂ ଯଜ୍ଞକର୍ତ୍ତୃଣାଂ ପୁରଂ = 'ଯାଜପୁରମ୍' । ଯଜନ୍ତ—ପରାର୍ଥଂ ଯଜନ୍ତେ ବା ସ୍ୱାର୍ଥମ୍ ଇତି = 'ଯାଜୀ' (ଯଜ୍ + ଣିନ୍ = ଯାଜୀ) ତେଷାଂ ପୁରମ୍ । ଏହି ସବୁ କର୍ମ ଏଠାରେ ହେଉଥିବାରୁ ଏହାକୁ 'ଯାଜପୁର' କୁହା-ଯାଉଅଛି । ବାସ୍ତବତଃ ଯାଜପୁର ନକ୍ସାରେ ଗଣପତିପୁର ମଧ୍ୟରେ ଗୋଟିଏ ସ୍ଥାନ ଅଛି, ସେହି ସ୍ଥାନର ନାମ 'ଯାଜପୁର' ।

## କ୍ଷେତ୍ର ବିଷୟରେ ମହାଭାରତ :—

ଯାହାହେଉ, ଏହି କ୍ଷେତ୍ର ଯେ ଅତି ପ୍ରାଚୀନ ଏ ବିଷୟରେ ତିଳେ ମାତ୍ର ସନ୍ଦେହ ନାହିଁ । ମହାଭାରତହିଁ ଏହାର ମୂକସାକ୍ଷୀ । କ୍ଷେତ୍ର ସମ୍ବନ୍ଧରେ ମହାଭାରତୀୟ ପ୍ରମାଣ—

ମହାଭାରତ ଯୁଦ୍ଧର ୫୭୭୫ ବର୍ଷପରେ ୫୫୬ ଶକାବ୍ଦ ୬୩୪ ଖ୍ରୀଷ୍ଟାବ୍ଦରେ ରବିକୀର୍ତ୍ତି ନାମକ ଜୈନକବି ତ୍ରୈଲୋକ୍ୟଗୁରୁ ଜୈନମନ୍ଦିର ନିର୍ମାଣ କରି-ଥିଲେ । ଏହା ଦକ୍ଷିଣର ବିଜାପୁର ଜିଲ୍ଲାନ୍ତର୍ଗତ 'ଐହୋଳ' ନାମକ ସ୍ଥାନରୁ ମିଳିଥିବା ଶିଳାଲେଖରୁ ଜଣାଯାଏ । ଜୈନକବି ଏହି ରବିକୀର୍ତ୍ତି ଚାଲୁକ୍ୟ ବଂଶୀୟ ରାଜା ଦ୍ୱିତୀୟ ପୁଲକେଶୀଙ୍କ ସଭାପଣ୍ଡିତ ଥିଲେ ।

ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ପ୍ରାୟ ସାତହଜାର ବର୍ଷ ପୂର୍ବରୁ ମହା-ଭାରତ ରଚିତ ହୋଇଥିଲା । ଏହି ମହାଭାରତରେ ବିରଜାକ୍ଷେତ୍ର ତଥା ବୈତରଣୀ ସମ୍ବନ୍ଧରେ ବର୍ଣ୍ଣିତ ଅଛି ।

ଯେତେବେଳେ ଯୁଧିଷ୍ଠିର ପ୍ରଭୃତି ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ବନବାସ କରିଥିଲେ ତେତେବେଳେ ବନପର୍ବରେ ୮୫ତମ ଅଧ୍ୟାୟରେ ଋଷି ପୌଲସ୍ତ୍ୟ ଯୁଧିଷ୍ଠିରଙ୍କୁ କହିଅଛନ୍ତି—

"ତତୋ ବୈତରଣୀଂ ଗଚ୍ଛେତ୍ ସର୍ବପାପ ପ୍ରମୋଚନୀମ୍ ।
ବିରଜଂ ତୀର୍ଥ ମାସାଦ୍ୟ ବିରାଜତି ଯଥା ଶଶୀ ॥
ପ୍ରଭବେଚ୍ଚ କୁଳଂ ପୁଣ୍ୟଂ ସର୍ବପାପଂ ବ୍ୟପୋହତି ।
ଗୋ ସହସ୍ର ଫଳଂ ଲବ୍ଧ୍ୱା ପୁନାତି ସ୍ୱକୁଳଂ ନରଃ ॥"

ଅର୍ଥାତ୍ ହେ ଯୁଧିଷ୍ଠିର ! ତତ୍ପରେ ତୁମ୍ଭେ ସକଳ ପାପହାରିଣୀ ବୈତରଣୀ ନଦୀତୀରକୁ ଯାଅ । ଏହାର କୂଳରେ ଉଜ୍ଜ୍ୱଳ ଚନ୍ଦ୍ରଙ୍କ ପରି ପବିତ୍ର 'ବିରଜଃକ୍ଷେତ୍ର' ଶୋଭାପାଉଅଛି । ମନୁଷ୍ୟ ଏଠାରେ ପ୍ରବେଶ କରି ତୀର୍ଥ ସ୍ନାନକଲେ ନିଜର ବଂଶକୁ ପବିତ୍ରକରେ, ତାହାର ସମସ୍ତପାପ ଧ୍ୱଂସ ହୁଏ ଓ ସେ ସହସ୍ର ଗୋଦାନର ଫଳମଧ୍ୟ ଲାଭକରେ ।

ପୁନର୍ବାର ଏହି କ୍ଷେତ୍ରର ମାହାତ୍ମ୍ୟ ଏହି ବନପର୍ବରେ ୧୧୪ତମ ଅଧ୍ୟାୟରେ ବର୍ଣ୍ଣନା କରାଯାଇଅଛି—

"ତତଃ ସମୁଦ୍ରତୀରେଣ ଜଗାମ ବସୁଧାଧିପଃ ।
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତି ଭାରତ ॥"

ତାହାପରେ ରାଜା ଯୁଧିଷ୍ଠିର ଭାଇମାନଙ୍କ ସହିତ ସମୁଦ୍ର କୂଳେ କୂଳେ କଳିଙ୍ଗ ଆଡ଼କୁ ଗମନକଲେ । ନିମ୍ନୋକ୍ତ ପ୍ରକାରରେ କଳିଙ୍ଗର ସ୍ଥାନ ନିରୂପିତ ହୋଇଅଛି । ମହର୍ଷି ଲୋମଶ କହିଅଛନ୍ତି—

"ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ ।
ଯତ୍ରାଯଜତ ଧର୍ମୋଽପି ଦେବାନ୍ ଶରଣମେତ୍ୟ ଚ ॥
ଋଷିଭିଃ ସମୁପାଯୁକ୍ତଂ ଯଜ୍ଞୀୟଂ ଗିରିଶୋଭିତମ୍ ।
ଉତ୍ତରଂ ତୀରମେତଦ୍ଧି ସତତଂ ଦ୍ୱିଜ ସେବିତମ୍ ॥
ସମାନଂ ଦେବଯାନେନ ପଥା ସ୍ୱର୍ଗମୁପେୟୁଷା ।
ଅତ୍ର ବୈ ଋଷୟୋଽନ୍ୟେ ଚ ପୁରା କ୍ରତୁଭିରୀଜିରେ ॥"

ଲୋମଶ କହିଲେ— ହେ କୁନ୍ତୀପୁତ୍ର ଯୁଧିଷ୍ଠିର ! ଯେଉଁଠାରେ ପୁଣ୍ୟ-ତୋୟା ବୈତରଣୀ ନଦୀ ପ୍ରବାହିତା, ଯେଉଁଠାରେ ଧର୍ମାବତାର ସ୍ୱୟଂବ୍ରହ୍ମା ଦେବତାମାନଙ୍କ ଶରଣାପନ୍ନ ହୋଇ ଋଷି, ମୁନି, ସିଦ୍ଧ, ଗନ୍ଧର୍ବଙ୍କ ସହିତ ଯଜ୍ଞ ସମ୍ପାଦନ କରିଥିଲେ, ଯେଉଁଠାରେ ଯଜ୍ଞୀୟ ପର୍ବତ ଶୋଭମାନ, ଯେଉଁ ନଦୀର ଉତ୍ତରତୀରରେ ବ୍ରାହ୍ମଣମାନେ ବାସ କରନ୍ତି, ତାହାହିଁ କଳିଙ୍ଗଦେଶ । ସ୍ୱର୍ଗଲାଭ କରିବାକୁ ଇଚ୍ଛା କରୁଥିବା ବ୍ୟକ୍ତିର ଏହି ସ୍ଥାନଟି ସ୍ୱର୍ଗଦ୍ୱାର ସ୍ୱରୂପ । ଏହିଠାରେ ପୂର୍ବ କାଳରେ ଯାଗ ଯଜ୍ଞାଦିଦ୍ୱାରା ଋଷି-ମୁନିମାନେ ଶୋଭା ପାଉଥିଲେ ଓ ନିଜେ ମଧ୍ୟ ଧନ୍ୟ ହୋଇଥିଲେ ।

"ତତୋ ବୈତରଣୀଂ ସର୍ବେ ପାଣ୍ଡବା ଦ୍ରୌପଦୀ ତଥା ।
ଅବତୀର୍ଯ୍ୟ ମହାଭାଗା ତର୍ପୟାଂ ଚକ୍ରିରେ ପିତୃନ୍ ॥"

ଏହାପରେ ମହାଭାଗ୍ୟବାନ୍ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ବୈତରଣୀ ନଦୀରେ ଅବତରଣକରି ପିତୃଲୋକମାନଙ୍କୁ ତର୍ପଣ ଦ୍ୱାରା ପରିତୃପ୍ତ କରିଥିଲେ ।

ଏଥିରୁ ସ୍ପଷ୍ଟଭାବରେ ପ୍ରମାଣିତ ହୁଏ ଯେ, ମହାଭାରତ ଲେଖାର ବହୁ ପୂର୍ବରୁ ଏଠାରେ ଦେବୀ ବିରଜା ଓ ବିରଜାକ୍ଷେତ୍ର ପ୍ରତିଷ୍ଠିତ ହୋଇ-ଥିଲା । ଏଣୁ ଏ କ୍ଷେତ୍ରଟି ଯେ ଅତି ପ୍ରାଚୀନତମ ଏଥିରେ ସନ୍ଦେହ ନାହିଁ । ଏହାପରେ ଯଯାତିକେଶରୀଙ୍କ ଦ୍ୱାରା ଦଶାଶ୍ୱମେଧ ଯଜ୍ଞ କରିବା, ଦଶାଶ୍ୱ-ମେଧ ଘାଟ ବନାଇବା ପ୍ରଭୃତି ହୋଇଅଛି । ଏହାପରଠାରୁ ଏହିସ୍ଥାନ 'ଯାଜପୁର' ନାମରେ ନାମିତ ହୋଇଅଛି ।

## କ୍ଷେତ୍ର ବିଷୟରେ କପିଳ ସଂହିତା—

ଏହି କ୍ଷେତ୍ର ସମ୍ବନ୍ଧରେ କପିଳ ସଂହିତାରେ ଲିଖିତ ଅଛି—

"କଥୟାମି ମହାପୁଣ୍ୟଂ ବିରଜାଖ୍ୟଂ ସୁନିର୍ମଳମ୍ ।
ଯତ୍‌କ୍ଷେତ୍ରଂ ସୃଷ୍ଟି ରକ୍ଷାର୍ଥଂ ବ୍ରହ୍ମଣା ଚ କୃତଂପୁରା ॥
ତେଷାଂ ତୁ ପ୍ରଥମଂ କ୍ଷେତ୍ରଂ ପାର୍ବତୀ କ୍ଷେତ୍ରମେବଚ ।
ବିରଜାଖ୍ୟା ମହାଦେବୀ ପାର୍ବତୀ ବ୍ରହ୍ମରୂପିଣୀ ॥
ସାଧକାନାଂ ହିତାର୍ଥାୟ ଉତ୍କଳେ ଭୁବି ସଂସ୍ଥିତା ॥" (୧୮ । ୧୫)

ଭାରତ ଭୂଖଣ୍ଡ ମଧ୍ୟରେ ଥିବା କ୍ଷେତ୍ରମାନଙ୍କ ମଧ୍ୟରେ ପାର୍ବତୀ-କ୍ଷେତ୍ର ସର୍ବପ୍ରଥମ ଅଟେ, ଯେଉଁ ଉତ୍କଳ ଭୂମିରେ ସାକ୍ଷାତ ବ୍ରହ୍ମରୂପିଣୀ ପାର୍ବତୀ ସାଧକମାନଙ୍କର ହିତସାଧନ ପାଇଁ ବିରଜା ନାମ ଧାରଣ କରି କ୍ଷେତ୍ରକୁ ପବିତ୍ର ତଥା ସର୍ବାଙ୍ଗ ସୁନ୍ଦର କରି ଅଛନ୍ତି ।

ବିରଜାଙ୍କ ଦର୍ଶନ ବିଷୟରେ କୁହାଯାଇଛି—

"ବିରଜେ ବିରଜାମାତା ବ୍ରହ୍ମଣା ସୁପ୍ରତିଷ୍ଠିତା ।
ଯସ୍ୟାଃ ସନ୍ଦର୍ଶନାତ୍ ମର୍ତ୍ତ୍ୟଃ ପୁନାତ୍ୟାସପ୍ତମଂ କୁଳମ୍ ॥" ୧୫୦

ବିରଜଃ କ୍ଷେତ୍ରରେ ବ୍ରହ୍ମାଙ୍କ ଦ୍ୱାରା ସୁପ୍ରତିଷ୍ଠିତା ଜଗଦମ୍ବା ବିରଜାଙ୍କୁ ଦର୍ଶନ କଲେ ମାନବ ସପ୍ତପୁରୁଷଙ୍କୁ ଉଦ୍ଧାର କରେ । ଆହୁରି ମଧ୍ୟ—

"ଦଶବର୍ଷ ସହସ୍ରାଣି କାଶ୍ୟାଂ ପୂଜୟତୋ ହରମ୍ ।
ଯତ୍ଫଳଂ ତଦବାପ୍ନୋତି ବିରଜାଲୋକନେ ନରଃ ॥" ୧୭

ଅର୍ଥାତ୍ ଦଶସହସ୍ର ବର୍ଷ କାଶୀଧାମରେ ବାସକରି କାଶୀ ବିଶ୍ୱ-ନାଥଙ୍କୁ ପୂଜାକରି ମାନବ ଯେଉଁ ଫଳ ଲାଭକରେ, କେବଳ ବିରଜା ଦେବୀଙ୍କ ମୁଖଦର୍ଶନରେ ସେହି ଫଳ ମିଳିଥାଏ ।

"କାଶୀବାସେ ଦିନାଷ୍ଟୌଚ ଦିନୈକଂ ପୁରୁଷୋତ୍ତମେ ।
ତତ୍ ଫଳଂ ଲଭତେ ମର୍ତ୍ତ୍ୟୋ ବିରଜା ମୁଖଦର୍ଶନେ ॥"

ପୁନର୍ବାର କୁହାଯାଇଛି—ଆଠଦିନ କାଶୀରେ ବାସ କରିବାରେ, ଗୋଟିଏ ଦିନ ଅହୋରାତ୍ର ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବାରେ ମନୁଷ୍ୟ ଯେଉଁ ଫଳ ପାଇଥାଏ, ବିରଜାଙ୍କ ମୁଖଦର୍ଶନରେ ସେହି ଫଳ ମିଳେ । ଏହି ହେତୁରୁ କୁହାଯାଇଛି—

"ସର୍ବପାପ ହରଂ ଦେଶମୌଡ୍ରଂ ଦେବୈସ୍ତୁ କଳ୍ପିତମ୍ ।
ତସ୍ମାତ୍ କ୍ଷେତ୍ରେ ସଦା ସନ୍ତି କୃଷ୍ଣାର୍କ ପାର୍ବତୀ ହରାଃ ॥"
(କଃ ସ୍କଃ ୧୩)

ଅର୍ଥାତ୍ ଦେବତାମାନେ ସର୍ବପାପ-ବିନାଶକ 'ଉଡ୍ର' ବୋଲି ଗୋଟିଏ ଦେଶ କଳ୍ପନା କରିବାରୁ କୃଷ୍ଣ (ଶ୍ରୀଜଗନ୍ନାଥ) ଅର୍କ (ସୂର୍ଯ୍ୟ-କୋଣାର୍କ), ପାର୍ବତୀ (ବିରଜା), ହର (ଲିଙ୍ଗରାଜ—ଭୁବନେଶ୍ୱର) ଏହି ଦେବତା ଚତୁଷ୍ଟୟ ସେହି ଦେଶରେ ବାସକରି ଦେଶକୁ ଗୋଟିଏ ଗୋଟିଏ କ୍ଷେତ୍ର ରୂପରେ ପରିଣତ କରି ଅଛନ୍ତି ।

ବୃହତ୍ ନୀଳତନ୍ତ୍ର ଚତୁର୍ଥ ପଟଳ ବର୍ଣ୍ଣିତ—"ବିରଜା ଯାଗ ପୂର୍ଯ୍ୟାଂ ତୁ ଉଡ୍ରେଶୀ ଭଦ୍ରକର୍ଣ୍ଣିକା ।" ପ୍ରାଣତୋଷଣୀତନ୍ତ୍ରେ—"ନାଭିକ୍ଷେତ୍ରଂ ଚ ବିରଜା ଉଡ୍ଡୀୟାନେ ମହେଶ୍ୱରୀ ।" ତନ୍ତ୍ର ଚିନ୍ତାମଣି ପୀଠ ନିର୍ଣ୍ଣୟସ୍ୟ ୫୧ ଶ୍ଳୋକ—"ଉତ୍କଳେ ନାଭିଦେଶଂ ଚ ବିରଜାକ୍ଷେତ୍ର ମୁଚ୍ୟତେ । ବିରଜାସ୍ତୁ ମହାଦେବୀ ବିଜୟସ୍ତସ୍ୟ ଭୈରବଃ ।।"

ଏହି କ୍ଷେତ୍ରର ମାହାତ୍ମ୍ୟ ବ୍ରହ୍ମାଣ୍ଡ ପୁରାଣରେ ପର୍ଯ୍ୟାୟ କ୍ରମେ ୨୯ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଏହି ୨୯ ଅଧ୍ୟାୟରେ ବର୍ଣ୍ଣିତ ସଂସ୍କୃତ ଶ୍ଳୋକ ସମୂହକୁ ଅନତ୍ୟ ନରହରିପୁର ଶାସନ ନିବାସୀ ଅଗ୍ନିହୋତ୍ରୀ ୰ ରଘୁନାଥ ଅଗ୍ନିହୋତ୍ରୀଙ୍କର ଯୋଗ୍ୟତମ ପୁତ୍ର ପଣ୍ଡିତ ପ୍ରବର ମୋର ପରମାରାଧ୍ୟ ପ୍ରାତଃ ସ୍ମରଣୀୟ ଗୁରୁଦେବ ୰ ଜନାର୍ଦ୍ଦନ ଦାଶ, କାବ୍ୟତୀର୍ଥ ମହୋଦୟ ଉତ୍କଳ ଭାଷାରେ ପ୍ରାଞ୍ଜଳ ଅନୁବାଦଟିଏ କରି ଅଛନ୍ତି । ଦୁର୍ଭାଗ୍ୟ-ବଶତଃ ତାହା ଏ ପର୍ଯ୍ୟନ୍ତ ପ୍ରକାଶିତ ହେବାର ସୁଯୋଗ ଲାଭ ନକରି ପାଣ୍ଡୁଲିପି ଆକାରରେ ରହିଅଛି ।

ଏଠାରେ ଯଯାତିକେଶରୀଙ୍କର ଗଡ଼ ଥିବା ସମ୍ବନ୍ଧରେ ଆଉଗୋଟିଏ କିମ୍ବଦନ୍ତୀ ପ୍ରମାଣ ହିଏ 'କୁସୁମା' ପୋଖରୀ । ଏହା ବଡ଼ ଡାକ୍ତରଖାନାର ଦକ୍ଷିଣ ଦିଗରେ ଅବସ୍ଥିତ । ଏହା ପୂର୍ବେ ଯଯାତିଙ୍କ ରାଜଧାନୀର ଗୋଟିଏ ବିଶାଳ ପୁଷ୍କରିଣୀ ଥିଲା । ଏଥିରେ ସବୁବେଳେ ପଦ୍ମଫୁଲ ଫୁଟି ସରୋବରକୁ ମଣ୍ଡିତ କରୁଥିଲା । କିମ୍ବଦନ୍ତୀ ଆକାରରେ କେତେକ କହନ୍ତି କୁସୁମା ନାମରେ ଗୋଟିଏ ରାଜବେଶ୍ୟା ସେଠାରେ ଘରଟିଏ ତୋଳାଇ ରହୁଥିଲା । ସେହି ଘରର ଭଗ୍ନାବଶେଷ ପୁଷ୍କରିଣୀ କୂଳରେ ଥିଲା, ବର୍ତ୍ତମାନ ସେ ସବୁ ଆଉ ନାହିଁ । କେତେକାଳ ଧରି ପୁଷ୍କରିଣୀ ମଧ୍ୟରେ ଦ୍ୱୀପ ଦଣ୍ଡୀ ଥିଲା । ସେହି

ବିଶାଳ ସରକୁ ବର୍ତ୍ତମାନ କ୍ଷୁଦ୍ର କ୍ଷୁଦ୍ର ଜଳାଧାର ରୂପରେ ପରିଣତ କରାଯାଇ ସରକାରଙ୍କ ତରଫରୁ ମାଛ ଚାଷ କରାଯାଉଅଛି । ଆଶ୍ରମମଧ୍ୟ ସର୍ବଦା କୁସୁମ ଅର୍ଥାତ୍ ପଦ୍ମ ପୁଷ୍ପରେ ପରିପୂର୍ଣ୍ଣ ଥିବାରୁ ଏହାର 'କୁସୁମା' ନାମକରଣ ହେବା କେତକାଂଶରେ ସମୀଚୀନ ହୋଇପାରେ ।

## ସିଦ୍ଧଗଣେଶ—

"ଗଣେଶଂ ସିଦ୍ଧିଦଂ ତତ୍ର ମୁକ୍ତି ବିଘ୍ନବିନାଶନମ୍ ।
ଯସ୍ୟ ଦର୍ଶନମାତ୍ରେଣ ସର୍ବବିଘ୍ନଂ ବିନଶ୍ୟତି ॥" (କ. ସ. ୯୭)

ଏହି ଦଶାଶ୍ୱମେଧ ଘାଟ ଉପରେ ଜଗନ୍ନାଥ ବେଢ଼ାର ଉତ୍ତର ଭାଗରେ ସିଦ୍ଧଗଣେଶଙ୍କର ମନ୍ଦିର ବିଦ୍ୟମାନ । ଏହି ମନ୍ଦିରର ମୁଖ ଉତ୍ତରକୁ ଓ ଗଣେଶଙ୍କ ମୁଖ ମଧ୍ୟ ଉତ୍ତରକୁ । ଏହାଙ୍କର ଅପର ନାମ 'ଗଜକର୍ଣ୍ଣ' । ଦ୍ୱାଦଶ ଗଣେଶଙ୍କ ମଧ୍ୟରେ ଏହି ଗଣେଶ ଏକତମ । ଏପରି ବିଶାଳକାୟ ଗଣେଶ ମୂର୍ତ୍ତି ଅନ୍ୟତ୍ର ଦେଖାଯାଏ ନାହିଁ । ଏହି ମୁକ୍ତିଦାତା ଗଣେଶଙ୍କୁ ଦର୍ଶନ କଲେ ଦର୍ଶକର ସମସ୍ତ ବିଘ୍ନ ଉପଶମ ହୁଏ ବୋଲି ଶାସ୍ତ୍ର ସମ୍ମତ ।

## ଅନ୍ତର୍ବେଦୀ—

"ଅନ୍ତର୍ବେଦୀ ତୁ ତତ୍ରାସ୍ତେ ବ୍ରହ୍ମଣୈବ ପ୍ରକାଶିତା ।
ଗୁରୁହା ବ୍ରହ୍ମହା ଗୋଘ୍ନଃ ସୁରାପୋ ବିଷ୍ଣୁନିନ୍ଦକଃ ॥
ତତ୍ର ଦେହଂ ତ୍ୟଜନ୍ ଜନ୍ତୁ ର୍ବୈକୁଣ୍ଠଂ ଲଭତେ ଧ୍ରୁବମ୍ ॥"
(କଃ ସଂଃ ୯୮)

ଗଣେଶ ମନ୍ଦିରର ପଶ୍ଚିମ ପାଖରେ ଜଗନ୍ନାଥ ବେଢ଼ାରୁ ଉତ୍ତର ଦ୍ୱାରଦେଇ ଆସିଲେ ୫ ପାଇଛ ତଳେ ଯେଉଁ ଚଉତରା ବା ଚୌକୋଣିଆ ବେଦୀଟି ଦେଖାଯାଏ ତାହାକୁ 'ଅନ୍ତର୍ବେଦୀ' କହନ୍ତି । ଏହିବେଦୀରେ ଆସନ୍ନ-ମୃତ୍ୟୁ ବ୍ୟକ୍ତିକୁ ନେଇ ଶୁଆଇ ଦେଇ ମନ୍ତ୍ରପୂତ ଅନ୍ତର୍ଜଳକୁ ମୁମୂର୍ଷୁ ବ୍ୟକ୍ତିର ମୁଖରେ ଦେବା ପରେ ପରେ ଲୋକର ମୃତ୍ୟୁ ଘଟିଲେ ଲୋକ ଊର୍ଦ୍ଧ୍ୱଗତି ଲାଭକରି ବୈକୁଣ୍ଠଗାମୀ ହୁଏ । ଏହା ଏହି କ୍ଷେତ୍ରର ମାହାତ୍ମ୍ୟ । ଅଧିକାଂଶ ବ୍ୟକ୍ତି ଏହା କରି ନପାରି କେବଳ ଶବକୁ ଦାହ କରିବା ପାଇଁ ଶ୍ମଶାନକୁ

ନେବା ସମୟରେ ଏହି ବେଢାକୁ ସ୍ପର୍ଶ କରାଇ ନଅନ୍ତି । ଦେହାନ୍ତ ସମୟରେ ଏହି ବେଢାରେ ପ୍ରାଣ ଯାଏ ବୋଲି ଏହାର ନାମ 'ଅନ୍ତବେଢା' ।

**ସପ୍ତମାତୃକା**— (ଡାକନାମ ଯମମାଆ ସାତଭଉଣୀ)

"ବୈତରଣ୍ୟା ଦକ୍ଷିଣେ ତ ଶ୍ରଟରେ ତତ୍ର ମନୋହରେ ।
ପ୍ରପଶ୍ୟେନ୍ମାତୃକାଃ ସପ୍ତ ଭକ୍ତିଯୁକ୍ତଃ ସମାହିତଃ ॥" କ. ସଂ. ୯୬

ସିଦ୍ଧଗଣେଶ ମନ୍ଦିରକୁ ଲାଗି ପୂର୍ବ ଭାଗରେ ସପ୍ତମାତୃକା ମନ୍ଦିର ବିଦ୍ୟମାନ । ଏହି ମନ୍ଦିରର ପ୍ରଧାନ ଦ୍ୱାରମୁଖ ପଶ୍ଚିମକୁ । ଉତ୍ତର ଦିଗକୁ ଥିବା ଦ୍ୱାର ଗୃହେଷ୍ଟି ଏବେ ଖୋଲା ହେଲାଣି । ଏହି ମନ୍ଦିରରେ ଭକ୍ତିପୂର୍ଣ୍ଣ ହୃଦୟରେ ମାନବ ସୁସଂଯତ ହୋଇ ନିମ୍ନଲିଖିତ ସପ୍ତମାତୃକାଙ୍କୁ ଦର୍ଶନ କରିବା ଉଚିତ ।

ସପ୍ତମାତୃକାଙ୍କ ନାମ—

"ବ୍ରାହ୍ମୀ ମାହେଶ୍ୱରୀ ଚୈବ କୌମାରୀ ବୈଷ୍ଣବୀ ତଥା ।
ବାରାହୀ ନାରସିଂହୈନ୍ଦ୍ରୀ ଚାମୁଣ୍ଡେତ୍ୟଷ୍ଟ ମାତରଃ ॥"

ଏମାନଙ୍କର କ୍ରମାବସ୍ଥାନ—

୧-ଚାମୁଣ୍ଡା, ୨-ବାରାହୀ, ୩-ଐନ୍ଦ୍ରୀ, ୪-ବୈଷ୍ଣବୀ, ୫-ବ୍ରାହ୍ମୀ, ୬ କୌମାରୀ, ୭-ମାହେଶ୍ୱରୀ, ୮-ନାରସିଂହୀ । ଏହି ବାରାହୀଙ୍କ ଠାରୁ ନାରସିଂହୀ ପର୍ଯ୍ୟନ୍ତ ଶକ୍ତିସ୍ୱରୂପିଣୀ ଦେବୀମାନେ ସପ୍ତମାତୃକା । ଚାମୁଣ୍ଡାଙ୍କ ସହିତ ଅଷ୍ଟମାତୃକା ।

ଏମାନଙ୍କର ପରିଚୟ ଓ ଆବିର୍ଭାବର ସମୟ—

ପ୍ରଥମେ ପଶ୍ଚିମ ଦ୍ୱାରରେ ପ୍ରବେଶ କଲେ ଉତ୍ତରାଭିମୁଖୀ ଯେଉଁ ଦେବୀଙ୍କୁ ଦର୍ଶନ କରାଯାଏ, ତାହାଙ୍କର ନାମ ଚାମୁଣ୍ଡା ।

୧-ଚାମୁଣ୍ଡା—"ପ୍ରେତସଂସ୍ଥା ଚ ଚାମୁଣ୍ଡା ।"

ଏହି ଦେବୀ ପ୍ରେତାସନା । ଏହାଙ୍କ ପାଦପଦ୍ମତଳେ ଗୋଟିଏ ପ୍ରେତ ବା ଶବର ମୂର୍ତ୍ତି ବିଦ୍ୟମାନ । ଏହାଙ୍କର ଅପରନାମ କାଳୀ । ଏହି ଦେବୀ

ମହିଷାସୁର ନିଧନ ହେବାପରେ ଶୁମ୍ଭ ଓ ନିଶୁମ୍ଭ ନାମକ ମହାଦାନବ ଦ୍ୱୟଙ୍କର ସେନାପତି ଚଣ୍ଡ ଓ ମୁଣ୍ଡ ନାମକ ଅସୁର ଦୁହିଁଙ୍କୁ ବଧକରି ଏହାଙ୍କର ମସ୍ତକ ଦୁଇଟିକୁ ଆଣି ଯୁଦ୍ଧରତା ସର୍ବଶକ୍ତିମୟୀ ଦୁର୍ଗାଙ୍କ ପାଦପଦ୍ମରେ ଉପହାର ଦେବାରୁ ଦେବୀ ସନ୍ତୁଷ୍ଟା ହୋଇ କହିଲେ—

"ଯସ୍ମାଚ୍ଚଣ୍ଡଂ ଚ ମୁଣ୍ଡଂ ଚ ଗୃହୀତ୍ୱା ତ୍ୱମୁପାଗତା ।
ଚାମୁଣ୍ଡେତି ତତୋ ଲୋକେ ଖ୍ୟାତା ଦେବି ଭବିଷ୍ୟସି ॥" ଚଣ୍ଡୀ

ଅର୍ଥାତ୍ ହେ ଦେବି ! ଯେହେତୁ ତୁମ୍ଭେ ଚଣ୍ଡ ଓ ମୁଣ୍ଡ ଅସୁରଙ୍କର ମୁଣ୍ଡ ଦୁଇଟିକୁ ନେଇ ଆସିଅଛ, ଏଣୁ ଏ ସଂସାରରେ ଆଜିଠାରୁ ତୁମ୍ଭର ନାମ 'ଚାମୁଣ୍ଡା' ରୂପରେ ଖ୍ୟାତି ଲାଭ କରିବ । ସେହି ଦିନଠାରୁ ଏହାଙ୍କର ନାମ 'ଚାମୁଣ୍ଡା' ହୋଇଅଛି ।

ଏହାଙ୍କର ପ୍ରଣାମମନ୍ତ୍ର—

"ଦଂଷ୍ଟ୍ରାକରାଳବଦନେ ଶିରୋମାଲା ବିଭୂଷଣେ ।
ଚାମୁଣ୍ଡେ ମୁଣ୍ଡମଥନେ ନାରାୟଣି ନମୋଽସ୍ତୁ ତେ ।"

୨-ବାରାହୀ —'ବାରାହୀ ମହିଷାସନା'

"ଯଜ୍ଞବାରାହ ମତୁଳଂ ରୂପଂ ଯା ବିଭ୍ରତୋ ହରେଃ ।
ଶକ୍ତିଃ ସାପ୍ୟାଯଯୌ ତତ୍ର ବାରାହୀଂ ବିଭ୍ରତୀ ତନୁମ୍ ॥" ଚଣ୍ଡୀ

ଏହି ଉତ୍ତରାଭିମୁଖୀ ଦିଗ୍ୱାସୀ ମୂର୍ତ୍ତିଙ୍କର ନାମ 'ବାରାହୀ' । ଏହି ଦେବୀମାନେ ରକ୍ତବୀଜ ବଧ ସମୟରେ ସର୍ବଶକ୍ତିମୟୀ ଦେବୀ ଦୁର୍ଗାଙ୍କ ଶରୀରରୁ ଆବିର୍ଭୂତ ହୋଇଅଛନ୍ତି । ଏହି ଦେବୀ ମହିଷବାହନା । ଏହାଙ୍କ ପାଦପଦ୍ମ ତଳେ ମହିଷଟିଏ ଅଛି । ଏହି ଦେବୀ ଯଜ୍ଞବରାହ ରୂପଧାରୀ ଭଗବାନ ବରାହଙ୍କର ଶକ୍ତି 'ବାରାହୀ' ରୂପ ଧାରଣ କରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । (ସମସ୍ତ ଦେବୀଙ୍କର ମୁଖ ଉତ୍ତରକୁ) । ଦେବୀଙ୍କର ପ୍ରଣାମ ମନ୍ତ୍ର—

"ଗୃହୀତୋଗ୍ର ମହାଚକ୍ରେ ଦଂଷ୍ଟ୍ରୋଦ୍ଧୃତ ବସୁନ୍ଧରେ ।
ବରାହ ରୂପିଣୀ ଶିବେ ନାରାୟଣି ନମୋଽସ୍ତୁ ତେ ॥" ଚଣ୍ଡୀ

୩-ଐନ୍ଦ୍ରୀ ବା ଇନ୍ଦ୍ରାଣୀ—"ଐନ୍ଦ୍ରୀ ଗଜସମାରୂଢ଼ା"
ଏହି ଦେବୀ ଗଜବାହନା । ଏହାଙ୍କ ପାଦତଳେ ଗଜଟିଏ ଅଛି ।

"ବଜ୍ରହସ୍ତା ତଥୈବୈନ୍ଦ୍ରୀ ଗଜରାଜୋପରିସ୍ଥିତା ।
ପ୍ରାପ୍ତା ସହସ୍ରନୟନା ଯଥା ଶକ୍ରସ୍ତଥୈବ ସା ॥" ଚଣ୍ଡୀ

ବଜ୍ରାୟୁଧଧାରୀ ଇନ୍ଦ୍ରଙ୍କର ଶକ୍ତି ସ୍ୱରୂପା ଏହି ଦେବୀ ଐନ୍ଦ୍ରୀ (ଇନ୍ଦ୍ରାଣୀ) । ସହସ୍ରନୟନ ଶୋଭିତ ଇନ୍ଦ୍ରଙ୍କ ପରି ଐରାବତ ଗଜାରୋହଣ ପୂର୍ବକ ବଜ୍ରାୟୁଧ ଧାରଣ କରି ସେ ରଣ କ୍ଷେତ୍ରରେ ଉପସ୍ଥିତ ହେଲେ ।

ପ୍ରଣାମମନ୍ତ୍ର—"କିରୀଟିନି ମହାବଜ୍ରେ ସହସ୍ର ନୟନୋଜ୍ଜ୍ୱଳେ ।
ବୃତ୍ର ପ୍ରାଣହରେ ଚୈନ୍ଦ୍ରୀ ନାରାୟଣି ନମୋଽସ୍ତୁ ତେ ॥" ଚଣ୍ଡୀ

୪-ବୈଷ୍ଣବୀ—"ବୈଷ୍ଣବୀ ଗରୁଡାସନା"
ଚତୁର୍ଥ ସ୍ଥାନାଧିକାରିଣୀ ଗରୁଡ଼ବାହନା ଏହି ଦେବୀ ବୈଷ୍ଣବୀ ।

"ତଥୈବ ବୈଷ୍ଣବୀ ଶକ୍ତିର୍ଗରୁଡ଼ୋପରି ସଂସ୍ଥିତା ।
ଶଙ୍ଖଚକ୍ର ଗଦା ଶାର୍ଙ୍ଗ ଖଡ୍ଗ ହସ୍ତା ଭ୍ୟୁପାଯଯୌ ॥" ଚଣ୍ଡୀ

ଗରୁଡ଼ବାହନା ବିଷ୍ଣୁଙ୍କର ଶକ୍ତି ଏହି ଦେବୀ 'ବୈଷ୍ଣବୀ' ଶଙ୍ଖ, ଚକ୍ର, ଗଦା, ଶାର୍ଙ୍ଗ (ଧନୁ) ଓ ଖଡ୍ଗ ଆୟୁଧମାନ ଧାରଣକରି ଯୁଦ୍ଧ-ଭୂମିକୁ ଆସିଥିଲେ ।

ପ୍ରଣାମମନ୍ତ୍ର—"ଶଙ୍ଖ ଚକ୍ର ଗଦା ଶାର୍ଙ୍ଗ ଗୃହୀତ ପରମାୟୁଧେ ।
ପ୍ରସୀଦ ବୈଷ୍ଣବୀ ରୂପେ ନାରାୟଣି ନମୋଽସ୍ତୁ ତେ ॥" ଚଣ୍ଡୀ

୫-ବ୍ରାହ୍ମୀ ବ୍ରହ୍ମାଣୀ—"ବ୍ରାହ୍ମୀ ହଂସସମାରୂଢ଼ା"
ପଞ୍ଚମ ସ୍ଥାନକୁ ଅଳଂକୃତ କରୁଥିବା ହଂସବାହନା ଏହି ଦେବୀ ବ୍ରାହ୍ମୀ ବା ବ୍ରହ୍ମାଣୀ ଅଟନ୍ତି ।

"ହଂସଯୁକ୍ତ ବିମାନାଗ୍ରେ ସାକ୍ଷସୂତ୍ର କମଣ୍ଡଳୁଃ ।
ଆୟାତା ବ୍ରହ୍ମଣଃ ଶକ୍ତି ବ୍ରହ୍ମାଣୀ ସାଭିଧୀୟତେ ॥" ଚଣ୍ଡୀ

ରଥ ଚୂଡ଼ାରେ ହଂସ ଶୋଭା ପାଉଥିବା (ହଂସକେତନ) ବିମାନରେ ବସି ବ୍ରହ୍ମାଙ୍କର ଶକ୍ତି ବ୍ରହ୍ମାଣୀ (ବ୍ରାହ୍ମୀ ଅକ୍ଷସୂତ୍ର ରୁଦ୍ରାକ୍ଷମାଳା) ଓ କମଣ୍ଡଳୁ ହସ୍ତରେ ଧାରଣ କରି ସମର ପ୍ରାଙ୍ଗଣରେ ଉପସ୍ଥିତ ହେଲେ । ଏହି ଦେବୀ ବୁଢ଼ୀଟିଏ ବସିଲା ଭଳି ଦୁଇ ଆଣ୍ଠୁ ଟେକି ବସିଅଛନ୍ତି ।

ପ୍ରଣାମମନ୍ତ୍ର—"ହଂସଯୁକ୍ତ ବିମାନସ୍ଥେ ବ୍ରହ୍ମାଣୀ ରୂପ ଧାରିଣି ।
କୌଶାମ୍ଭଃକ୍ଷରିକେ ଦେବି ନାରାୟଣି ନମୋଽସ୍ତୁ ତେ ॥" ଚଣ୍ଡୀ

୬-କୌମାରୀ—"କୌମାରୀ ଶିଖିବାହନା"

ଷଷ୍ଠସ୍ଥାନାଧିକାର କରିଥିବା ମୟୂର ବାହନା ଏହି ଦେବୀ କୁମାର ଅର୍ଥାତ୍ କାର୍ତ୍ତିକେୟଙ୍କର ଶକ୍ତି 'କୌମାରୀ' ଅଟନ୍ତି ।

"କୌମାରୀ ଶକ୍ତିହସ୍ତା ଚ ମୟୂରବରବାହନା ।
ଯୋଦ୍ଧୁମଭ୍ୟାଯଯୌ ଦୈତ୍ୟାନମ୍ବିକା ଗୁହରୂପିଣୀ ॥" ଚଣ୍ଡୀ

ଗୁହ ଅର୍ଥାତ୍ କାର୍ତ୍ତିକେୟଙ୍କର ଶକ୍ତି ଦେବୀ କୌମାରୀ ଦୈତ୍ୟ-ମାନଙ୍କୁ ବିନାଶ କରିବା ପାଇଁ ଆୟୁଧ ଧାରଣକରି ମୟୂର ବାହନରେ ଯୁଦ୍ଧ ଭୂମିରେ ଉପସ୍ଥିତ ହେଲେ । ଏହାଙ୍କ ପାଦପଦ୍ମ ତଳେ ମୟୂରଟିଏ ଶୋଭା ପାଉଅଛି ।

ପ୍ରଣାମମନ୍ତ୍ର—"ମୟୂର କୁକ୍କୁଟା ବୃତେ ମହାଶକ୍ତି ଧରେଽନଘେ ।
କୌମାରୀ ରୂପ ସଂସ୍ଥାନେ ନାରାୟଣି ନମୋଽସ୍ତୁ ତେ ॥" ଚଣ୍ଡୀ

୭-ମାହେଶ୍ୱରୀ—"ମାହେଶ୍ୱରୀ ବୃଷାରୂଢ଼ା"

ସପ୍ତମ ସ୍ଥାନରେ ଶୋଭା ପାଉଥିବା ଏହି ବୃଷଭବାହନା ଦେବୀ ମାହେଶ୍ୱରୀ ଅଟନ୍ତି ।

"ମାହେଶ୍ୱରୀ ବୃଷାରୂଢ଼ା ତ୍ରିଶୂଳ ବର ଧାରିଣୀ ।
ମହାହିବଳୟା ପ୍ରାପ୍ତା ଚନ୍ଦ୍ରରେଖା ବିଭୂଷଣା ॥" ଚଣ୍ଡୀ

ମହେଶ୍ୱର ଅର୍ଥାତ୍ ଶିବଙ୍କର ଶକ୍ତିରୂପା, ବୃଷଭବାହନା, ସର୍ବୋତ୍ତମ ତ୍ରିଶୂଳଧାରିଣୀ, ସର୍ପରାଜ ବାସୁକିଙ୍କୁ ବଳୟ ବା କରକଙ୍କଣ ରୂପରେ ଧାରଣ କରି ଚନ୍ଦ୍ରଚୂଡ଼ା ଏହି ଦେବୀ ମାହେଶ୍ୱରୀ ଅଟନ୍ତି । ଏହାଙ୍କ ପାଦତଳେ ବୃଷଭଟିଏ ରହିଅଛି ।

ପ୍ରଣାମମନ୍ତ୍ର—

"ତ୍ରିଶୂଳ ଚନ୍ଦ୍ରାହିଧରେ ମହାବୃଷଭବାହିନି ।
ମାହେଶ୍ୱରୀ ସ୍ୱରୂପେଣ ନାରାୟଣି ନମୋଽସ୍ତୁ ତେ ।।" ଚଣ୍ଡୀ

୮-ନାରସିଂହୀ—"ନାରସିଂହୀ ମହାବାର୍ଯ୍ୟା"

ଅଷ୍ଟମ ସ୍ଥାନରେ ଅର୍ଥାତ୍ ସର୍ବଶେଷରେ ପୂର୍ବପାଖ କାନ୍ଥପାଖରେ ମହାବୀର୍ଯ୍ୟବତୀ ଏହି ଦେବୀ ନରସିଂହଙ୍କର ଶକ୍ତି ନାରସିଂହୀ ଅବସ୍ଥିତା ।

"ନାରସିଂହୀ ନୃସିଂହସ୍ୟ ବିଭ୍ରତୀ ସଦୃଶଂ ବପୁଃ ।
ପ୍ରାପ୍ତା ତତ୍ର ସଟାକ୍ଷେପ-କ୍ଷିପ୍ତନକ୍ଷତ୍ର ସଂହତିଃ ।।" ଚଣ୍ଡୀ

ନୃସିଂହ ସଦୃଶ ଶରୀର ଧାରଣ କରି ସଟା ବା କେଶର ସମୂହରେ ଆକାଶରୁ ନକ୍ଷତ୍ରମାନଙ୍କୁ ଅପସାରଣ କରୁଥିବା ଏହି ଭୟଙ୍କରୀ ମୂର୍ତ୍ତି ନାରସିଂହୀ ଅଟନ୍ତି ।

ପ୍ରଣାମମନ୍ତ୍ର—

"ନୃସିଂହରୂପେଣୋଗ୍ରେଣ ହନ୍ତୁଂ ଦୈତ୍ୟାନ୍ କୃତୋଦ୍ୟମେ ।
ତ୍ରୈଲୋକ୍ୟତ୍ରାଣସହିତେ ନାରାୟଣି ନମୋଽସ୍ତୁ ତେ ।।"

ଏହି ମୂର୍ତ୍ତିମାନେ ପ୍ରାୟ ବିକଳାଙ୍ଗ ଅଟନ୍ତି । ଦଶାଶ୍ୱମେଧ ତୀର୍ଥରେ ସ୍ନାନ ଦାନାଦିକାର୍ଯ୍ୟର ସାକ୍ଷିସ୍ୱରୂପିଣୀ ହୋଇ ଏହି ଦେବୀମାନେ ଉତ୍ତରାଭିମୁଖୀ ହୋଇ ଅଛନ୍ତି ।

ବି: ଦ୍ର:—ପୁରାଣ ପ୍ରସିଦ୍ଧ ତନ୍ତ୍ରୋକ୍ତ ଏହି ମୂର୍ତ୍ତିମାନଙ୍କୁ ଅନଭିଜ୍ଞ ପୂଜକ ବ୍ରାହ୍ମଣମାନେ 'ଯମମାଆ ସାତଭଉଣୀ' ନାମରେ ନାମିତକରି ପରମ୍ପରାକ୍ରମେ ବିଦେଶାଗତ ଯାତ୍ରୀ ତଥା ପର୍ଯ୍ୟଟକମାନଙ୍କୁ ନାରସିଂହୀଙ୍କୁ 'ଯମ'

ଉତ୍ତମରେ ଥିବା ବ୍ରାହ୍ମୀଙ୍କୁ 'ଯମର ମା', ହସ୍ତରେ ଥିବା ବାବାଙ୍କୁ ଯମର ସ୍ତ୍ରୀ, ଏହିପରି କାହାକୁ ଯମର ଭଉଣୀ, ଯମର ପିଉସୀ, ଯମର ମାଉସୀ ତଥା ଯମର ଖୁଡ଼ୀ ବୋଲି କହି ସେମାନଙ୍କ ହୃଦୟରେ ଭୟସଞ୍ଚାର କରାଇ କିଛି କିଛି ଅର୍ଥ ଆଦାୟ କରଥାନ୍ତି ।

## ଜଗନ୍ନାଥ ମନ୍ଦିର—

ଯଯାତିକେଶରୀଙ୍କ ନିର୍ମିତ ଏହି ଜଗନ୍ନାଥ ମନ୍ଦିରରେ ଜଗନ୍ନାଥ, ବଳଦେବ, ସୁଭଦ୍ରା ଓ ସୁଦର୍ଶନଚକ୍ର, ଏହିପରି ଚତୁର୍ଦ୍ଧା (ଚତୁର୍ବିଧା ମୂର୍ତ୍ତି) ପୁରୀ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ମୂର୍ତ୍ତିମାନଙ୍କ ପରି ପ୍ରତିଷ୍ଠିତ । ପୁରୀରେ ଅବଢ଼ା ମହାପ୍ରସାଦ ପରି ଏଠାରେ ସେପରି ପ୍ରସାଦର ବ୍ୟବସ୍ଥା ନାହିଁ । କେବଳ ପ୍ରତିଦିନ ଦୁଇବେଳା ବାଲ୍ୟଭୋଗ ଓ ଅନ୍ନନୈବେଦ୍ୟ ହୁଏ । ଏହାକୁ ପୂଜକ ବ୍ରାହ୍ମଣମାନେ ସେବନ କରନ୍ତି । କେବେ କେବେ ଅତିଥି ଅଭ୍ୟାଗତ ମଧ୍ୟ ପ୍ରସାଦ ପାଇଥାନ୍ତି । ଏହାର ବ୍ୟୟଭାର ତଥା ପର୍ବପର୍ବାଣୀର ବ୍ୟୟଭାର ସ୍ଥାନୀୟ ସଦାବ୍ରତ ମଠର ମହନ୍ତ ମହାରାଜ ବହନ କରନ୍ତି । ସେବାପୂଜାପାଇଁ କାଏଗିର ଭୂସମ୍ପତ୍ତି ମଧ୍ୟ ଖଞ୍ଜାଯାଇଥିଲା । ତାହା କାଳକ୍ରମେ ପୂଜକମାନେ ଆତ୍ମସାତ୍ କରଥିଲେ ମଧ୍ୟ ପୂଜା ପ୍ରଭୃତି କାର୍ଯ୍ୟ ଯଥାତଥାକ ନିର୍ବାହ କରୁଅଛନ୍ତି । ଶ୍ରୀକ୍ଷେତ୍ର ପୁରୀ ଅନୁକରଣରେ ବାରମାସର ପର୍ବମାନ ବିଧିରକ୍ଷାରୂପରେ ଯଥାଯଥ ପାଳନ କରାଯାଏ ।

ସ୍ନାନପୂର୍ଣ୍ଣିମାରେ ଢାକୁରମାନଙ୍କୁ ସିଂହାସନରୁ ସ୍ନାନମଣ୍ଡପକୁ ପହଣ୍ଡି ଯୋଗେ ଆଣି ଢାକୁରଙ୍କର ସ୍ନାନାଦି କ୍ରିୟା ସମ୍ପାଦନ କରାଯାଏ । ସ୍ନାନପରେ ଢାକୁରମାନଙ୍କୁ ନବବସ୍ତ୍ର ପରିଧାନ କରାଇ ସୁବେଶରେ ରାତିପର୍ଯ୍ୟନ୍ତ ସ୍ନାନମଣ୍ଡପରେ ରଖାଯାଏ । ବହୁଲୋକେ ଦର୍ଶନକୁ ଯାଆନ୍ତି । ତାପରେ ଢାକୁରମାନଙ୍କୁ ସିଂହାସନକୁ ନ ନେଇ ଅଣସର (ଅନବସର) ସ୍ଥାନରେ ରଥଯାତ୍ରା ପର୍ଯ୍ୟନ୍ତ ରଖି ନୂତନଚିତ୍ରରେ ଚିତ୍ରିତ କରାଇ ନେତ୍ରୋତ୍ସବ ନବଯୌବନ ଦର୍ଶନାଦି ବିଧି ସମ୍ପାଦନପରେ ତିନୋଟି ଅଲଗାଅଲଗା ରଥରେ ବିଜେ କରାଇ ମାଉସୀବାଡ଼ିକୁ ଅର୍ଥାତ୍ ବଡ଼ବଜାର ପୂର୍ବଭାଗରେ ବଡ଼ ଧର୍ମଶାଳାକୁ ଲାଗିଥିବା ସଦାବ୍ରତ ମଠକୁ ନିଆଯାଏ । ବାହୁଡ଼ାଦଶମୀ ଦିନ ଢାକୁରଙ୍କୁ ପୁନର୍ବାର

ସେହି ରଥରେ ବିଜେ କରାଇ ମନ୍ଦିର ସମ୍ମୁଖକୁ ଅଣାଯାଇ ସେହିଠାରେ ଉତ୍ସବ କରାଯାଏ । ତତ୍ପରଦିନ ଅର୍ଥାତ୍, ଶୟନ ଏକାଦଶୀ (ବଡ଼-ଏକାଦଶୀ) ଦିନ ଦିଅଁଙ୍କୁ ରଥରୁ ଅବତରଣ କରାଇ ମୂଳ ସିଂହାସନକୁ ନେଇ 'ହରିଃ ଶେତେ ସଦାଷାଢେ' ମନ୍ତ୍ରରେ ଦିଅଁଙ୍କର ଶୟନାଦି କାର୍ଯ୍ୟ ସମ୍ପାଦନ କରାଯାଏ ।

ଚନ୍ଦନ ପୂର୍ଣ୍ଣିମାରେ ଜଗନ୍ନାଥଙ୍କର ପ୍ରତିନିଧି ମଦନମୋହନଙ୍କୁ ସୁସଜ୍ଜିତ ବିମାନରେ ନେଇ ରୂପ ଡଙ୍ଗାରେ ବସାଇ ବୈତରଣୀ ନଦୀରେ ନାବକେଳି କରାଯାଏ ।

ଏହିପରି ଦୋଳପର୍ବରେ ସେହି ମଦନମୋହନଙ୍କୁ ସୁସଜ୍ଜିତ ବିମାନରେ ବସାଇ ଦୋଳ ମଣ୍ଡପରେ ବିଜେ କରାନ୍ତି । ସେଠାରେ ଗୁଡ଼େଇ ଖେଳ ହୁଏ । ନବଦୋଳ ପଞ୍ଜିକା ଅର୍ଥାତ୍, ଏହି ବିରଜା ମଣ୍ଡଳରୁ ପ୍ରକାଶିତ ହେଉଥିବା "ବିରଜା ପଞ୍ଜିକା" ଦିଅଁଙ୍କ ସମ୍ମୁଖରେ ଜ୍ୟୋତିଷ ଠିଆହୋଇ ପାଠକରେ । ଫଗୁଖେଳ ସନ୍ଧ୍ୟା ପରେ ମେଷାସୁର ଦାହକରି (ମେଣ୍ଢାପୋଡ଼ା) ବିଜେ ପ୍ରତିମାକୁ ମନ୍ଦିରରେ ପ୍ରବେଶ କରାନ୍ତି । ଦୋଳପର୍ବରେ ଦୋଳରେ ବିଜେ କରିଥିବା ଗୋବିନ୍ଦଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହୁଏ ନାହିଁ ବୋଲି ପ୍ରମାଣ ମିଳେ ।

"ଦୋଳାୟାଂ ଦୋଳଗୋବିନ୍ଦଂ ମଞ୍ଚେତୁ ମଧୁସୂଦନମ୍ ।
ରଥେଚ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ଲଭ୍ୟତେ ॥"

କାର୍ତ୍ତିକମାସ କାର୍ତ୍ତିକୀ ପୂର୍ଣ୍ଣିମା ଦିନ କାଞ୍ଚୀ ଅଭିଯାନର ସ୍ମାରକ ସ୍ୱରୂପ ଶ୍ରୀକ୍ଷେତ୍ର ପରି ଏଠି ଜଗନ୍ନାଥ, ବଳଦେବ କଳାଘୋଡ଼ା, ଧଳା-ଘୋଡ଼ାରେ ଆରୋହଣ କରି କାଞ୍ଚୀକାବେରୀ ବେଶ ହୁଅନ୍ତି ।

ମାଘମାସ ଶ୍ରୀପଞ୍ଚମୀଦିନ ଏଠି ଜଗନ୍ନାଥ, ବଳଭଦ୍ର ପ୍ରଭୃତି ଦିଅଁ-ମାନେ ହସ୍ତପଦାଦି ବିଶିଷ୍ଟ ଗଜୋଦ୍ଧାରଣ ବେଶରେ ସୁସଜ୍ଜିତ ହୁଅନ୍ତି । ଏହି-ପରି ଯେଉଁ ମାସରେ ଯେଉଁ ପର୍ବ ପଡ଼େ, ତାହା ଅଳ୍ପବହୁତ ପାଳନ କରାଯାଏ ।

## ମେଷାସୁର ଦାହ ବା ମେଣ୍ଢାଘର ପୋଡ଼ର ଇତିବୃତ୍ତ :—

ଥରେ ଗୋଟିଏ ଅସୁରକନ୍ୟା 'ହୁଲି' ଗୋଟିଏ ପୁତ୍ରଲାଭ ପାଇଁ ଚତୁଷ୍ପାର୍ଶ୍ୱରେ ଅଗ୍ନି ଜାଳି ବିଷ୍ଣୁଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ତପସ୍ୟା କରୁଥିଲା । ବିଷ୍ଣୁ ସନ୍ତୁଷ୍ଟ ହୋଇ ହୁଲିକୁ ବରପ୍ରାର୍ଥନା କରିବାକୁ କହିଲେ । ହୁଲି ଉଲ୍ଲବୀର୍ଯ୍ୟ ପରି ପୁତ୍ରବର ପ୍ରାର୍ଥନା କରି କହିଲା—ଏହି ପୁତ୍ରର ରକ୍ତ-ବିନ୍ଦୁ ଭୂମିରେ ପଡ଼ିଲେ ତଦନୁରୂପ ବଳବୀର୍ଯ୍ୟଶାଳୀ ବ୍ୟକ୍ତି ଜାତ ହେବ । ବିଷ୍ଣୁ 'ତଥାସ୍ତୁ' କହି ଅନ୍ତର୍ହିତ ହେଲେ ।

କିଛିଦିନ ପରେ ମେଣ୍ଢାମୁଣ୍ଡ ବିଶିଷ୍ଟ ବଳବାନ୍ ପୁତ୍ରଟିଏ ଜାତହେଲା । ତା'ର ନାମ ରଖାଗଲା 'ମେଷାସୁର' । ଏହି ମେଷାସୁର କାଳକ୍ରମେ ହୃଷ୍ଟପୁଷ୍ଟ ହୋଇ ବ୍ରଜପୁରରେ ପଶି ଗୋପାଳଶିଶୁମାନଙ୍କୁ ଭକ୍ଷଣ କରିବାକୁ ଲାଗିଲା । ଗୋପୀମାନେ ଭୟଭୀତ ହୋଇ ମେଷାସୁରର ବିନାଶପାଇଁ ଶ୍ରୀକୃଷ୍ଣଙ୍କ ନିକଟରେ ଶରଣାପନ୍ନ ହେଲେ । ଶ୍ରୀକୃଷ୍ଣ ଗୋପୀଙ୍କର ନିବେଦନ ଶୁଣି କହିଲେ—ମେଷାସୁରକୁ ବିନାଶ କରିବା କଠିନ; କାରଣ, ମୁଁ ବିଷ୍ଣୁ ଅବତାରରେ ତା'ର ରକ୍ତବିନ୍ଦୁ ଭୂମିରେ ପଡ଼ିଲେ ତଦନୁରୂପ ଅସୁର ଜାତ ହେବ ବୋଲି ବର ଦେଇଛି । ତେବେ, ଏହାକୁ ବଧ କରିବାର ଗୋଟିଏ ଉପାୟ କର, ଘର ଆଡ଼େ କାଠର ଘରଟିଏ ପ୍ରସ୍ତୁତ କର । ଆସନ୍ତାକାଲି ଦୋଳ ପୂର୍ଣ୍ଣିମାର ପୂର୍ବ ରାତ୍ରରେ ମେଷାସୁର ଆସିବାସମୟରେ ମୁଁ ତାହା ସମ୍ମୁଖରେ ଶିଶୁରୂପ ଧରି ହୋଇ ଉପସ୍ଥିତ ହେବି । ସେ ମୋତେ ଗିଳି-ଦେଲେ ମୁଁ ତାହାର ଗଳାରେ ଅଟକି ରହି ବିରାଟ ରୂପ ଧାରଣ କରିବି । ଯେତେବେଳେ ମେଷାସୁରର ଶ୍ୱାସ ପ୍ରଶ୍ୱାସ ବନ୍ଦ ହୋଇଯିବ, ତୁମ୍ଭେମାନେ କୁଟା ବା ଖାଡ଼ି ସାହାଯ୍ୟରେ ସ୍ଥାନେ ସ୍ଥାନେ ସଜାଡ଼ିଥିବା ଗୃହଟିରେ ବା କାଠ-ଗଦାରେ ନିଆଁ ଲଗାଇ ଦେଇ ଏହି ଅସୁରକୁ ଟେକିନେଇ ସେହି ନିଆଁ-ଗଦାରେ ପକାଇ ଦେଇ ମାଡ଼ିବସିବ । ଯେବେ ତା'ର ନାକରୁ, ପାଟିରୁ ବା ଆଖିରୁ ରକ୍ତସ୍ରାବ ହୁଏ, ତେବେ ଅଙ୍ଗର ଗୁଡ଼ି ସ୍ରୋତକୁ ବନ୍ଦ କରିଦେବ ଓ ସେହି ରକ୍ତବୋଳା ଅଙ୍ଗକୁ ନିଆଁକୁ ପକାଇଦେବ, ଯେପରି ତାର ବୁନ୍ଦାଏ ରକ୍ତ ମାଟିରେ ନ ପଡ଼େ । ରକ୍ତ ମାଟିରେ ପଡ଼ିଲେ ସେହିପରି ଅସୁରଟିଏ

ଜାଳ ଦେବ । ଅସୁର ନିଶ୍ଚେଜ ହୋଇ ନିଆଁରେ ପଡ଼ି ରହିଲେ ମୁଁ ବାହାର ଆସିବି । ମୋ ଦେହରେ ଲାଗିଥିବା ରକ୍ତରେ ଅବିର ଗୁଡ଼ି ସେହି ରକ୍ତ-ବୋଳା ଅବିରକୁ ନିଆଁରେ ପକାଇ ଜାଳିଦେବ । ଯେ ପର୍ଯ୍ୟନ୍ତ ମେଣ୍ଢାସୁର ଶରୀର ସମ୍ପୂର୍ଣ୍ଣ ଦଗ୍ଧ ନ ହୋଇଛି, ସେ ପର୍ଯ୍ୟନ୍ତ ତାହାକୁ ପୋଡୁଥିବ ।

ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସେହିପରି କରାଗଲା । ଏହାଶୁଣି ତାହାର ମା ହୁଳି ଆସି ନିଆଁରେ ପଡି ମେଷାସୁରଠାରୁ ରକ୍ତ ଅପହରଣ କରିବାକୁ ଚେଷ୍ଟା କଲା । ଶେଷରେ ତାର ସମସ୍ତ କାର୍ଯ୍ୟ ପଣ୍ଡହେଲା । ହୁଳି ଶ୍ରୀକୃଷ୍ଣଙ୍କୁ ସାକ୍ଷାତ ଭଗବାନ ବୋଲି ଜାଣିପାରି ନିଜର ପ୍ରାଣ ଭିକ୍ଷାକଲା । ଭକ୍ତ ବତ୍ସଳ ଶ୍ରୀକୃଷ୍ଣ ହୁଳୀର ପ୍ରାଣରକ୍ଷା କରିବାରୁ ହୁଳି ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଅବିର ଲେପନ କଲା ।

ସେହିଦିନଠାରୁ ଦୋଳପୂର୍ଣ୍ଣିମାରେ ଗୃହେଷୀ ଅର୍ଥାତ୍ କାଷ୍ଠ-ସ୍ତୂପରେ ଅଗ୍ନି ସଂଯୋଗ କରି ଶ୍ରୀକୃଷ୍ଣଙ୍କୁ ତା' ଚାରିପାଖରେ ବୁଲାଇବା, ଅବିର ଖେଳିବା, ଅବିର ଦେହରେ ବୋଳିବା ଓ ଦୋଳିରେ ବସାଇ ଦୋଳ-ଗୋବିନ୍ଦଙ୍କୁ ଝୁଲାଇବା ପ୍ରଭୃତି ପ୍ରଥା ପ୍ରଚଳିତ ହୋଇଅଛି ।

## ଲକ୍ଷ୍ମୀମନ୍ଦିର :—

ପୁରୀରେ ଲକ୍ଷ୍ମୀଙ୍କ ମନ୍ଦିର ଯେପରି ସ୍ୱତନ୍ତ୍ର ଅଛି, ଯାଜପୁରରେ ସେହିପରି ଲକ୍ଷ୍ମୀ ମନ୍ଦିର ସ୍ୱତନ୍ତ୍ର ନଥିଲା । ଏହି ଲକ୍ଷ୍ମୀ ସିଂହାସନରେ ଶ୍ରୀଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ରହୁଥିଲେ । ଜଗନ୍ନାଥଙ୍କ ପୂଜକ ୰ ପୂର୍ଣ୍ଣାନନ୍ଦ ପାଣି ବଦାନ୍ୟ ଧର୍ମପରାୟଣ ବ୍ୟକ୍ତିଙ୍କଠାରୁ କିଛି କିଛି ଅର୍ଥ ସଂଗ୍ରହ କରି ତଥା ନିଜେ କିଛି ବ୍ୟୟକରି ସିଂହଦ୍ୱାରରେ ଥିବା ଗରୁଡ଼ ସ୍ତମ୍ଭର ଦକ୍ଷିଣକୁ ଆଧୁନିକ କାରୁକାର୍ଯ୍ୟ ବିମଣ୍ଡିତ ମନ୍ଦିରଟିଏ ନିର୍ମାଣ କରାଇ ତହିଁରେ ଲକ୍ଷ୍ମୀ-ଦେବୀଙ୍କୁ ସ୍ଥାପନ କରି ଅଛନ୍ତି । ଏହି ମନ୍ଦିରଟି ଧର୍ମଶାଳା ନିକଟରେ ବିଦ୍ୟମାନ ।

## ତ୍ରୟୋଦଶ ରୁଦ୍ର— (ପରିଚୟ, ସ୍ଥାନନିରୂପଣ ଓ ଦର୍ଶନବିଧି—)

"ଅନ୍ତର୍ବାନ୍ତର୍ଗୃହେ ମଧ୍ୟାସ୍ଥାଃ ରୁଦ୍ରାଃ ଷଟ୍‌ସପ୍ତକୀର୍ତ୍ତିତାଃ ।
ଏତେ ଗୁପ୍ତତର ଦେବ ପୁଣ୍ୟଭାଜାଂ ତୁ ଗୋଚରାଃ ॥

ଏତେଷାଂ ଦର୍ଶନଂ ଦେବ ଯଃ କୁର୍ଯ୍ୟାଦ୍ ବିଧିପୂର୍ବକମ୍ ।
ତସ୍ୟ ପୁଣ୍ୟଫଳଂ ଶକ୍ୟଂ ନ ମୟା ବକ୍ତୁମର୍ହିକେ ॥"
(ବ୍ରୁ: ପୁ: ୭ଅ, ୧୭, ୧୮)

ଏହି କ୍ଷେତ୍ରର ଅନ୍ତର୍ଗତ ମଧ୍ୟରେ ତ୍ରୟୋଦଶ ରୁଦ୍ର ଅତି ଗୋପନୀୟ ଭାବରେ ଅଛନ୍ତି । ପୁଣ୍ୟାତ୍ମାମାନେ ଏହାଙ୍କୁ ଦର୍ଶନ କରି ପାରନ୍ତି । ହେ ଦେବ ! ଯେଉଁ ବ୍ୟକ୍ତି ବିଧିପୂର୍ବକ ଏମାନଙ୍କୁ ଦର୍ଶନ କରେ, ତାର ପୁଣ୍ୟଫଳ ଅବର୍ଣ୍ଣନୀୟ ।

"ଆଷାଢ଼େ ତୁ ଚତୁର୍ଦ୍ଦଶ୍ୟାଂ କୃଷ୍ଣାୟାଂ ଯଯତେନ୍ଦ୍ରିୟଃ ।
ତ୍ରୟୋଦଶୀ ମୁପୋଷ୍ୟାଥ ସମାହିତମନାଃ ନରଃ ॥" ୨୦
× × × ×
ସଙ୍କଳ୍ପ୍ୟ ମୌନମାସ୍ଥାୟ ତତୋ ବୈ କଶ୍ୟପେଶ୍ୱରମ୍ ।
ଦୃଷ୍ଟ୍ୱାଭିବନ୍ଦ୍ୟ ତଲ୍ଲିଙ୍ଗଂ ନାସ୍ୟ ଜନ୍ମ ପୁନର୍ଭବେତ୍ ॥"
(୨୨ ବ୍ରୁ: ପୁ: ୭ଅ)

୧-କଶ୍ୟପେଶ୍ୱର—

ଆଷାଢ଼ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ଯଥାବିଧି ଉପବାସକରି ଚତୁର୍ଦ୍ଦଶୀ ଦିନ ପ୍ରଭାତରେ ବରାହଙ୍କ ଦକ୍ଷିଣରେ ଥିବା ବିଶ୍ୱେଶ୍ୱରଙ୍କ ସମ୍ମୁଖରେ ବୈତରଣୀର ବିଶ୍ୱରୂପ ତୀର୍ଥରେ ସ୍ନାନକରି ବରାହଙ୍କ ଦକ୍ଷିଣଭାଗସ୍ଥିତ ଯୋଡ଼ବାସିନୀ ମନ୍ଦିର ମଧ୍ୟରେ କଶ୍ୟପେଶ୍ୱରଙ୍କୁ ଦର୍ଶନ କରିବ ।

୨-ହରିକେଶ—

"ତତୋ ମହର୍ଷିତୀର୍ଥଂ ତୁ ଗଚ୍ଛେତ୍ ପୁଣ୍ୟଂ ବରାନନେ ।
ତତ୍ର ସ୍ନାନଂ ବିଧାୟାଥ ହରିକେଶସ୍ୟ ଦର୍ଶନମ୍ ॥"
(ବ୍ରୁ. ପୁ. ୭ଅ, ୨୩)

ବେଣୀବନ୍ତି (ବେଙ୍ଗା) ନଦୀର ମହର୍ଷିତୀର୍ଥରେ ସ୍ନାନକରି ସିଦ୍ଧେଶ୍ୱରଙ୍କ ପୂର୍ବରେ ଥିବା 'ହରିକେଶ' ଲିଙ୍ଗଙ୍କୁ ଦର୍ଶନ କରିବ ।

## ୩- ଗଙ୍ଗେଶ୍ୱର—

"ଗଙ୍ଗାତୀର୍ଥଂ ତତୋ ଗଚ୍ଛେତ୍ ଯତ୍ର ଗଙ୍ଗେଶ୍ୱରଂ ଶିବମ୍ ।
ସ୍ନାତ୍ୱା ଦୃଷ୍ଟ୍ୱା ବଧାନେନ ରାଜସୂୟ ଫଳଂ ଲଭେତ୍ ॥" ୨୫

ଗାରଡ଼େଶ୍ୱର ଗ୍ରାମର ପଶ୍ଚିମ ବୈତରଣୀ ନଦୀର ଗଙ୍ଗା ତୀର୍ଥରେ ସ୍ନାନକରି ଗଙ୍ଗେଶ୍ୱରଙ୍କୁ ଦର୍ଶନ କଲେ ରାଜସୂୟ ଯଜ୍ଞଫଳ ମିଳେ ।

## ୪- କୀକଟେଶ୍ୱର—

"ତସ୍ମାଦପରେଣ ଦ୍ୱିଜେ ! ସ୍ନାତ୍ୱା ତୀର୍ଥେଽସ୍ଥିକ୍ଷେପଣାଙ୍କକେ ।
କୀକଟେଶଂ ତତଃ ପଶ୍ୟେତ୍ କୀର୍ତ୍ତିମାପ୍ନୋତି ପୁଷ୍କଳାମ୍ ॥" ୨୬

ସିଦ୍ଧେଶ୍ୱରଙ୍କ ଉତ୍ତର ପାର୍ଶ୍ୱସ୍ଥ ବୈତରଣୀ ତଟରେ ଅସ୍ଥିକ୍ଷେପଣ ତୀର୍ଥରେ ସ୍ନାନକରି ସେହି ତୀର୍ଥର ଦକ୍ଷିଣରେ ଅବସ୍ଥିତ କୀକଟେଶ୍ୱରଙ୍କୁ ଦର୍ଶନ କଲେ ଲୋକ ଅପରିସୀମକୀର୍ତ୍ତି ଲାଭକରେ । ଏହି ତୀର୍ଥରେ ଲୋକେ ପିତୃ, ମାତୃ ପ୍ରଭୃତିଙ୍କର ଅସ୍ଥି କ୍ଷେପଣ କରନ୍ତି ବୋଲି ଏହାକୁ ଅସ୍ଥିକ୍ଷେପଣ ତୀର୍ଥ କୁହାଯାଇଅଛି ।

## ୫- ଭାରଭୂତେଶ୍ୱର—

"ତସ୍ମାତ୍ ଯଯାତିତୀର୍ଥଂ ତୁ ଭାରଭୂତେଶ୍ୱରଂ ଶିବମ୍ ।
ଦୃଷ୍ଟ୍ୱା ଶତସମାଃ ପୁଣ୍ୟତୀର୍ଥ ସ୍ନାନଫଳଂ ଲଭେତ୍ ॥" ୨୭

ଅଟଚ୍ଛେଶ୍ୱରଙ୍କ ଈଶାନ କୋଣରେ ୨୦୦ ହାତ ଦୂରରେ ରାଜପୁର ନିକଟବର୍ତ୍ତୀ ବୈତରଣୀ ତୀରରେ ଅବସ୍ଥିତ 'ଯଯାତିତୀର୍ଥ'ରେ ସ୍ନାନକରି ଅଟଚ୍ଛେଶ୍ୱରଙ୍କ ନୈଋତ କୋଣରେ ଥିବା 'ଭାରଭୂତେଶ୍ୱର'ଙ୍କୁ ଦର୍ଶନ କଲେ ଶହେବର୍ଷ ପୁଣ୍ୟତୀର୍ଥ ସ୍ନାନର ଫଳ ଲାଭହୁଏ ।

## ୬- ବୈଦ୍ୟନାଥ—

"ସ୍ୱର୍ଗଦ୍ୱାରଂ ତତୋ ଗଚ୍ଛେତ୍ ବୈଦ୍ୟନାଥାଖ୍ୟମନ୍ତିକେ ।
ଦୃଷ୍ଟ୍ୱା ଫଳମବାପ୍ନୋତି ପୌଣ୍ଡରୀକ ଶତୋଦ୍ଭବମ୍ ॥" ୨୮

ବରଜାଙ୍କ ଦକ୍ଷିଣରେ ପାଠପଡ଼ା ଗ୍ରାମର ଉତ୍ତରରେ ଥିବା ସ୍ୱର୍ଗଦ୍ୱାର ତୀର୍ଥରେ ସ୍ନାନକରି ନାଭିଗୟାର ପୂର୍ବରେ ଥିବା 'ବୈଦ୍ୟନାଥ'ଙ୍କୁ ଦର୍ଶନ କଲେ ଶତ ପୌଣ୍ଡ୍ରିକତୀର୍ଥ ସ୍ନାନର ଫଳଲାଭ ହୁଏ ।

## ୭-ମୁକ୍ତେଶ୍ୱର—

"ତସ୍ମାତ୍ ମୁକ୍ତେଶନାମାନଂ ତୀର୍ଥଂ ପାପ ପ୍ରଣାଶନମ୍ ।
ଗତ୍ୱା ସ୍ନାତ୍ୱା ମହାଦେବ ଗୋକୋଟି ଫଳଭାଗ୍ ଭବେତ୍ ॥" ୨୯

ଜଗନ୍ନାଥ ବେଢ଼ା ମଧ୍ୟସ୍ଥିତ ମୁକ୍ତେଶ୍ୱରଙ୍କ ଆଗରେ ଥିବା ମୁକ୍ତି ତୀର୍ଥରେ ସ୍ନାନକରି ଜଗନ୍ନାଥଙ୍କ ବାୟୁକୋଣସ୍ଥ 'ମୁକ୍ତେଶ୍ୱର'ଙ୍କୁ ଦର୍ଶନକଲେ କୋଟି ସଂଖ୍ୟକ ଗୋଦାନର ଫଳଲାଭ ହୁଏ ।

## ୮-ଗୋକର୍ଣ୍ଣେଶ୍ୱର—

"ତତୋ ଗୋକର୍ଣ୍ଣ ନାମାନମଭିବନ୍ଦ୍ୟ ମହେଶ୍ୱରମ୍ ।
ଅନ୍ଧତାଂ ପ୍ରାକ୍ତନାନାଂ ତୁ ପ୍ରାପ୍ନୋତ୍ୟନ୍ତଂ ଶୁଚିସ୍ମିତେ ॥ ୩୦

ତ୍ରିଲୋଚନଙ୍କ ଦକ୍ଷିଣରେ ଗୋକର୍ଣ୍ଣ ତୀର୍ଥରେ ସ୍ନାନକରି ଗୋକର୍ଣ୍ଣେଶ୍ୱରଙ୍କୁ ଦର୍ଶନ କଲେ ପୂର୍ବଜନ୍ମାର୍ଜିତ ପାତକମୂହରୁ ଲୋକ ମୁକ୍ତିଲାଭ କରେ ।

## ୯-ହାଟକେଶ୍ୱର—

"ତତୋଽଗ୍ନି ତୀର୍ଥେ ସୁସ୍ନାତୋ ହାଟକେଶଂ ମହେଶ୍ୱରମ୍ ।
ନମସ୍କୃତ୍ୟ ପ୍ରପଦ୍ୟେତ ସର୍ବାନ୍ କାମାନ୍ ପ୍ରସନ୍ନତଃ ॥" ୩୧

ଜଗନ୍ନାଥବେଢ଼ାର ପଶ୍ଚିମ ନୈଋତ କୋଣରେ ଡାକ୍ତର ଶ୍ରୀ ଭବାନୀ ଶଙ୍କର ଦାଶଙ୍କ ଗୃହ ଦକ୍ଷିଣରେ ଯେଉଁ ଅପରିଷ୍କାର ପୋଖରୀଟି ଦେଖାଯାଏ, ତାହାହିଁ ଅଗ୍ନି ତୀର୍ଥ । ସେହି ତୀର୍ଥରେ ସ୍ନାନକରି ବେଢ଼ା ମଧ୍ୟସ୍ଥିତ ହାଟକେଶ୍ୱରଙ୍କୁ ଦର୍ଶନ କଲେ ଲୋକର ସମସ୍ତ କାମନା ସିଦ୍ଧହୁଏ ।

## ୧୦-ମାର୍କଣ୍ଡେୟେଶ୍ୱର—

ତତଃ ଶୂଳନୀ ତୀର୍ଥେ ତୁ ମାର୍କଣ୍ଡେୟଂ ବରାନନେ ।
ଦୃଷ୍ଟ୍ୱା ଫଳମବାପ୍ନୋତି ଶିବଲିଙ୍ଗାସ୍ଥିତାର୍ଚ୍ଚନାତ୍ ॥" ୩୨

ବରଜାଙ୍କ ସମ୍ମୁଖ କାମାକ୍ଷୀ ଦେବୀଙ୍କ ପଶ୍ଚିମରେ ଅବସ୍ଥିତ 'ଶୂଳଗ୍ନ' ତୀର୍ଥରେ ସ୍ନାନକରି ବେଢ଼ା ମଧ୍ୟସ୍ଥିତ 'ମାର୍କଣ୍ଡେୟେଶ୍ୱର'ଙ୍କୁ ଦର୍ଶନ କଲେ ଲୋକ ଅଯୁତ ସଂଖ୍ୟକ ଶିବଲିଙ୍ଗ ପୂଜାର ଫଳ ଲାଭକରେ ।

୧୧-**ଅପ୍ସରେଶ୍ୱର**—

"ଉର୍ବଶୀତୀର୍ଥ ମେତସ୍ମାତ୍ ପଶ୍ୟେତ୍ ତଦାପ୍ସରେଶ୍ୱରମ୍ ।
ତଦାରାଧ୍ୟ ଶିବଂ ଦେବ ସର୍ବସ୍ମାତ୍ ମୁଚ୍ୟତେଽଂହସଃ ॥" ୩୩

ବରଜାମନ୍ଦିର ଉତ୍ତରଭାଗସ୍ଥିତ କାର୍ତ୍ତିକେୟଙ୍କ ଉତ୍ତରରେ ଅବସ୍ଥିତ, 'ଉର୍ବଶୀ' ତୀର୍ଥରେ ସ୍ନାନକରି ବେଢ଼ାମଧ୍ୟରେ ଥିବା 'ଅପ୍ସରେ-ଶ୍ୱର'ଙ୍କୁ ଦର୍ଶନ ଓ ଆରାଧନା କଲେ ଲୋକ ସକଳ ପ୍ରକାର ପାପରୁ ମୁକ୍ତିଲାଭ କରେ ।

୧୨-**ଚନ୍ଦ୍ରଗୁପ୍ତେଶ୍ୱର**—

"ଚନ୍ଦ୍ରଗୁପ୍ତଂ ତତୋ ଗଚ୍ଛେତ୍ ସ୍ନାତ୍ୱା ତୀର୍ଥେ ସମାହିତଃ ।
ଦୃଷ୍ଟ୍ୱାଭିବନ୍ଦ୍ୟ ଦେବେଶଂ ମୁଚ୍ୟତେ ଯମପାଶତଃ ॥" ୩୪

ଚମ୍ପାମଣ୍ଡେଇ ଗ୍ରାମର ପୂର୍ବ ଦିଗରେ 'ଗୌରୀକୁଣ୍ଡ' ନାମରେ ବିଖ୍ୟାତ 'ଯମତୀର୍ଥ'ରେ ସ୍ନାନକରି ଏବଂ ଚମ୍ପାମଣ୍ଡେଇ ଗ୍ରାମର ପଶ୍ଚିମରେ ପ୍ରାଣାୟାମେଶ୍ୱରଙ୍କ ସମ୍ମୁଖରେ ପଶ୍ଚିମାଭିମୁଖ 'ଚନ୍ଦ୍ରଗୁପ୍ତେଶ୍ୱର'ଙ୍କୁ ଦର୍ଶନ କରି ନମସ୍କାର କଲେ ଲୋକ ଯମପାଶରୁ ମୁକ୍ତହୁଏ । ଅର୍ଥାତ୍ ତାଙ୍କୁ ଯମ-ଯାତନା ଭୋଗ କରିବାକୁ ପଡ଼େ ନାହିଁ ।

୧୩-**ମାନସେଶ୍ୱର**—

ରୌଦ୍ରଂ ତୀର୍ଥଂ ତତୋଗଚ୍ଛେତ୍ ସ୍ନାତ୍ୱା ବୈ ମାନସେଶ୍ୱରମ୍ ।
ଦୃଷ୍ଟ୍ୱାଭିବନ୍ଦ୍ୟ ପ୍ରାପ୍ନୋତି ଫଳଂ ଯଜ୍ଞାଯୁତସ୍ୟ ଚ ॥" ୩୫

କୁଆମଣ୍ଡେଇ ଗ୍ରାମର ପୂର୍ବରେ ଅବସ୍ଥିତ ରୌଦ୍ର ତୀର୍ଥରେ ସ୍ନାନକରି 'ଗୌରୀକୁଣ୍ଡ' ନିକଟବର୍ତ୍ତୀ ମାନସେଶ୍ୱରଙ୍କୁ ଦର୍ଶନ କରି ନମସ୍କାର କଲେ ଅଯୁତ ସଂଖ୍ୟକ ଯଜ୍ଞର ଫଳଲାଭ ହୁଏ ।

"ସ୍ନାତ୍ୱା ତୁ କାପିଳେଶତୀର୍ଥେ ଦୃଷ୍ଟ୍ୱା କପିଳଶଙ୍କରମ୍ ।
ଯୁଗାନ୍ୟଷ୍ଟୌ ନିବାସେ ତୁ କାଶ୍ୟାଂ ଫଳମବାପ୍ନୁୟାତ୍ ॥" ୩୭

ଏହାପରେ ତ୍ରୟୋଦଶ ରୁଦ୍ରଙ୍କର ପରିକ୍ରମା ଓ ଦର୍ଶନ ପୂଜାଦି ସମାପନ ପୂର୍ବକ କପିଳେଶ୍ୱର ଗ୍ରାମ ନିକଟବର୍ତ୍ତୀ କପିଳେଶ୍ୱର ଶିବଙ୍କ ଉତ୍ତରରେ ଅବସ୍ଥିତ 'କପିଳତୀର୍ଥ'ରେ ସ୍ନାନକରି 'କପିଳେଶ୍ୱର'ଙ୍କୁ ଦର୍ଶନ କଲେ ଲୋକ ଅଷ୍ଟଯୁଗ କାଶୀବାସର ଫଳ ଲଭକରେ । ଆହୁରିମଧ୍ୟ—

"କୃଷ୍ଣପକ୍ଷେ ଚତୁର୍ଦ୍ଦଶ୍ୟାଂ କାପିଳେ ସ୍ନାତି ଯୋ ନରଃ ।
ତସ୍ୟତୁଷ୍ଟା ଭବେଦ୍ କ୍ଷିପ୍ରଂ ଶୈଳେନ୍ଦ୍ରତନୟା ଭୃଶମ୍ ॥" କ: ୬୯

କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିରେ ଯେଉଁ ମାନବ କପିଳତୀର୍ଥରେ ସ୍ନାନକରେ, ତାହାପ୍ରତି ପାର୍ବତୀ ସନ୍ତୁଷ୍ଟ ହୋଇ ଅଭୀଷ୍ଟବର ପ୍ରଦାନ କରନ୍ତି ।

"ବଦ୍ଧାଞ୍ଜଳି ସ୍ତଦା ଦେବଂ ପ୍ରାର୍ଥୟେତ୍ ପୁରତଃ ଶିବେ ।
ରୁଦ୍ରାଣାଂ ଦର୍ଶନଂ ଦେବ ଗ୍ରନ୍ଥୋକ୍ତବିଧିନା ମୟା ॥
କୃତଂ ବିଶ୍ୱବନ୍ଦ୍ୟସ୍ୟ ପ୍ରୀତୟେ ତବ ଚେଶ୍ୱର ॥" ବୃ. ସ୍ୱ. ୪୯

ତାହାପରେ ତ୍ରୟୋଦଶ ରୁଦ୍ରଦର୍ଶକ ବ୍ୟକ୍ତି କପିଳେଶ୍ୱରଙ୍କ ସମ୍ମୁଖରେ ବଦ୍ଧାଞ୍ଜଳି ହୋଇ ପ୍ରାର୍ଥନା କରିବ—ହେ ଦେବଦେବ ମହାଦେବ ! ବିଶ୍ୱପୂଜ୍ୟ ! ଆପଣଙ୍କର ପ୍ରୀତି ସମ୍ପାଦନ ପାଇଁ ଗ୍ରନ୍ଥୋକ୍ତ ନିୟମାନୁସାରେ ମୁଁ ତ୍ରୟୋଦଶ ରୁଦ୍ରଙ୍କର ଦର୍ଶନ ସମ୍ପାଦନ କରିଅଛି । ମୋ ପ୍ରତି ପ୍ରସନ୍ନ ହୁଅ ।

"ବଟମୂଳଂ ତତୋ ଗଚ୍ଛେତ୍ ଜପେଚ୍ଚ ଶତରୁଦ୍ରୀୟକମ୍ ।
ଏବଂ କୃତେ ଭବେଦ୍ଦେବ ପରିପୂର୍ଣ୍ଣମିଦଂ ବ୍ରତମ୍ ॥" ୫୨

ତାହାପରେ କପିଳେଶ୍ୱରଙ୍କ ସମ୍ମୁଖବର୍ତ୍ତୀ ଧର୍ମବଟ ମୂଳକୁଯାଇ 'ଶତରୁଦ୍ର' ମନ୍ତ୍ରପାଠ କଲେ ତ୍ରୟୋଦଶ ରୁଦ୍ର ଦର୍ଶନ ବ୍ରତ ପରିପୂର୍ଣ୍ଣ ହୁଏ ।

## ଆଖଣ୍ଡଳେଶ୍ୱର—

"ଆଖଣ୍ଡଳସ୍ତୁ ତତ୍ରାସ୍ତେ ପାର୍ବତୀଶୋ ଜଗତ୍ପତିଃ ।
ତମାଲୋକ୍ୟ ପ୍ରଯତ୍ନେନ ଯମଲୋକଂ ନ ଗଚ୍ଛତି ॥" କ:ସ: ୧୦୦

ବଡ଼ବଜାର ଛକରୁ ତରଜା ମନ୍ଦିର ଆଡ଼କୁ ଆସିବାବେଳେ ଛକର ଅଳ୍ପ ଦୂରରେ ଥିବା ନିଜ ଦକ୍ଷିଣ ପାର୍ଶ୍ୱରେ ଏକ କ୍ଷୁଦ୍ର ଦୁର୍ଗ ମଧ୍ୟରେ ଯେଉଁ ଶିବ ମନ୍ଦିରଟି ଦେଖାଯାଏ, ସେହି ଶିବଙ୍କ ନାମ 'ଆଖଣ୍ଡଳେଶ୍ୱର' । ଏହି ଶିବଙ୍କର ନାମ ଇନ୍ଦ୍ରଙ୍କର ଅପରନାମ 'ଆଖଣ୍ଡଳ' ନାମରେ ନାମିତ । ଏହି ମନ୍ଦିରର ପଶ୍ଚାଦ୍‌ଭାଗରେ ଯେଉଁ ଅର୍ଦ୍ଧଲୁପ୍ତ ପୁଷ୍କରିଣୀଟି ଦେଖାଯାଏ, ତାହାକୁ ପ୍ରଭାସତୀର୍ଥ, ଲୁପ୍ତଗଙ୍ଗା ବା ଗୁପ୍ତଗଙ୍ଗା କୁହାଯାଏ । ଏହି ଶିବ ତଥା ଗଙ୍ଗା ବିଷୟରେ ବ୍ରହ୍ମାଣ୍ଡ ପୁରାଣରେ କୁହାଯାଇଛି । ଏହି ଶିବଙ୍କୁ ଯତ୍ନର ସହିତ ଦର୍ଶନକଲେ ଲୋକ ଯମଲୋକକୁ ଯାଏନାହିଁ । ଏହାଙ୍କର ଇତିବୃତ୍ତ :—

"ପୁରା ଗୌତମ ଶାପେନ ଅହଲ୍ୟାସ୍ପର୍ଶ ପାଂଶୁଳଃ ।
କ୍ଷୀଣଲକ୍ଷ୍ମୀଃ ସ୍ଖଳଦ୍‌ବୀର୍ଯ୍ୟଃ ଶାନ୍ତଚିତ୍ତଃ ସମୁନ୍ନତଃ ॥" ବ୍ର ପୁ.

ଏହି ଆଖଣ୍ଡଳେଶ୍ୱରଙ୍କ ଉତ୍ପତ୍ତି ବିଷୟରେ ପାର୍ବତୀ ଶିବଙ୍କୁ ପଚାରିବାରୁ ଶିବ କହିଲେ—ହେ ଗିରନନ୍ଦିନି ! ପୂର୍ବକାଳରେ ଦେବରାଜ ଇନ୍ଦ୍ର ତପସ୍ୱି ପ୍ରବର ଗୌତମଙ୍କର ପତ୍ନୀ ଅହଲ୍ୟାଙ୍କ ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାହାଙ୍କୁ ସ୍ପର୍ଶ କରିବାରୁ ଉଗ୍ରତପା ଗୌତମଙ୍କର ଅଭିଶାପରେ ଇନ୍ଦ୍ର ସ୍ୱକୀୟ ଇନ୍ଦ୍ରପଦରୁ ସ୍ଖଳିତ ହୋଇ ବଳବୀର୍ଯ୍ୟ ହରାଇ ଅଭିଶାପରୁ ମୁକ୍ତିଲାଭ କରିବାପାଇଁ ମର୍ତ୍ତ୍ୟଲୋକରେ ଇତସ୍ତତଃ ଭ୍ରମଣ କରୁ କରୁ ବୈତରଣୀ ନଦୀର ଉତ୍ତର ତୀରରେ ସୁରମ୍ୟ ସ୍ଥାନଟିଏ ଦେଖିବାକୁ ପାଇଲେ । ସେଠାରେ ସେ ପାର୍ବତୀଙ୍କ ନିର୍ଦ୍ଦେଶକ୍ରମେ ଦେବାଧିଦେବ ଶିବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରିବା ପାଇଁ ଏକାଗ୍ରଚିତ୍ତରେ ସମାଧିସ୍ଥ ହେଲେ । ଇନ୍ଦ୍ର ଊର୍ଦ୍ଧ୍ୱବାହୁ ହୋଇ ତପସ୍ୟା ଆରମ୍ଭ କରିବାରୁ—

"ଅପଶ୍ୟଦମ୍ବରଦ୍ ଭୂମି ମବତୀର୍ଣ୍ଣଂ ଗିରୀନ୍ଦ୍ରଜେ ।
ବସୂନାମଷ୍ଟମଂ ଦେବ ପ୍ରଭାସାଖ୍ୟଂ ପ୍ରଭାନ୍ୱିତମ୍ ॥" ବ୍ର: ପୁ:

ଆକାଶରୁ ପୃଥିବୀ ପୃଷ୍ଠକୁ ଅବତରଣ କରୁଥିବା ତେଜୋମୟ ଅଷ୍ଟମବସୁ ପ୍ରଭାସଙ୍କୁ ଦେଖିଲେ ।

ଏହି ପ୍ରଭାସ ଅବତୀର୍ଣ୍ଣ ହୋଇ ଇନ୍ଦ୍ରଙ୍କର ସ୍ନାନ, ସନ୍ଧ୍ୟା ତର୍ପଣାଦି ନିତ୍ୟକ୍ରିୟା ସମ୍ପାଦନ ପାଇଁ ସ୍ୱର୍ଗଗଙ୍ଗାଙ୍କୁ ସ୍ମରଣ କଲେ ।

"ଅଭିଷେକାୟ ଶକ୍ରସ୍ୟ ସସ୍ମାର ତ୍ରିଦିବାପଗାମ୍ ।
ଚକ୍ରିତା ତେନ ସା ଗଙ୍ଗା ବ୍ୟୋମ୍ନୋ ଭୂମାବବାତରତ୍ ॥" ବୃଃପୁଃ

ତତ୍ପରେ ବ୍ୟୋମଗଙ୍ଗା ପ୍ରଭାସ ବସୁଙ୍କର ଅନୁରୋଧକ୍ରମେ ଆକାଶରୁ ଅବତରଣ କରି କେତେକ ସ୍ଥାନକୁ ବ୍ୟାପି ଏକତ୍ରିତ ହୋଇ ରହିଲେ ।

ଦେବରାଜ ଇନ୍ଦ୍ର ଏହି ଗଙ୍ଗାରେ ସ୍ନାନାଦି କରି ବହୁବର୍ଷ ପର୍ଯ୍ୟନ୍ତ ଶିବଙ୍କୁ ସନ୍ତୁଷ୍ଟ କରିବାପାଇଁ ତପସ୍ୟା କରିବାରୁ ଶିବ ପ୍ରୀତହୋଇ ଇନ୍ଦ୍ରଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ଇନ୍ଦ୍ର ବ୍ୟୋମଗଙ୍ଗା ଜଳରେ ଶିବଙ୍କୁ ଅଭିଷିକ୍ତ କରି ସୁଗନ୍ଧ ଚନ୍ଦନ, ପୁଷ୍ପ, ଧୂପ, ଦୀପ ପ୍ରଭୃତିରେ ପୂଜାକରନ୍ତେ ଶିବ ବର ପ୍ରାର୍ଥନା କରିବା ପାଇଁ ଇନ୍ଦ୍ରଙ୍କୁ ଆଦେଶ ଦେବାରୁ ଇନ୍ଦ୍ର ପ୍ରାର୍ଥନା କଲେ—ହେ ଦେବ ଦେବ ! ଆପଣ ମୋ ପ୍ରତି ଦୟା ପ୍ରଦର୍ଶନ କରି ଏହି ସ୍ଥାନକୁ ପବିତ୍ର କରି ଅଛନ୍ତି । ଏଣୁ, ଜଗତର କଲ୍ୟାଣ ନିମିତ୍ତ ଆପଣ ଏହି ସ୍ଥାନରେ ଅବସ୍ଥାନ କରି ସ୍ଥାନକୁ ଅଳଂକୃତ କରନ୍ତୁ । ତତ୍ପରେ ଶିବ ଇନ୍ଦ୍ରଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ କହିଲେ—

"ଆଖଣ୍ଡଳ ଭବନ୍ନାମ୍ନା ଜାମାସ୍ଯୁର୍ମାଂ ମହର୍ଷୟଃ ।"

ହେ ଆଖଣ୍ଡଳ ! ଆପଣଙ୍କ ନାମାନୁସାରେ ମୋର ନାମ 'ଆଖଣ୍ଡଳେଶ୍ୱର' ବୋଲି ଜନ ସମାଜରେ ତଥା ଦେବର୍ଷି ସମାଜରେ ଖ୍ୟାତି ଲଭକରୁ । ଏଣୁ ଇନ୍ଦ୍ରଙ୍କର ନାମାନୁଯାୟୀ 'ଆଖଣ୍ଡଳେଶ୍ୱର' ବା କେହି କେହି 'ଇନ୍ଦ୍ର ଆଖଣ୍ଡଳ' ବୋଲି କହନ୍ତି । ଏହାଙ୍କ ପୃଷ୍ଠ ଭାଗରେ ଯେଉଁ ପୁଷ୍କରିଣୀ ବିଦ୍ୟମାନ, ତାହା ପ୍ରଭାସ ବସୁଙ୍କର ସ୍ମୃତିଦ୍ୱାରା ଆନୀତା ବିଯଦ୍ ଗଙ୍ଗା । ଶିବ ସେହି ଗଙ୍ଗାଙ୍କର ନାମକୁ ପ୍ରଭାସ ତୀର୍ଥ ନାମରେ ନାମିତ କରି ଇନ୍ଦ୍ରଙ୍କୁ କହିଲେ—

"ତସ୍ୟ ସ୍ତବେନ ତୁଷ୍ଟୋଽସ୍ମି ତୀର୍ଥଂ ତନ୍ନାମତୋ ଭୁବ ।
ପ୍ରଭାସଂ ଖ୍ୟାତିମାୟାତୁ ସର୍ବପାପହରଂ ଚ ଯତ୍ ॥
ଚୈତ୍ର ଶୁକ୍ଳଚତୁର୍ଦ୍ଦଶ୍ୟା ମତ୍ର ସ୍ନାତ୍ୱା ଯଥାବିଧି ।
ମା ମର୍ଚ୍ଚୟିତ୍ୱା ନତ୍ୱା ଚ ସ୍ତୁତିଂ କୃତ୍ୱା ପ୍ରଦକ୍ଷିଣମ୍ ॥
ଦଶାନାମଶ୍ୱମେଧାନାଂ ଫଳଂ ପ୍ରାପ୍ନୋତି ଦେହଭୃତ୍ ॥" ବ୍ରଃ ପୁଃ

ହେ ଇନ୍ଦ୍ର ! ପ୍ରଭାସ ବସୁଙ୍କର ସ୍ତବରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ-ଅଛି । ତାହାଙ୍କର ନାମାନୁସାରେ ଏହି ସର୍ବ କଳୁଷ ନାଶିନୀ ଗଙ୍ଗାଙ୍କର ନାମ 'ପ୍ରଭାସତୀର୍ଥ' ରୂପରେ ଖ୍ୟାତି ଲଭିବକୁ । ଆହୁରି ମଧ୍ୟ ଯେଉଁମାନେ ଚୈତ୍ରମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ଏହି ତୀର୍ଥରେ ସ୍ନାନକରି ମୋର ରୂପାନ୍ତର ଆଖଣ୍ଡଳେଶ୍ୱର ଲିଙ୍ଗଙ୍କୁ ପୂଜା ଆରାଧନା ପୂର୍ବକ ସ୍ତୁତି, ନମସ୍କାର ଓ ପ୍ରଦକ୍ଷିଣ କରନ୍ତି, ସେମାନେ ଦଶୋଟି ଅଶ୍ୱମେଧ ଯଜ୍ଞର ଫଳ ଲଭ କରନ୍ତି । ଏଣୁ, ଗଙ୍ଗାଙ୍କର ନାମ ଲୁପ୍ତହୋଇ 'ପ୍ରଭାସତୀର୍ଥ' ନାମରେ ନାମିତ ହେବାରୁ ଲୋକେ ଏହାକୁ 'ଲୁପ୍ତଗଙ୍ଗା' ବା 'ଗୁପ୍ତଗଙ୍ଗା' ବୋଲି କହି-ଆସୁଅଛନ୍ତି ।

ଶିବ ଏହିପରି କହିବାରୁ ଇନ୍ଦ୍ର ଗୌତମଙ୍କ ଶାପରୁ ମୁକ୍ତହୋଇ ପ୍ରଭାସ ବସୁଙ୍କ ସହିତ ସ୍ୱର୍ଗ ରାଜ୍ୟକୁ ଯାଇ ସ୍ୱକୀୟ ଇନ୍ଦ୍ର ପଦବୀ ଲଭକଲେ ।

ଆହୁରି ମଧ୍ୟ ଫଳ ସ୍ୱରୂପ—

"ଆଖଣ୍ଡଳଂ ସମାସାଦ୍ୟ କୁଷ୍ଠୀ କୁଷ୍ଠାତ୍ ପ୍ରମୁଚ୍ୟତେ ।
ଅପୁତ୍ରା ଚୈବ ଯା ନାରୀ ସା ନାରୀ ଲଭତେ ସୁତାନ୍ ॥"
(କଃ ସଂ: ୧୦୨)

ଏହି ଆଖଣ୍ଡଳେଶ୍ୱରଙ୍କୁ ଭକ୍ତିପୂତ ହୃଦୟରେ ପୂଜା ଆରାଧନା କରି ଏକାଗ୍ରଚିତ୍ତରେ କୁଷ୍ଠରୋଗୀ ଧ୍ୟାନ କଲେ କୁଷ୍ଠ ରୋଗରୁ ମୁକ୍ତହୁଏ ଏବଂ ବନ୍ଧ୍ୟାନାରୀ ସନ୍ତାନ ଲଭକରେ ।

**ବଟେଶ୍ୱର ଓ ଧର୍ମବଟ—**

ଈଶାନେଶ୍ୱରଙ୍କ ଦକ୍ଷିଣ ଭାଗରେ ପ୍ରବାହିତା 'ମଦ୍‌ଗୁରେଖା' କୂଳରେ କପିଳେଶ୍ୱର ଶିବଙ୍କ ଉତ୍ତରରେ ଯେଉଁ ବଟ ବୃକ୍ଷଟି ଅଛି, ତାହାର

ମୂଳରେ ଥିବା ଶିବଙ୍କ ନାମ ବଟେଶ୍ୱର । ଏଠାରେ ବର୍ତ୍ତମାନ କେତେକ ସମାଧିସ୍ତମ୍ଭ ଦେଖାଯାଏ ।

## ଧର୍ମବଟର ଇତିବୃତ୍ତ—

ଏକଦା ଦେବତାମାନେ ତ୍ରିପୁରାସୁରର ଅତ୍ୟାଚାରରେ ନିଷ୍ପେଷିତ ହୋଇ ଶିବଙ୍କର ଶରଣାପନ୍ନ ହେବାରୁ ଶିବ ସ୍ୱୟଂ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଯୁଦ୍ଧ ସମୟରେ ରଥର ପ୍ରଧାନ 'ଅକ୍ଷ'ଟି ଭାଙ୍ଗି ଯିବାରୁ ଶିବ ଅନନ୍ୟୋପାୟ ହୋଇ ଧର୍ମଦେବଙ୍କୁ ସ୍ମରଣ କଲେ । ଧର୍ମଦେବତା ବୃଷଭ-ରୂପ ଧାରଣକରି ଶିବଙ୍କ ବାହନହେଲେ । ତତ୍ପରେ ଶିବ ଅକ୍ଳେଶରେ ତ୍ରିପୁରାସୁରଙ୍କୁ ଜୟକଲେ । ଧର୍ମ ସ୍ୱୟଂ ବାହନହୋଇ ନଥିଲେ ସଦାଶିବ ଜୟଯୁକ୍ତ ହୋଇ ନଥାନ୍ତେ, ଏହି ଗର୍ବ କାଳେ ଧର୍ମଙ୍କ ମନରେ ଜାଗ୍ରତହେବ ଏଥିପାଇଁ ଶିବ ତାଙ୍କର ସମସ୍ତ ତେଜ ହରଣ କରିବାରୁ ଧର୍ମ ତପସ୍ୟା-ନିରତ ହେଲେ । ଏହି ମଦ୍‌ଗୁରେଖା କୂଳରେ ଏକଶତ ବର୍ଷ ପର୍ଯ୍ୟନ୍ତ ତପସ୍ୟା କରି ଶିବ ସନ୍ତୁଷ୍ଟ ନ ହେବାରୁ ଧର୍ମଙ୍କ ମନରେ ବୈରାଗ୍ୟ ଜାତ-ହେଲା । ତେଣୁ ସେ ବଟବୃକ୍ଷ ରୂପରେ ପରିଣତ ହେଲେ । ଏହି ବୃକ୍ଷର ଶାଖା, ପ୍ରଶାଖା ତଥା ପତ୍ରାବଳି ଅତ୍ୟନ୍ତ ରମଣୀୟ । ସମସ୍ତଦେବତା ଶାଖାରେ, ପିତୃଗଣ ପ୍ରରୋହରେ (ଓହଳରେ), ଅଷ୍ଟବସୁ, ଦ୍ୱାଦଶାଦିତ୍ୟ, ଏକାଦଶରୁଦ୍ର ପତ୍ରମୂଳରେ, ସ୍ୱୟଂ ଲକ୍ଷ୍ମୀ ଗୁଚ୍ଛାରେ, ବିଷ୍ଣୁ ପତ୍ରାବଳୀରେ, ଇନ୍ଦ୍ର ଓ ଶଚୀ ପତ୍ରାଗ୍ରରେ, ବ୍ରହ୍ମା ଫଳରେ ଏବଂ ଅଗ୍ନିଦେବ ଅଙ୍କୁର ପୃଷ୍ଠରେ ଅବସ୍ଥାନ କଲେ । ଏଣୁ, ଏହି ବଟବୃକ୍ଷର ନାମ ଧର୍ମବଟ ଅଟେ ।

କାର୍ତ୍ତିକପୂର୍ଣ୍ଣିମାରେ ଯେଉଁ ବ୍ୟକ୍ତି ଏହି ମଦ୍‌ଗୁରେଖାରେ ସ୍ନାନକରି ଧର୍ମବଟ ଓ ବଟେଶ୍ୱରଙ୍କୁ ଦର୍ଶନ କରେ, ସେ ସକଳ ପାପରୁ ମୁକ୍ତିଲାଭ କରେ । ଏହି ବଟବୃକ୍ଷ ମୂଳରେ ପିତୃଲୋକଙ୍କୁ ପିଣ୍ଡଦାନ କଲେ ପିତୃଲୋକ-ମାନେ ସନ୍ତୁଷ୍ଟ ହୁଅନ୍ତି । ଆହୁରମଧ୍ୟ, ବୈଶାଖ ମାସରେ ଏହି ମଦ୍‌ଗୁ-ରେଖାରେ ସ୍ନାନକରି ବଟେଶ୍ୱର ଓ କପିଳେଶ୍ୱରଙ୍କ ଦର୍ଶନ ପୂର୍ବକ ବଟବୃକ୍ଷ ମୂଳରେ—

"ପିତୃନ୍ ସନ୍ତର୍ପୟେଦ୍ ଭକ୍ତ୍ୟା ଯଥାବତ୍ତ ସୁକୃଷ୍ଣ ନରଃ ।
ବଟଂ ପ୍ରଦକ୍ଷିଣୀକୃତ୍ୟ ପ୍ରାର୍ଥୟେଦ୍ ଭକ୍ତିସଂଯୁତଃ ॥"

ଯେଉଁ ପୁଣ୍ୟବାନ୍ ବ୍ୟକ୍ତି ଭକ୍ତିର ସହିତ ଏହି ବଟବୃକ୍ଷକୁ ପ୍ରଦକ୍ଷିଣ ପୂର୍ବକ ନମସ୍କାର କରି ଅଭିଳଷିତ ବର ପ୍ରାର୍ଥନା କରେ ତଥା ପିତୃଲୋକମାନଙ୍କୁ ତର୍ପଣ କରେ, ତାହାର ପିତୃଲୋକମାନେ ସନ୍ତୁଷ୍ଟ ହୁଅନ୍ତି ।

## ଉତ୍ତରେଶ୍ୱର ଓ ଶଚୀତୀର୍ଥ—

"ବରଦାନାଦଥେନ୍ଦ୍ରସ୍ୟ ଖ୍ୟାତଂ ବସୁମତୀତଳେ ।
ଶୈବଂ ଲିଙ୍ଗଂ ମହାଜ୍ୟୋତିରୁତ୍ତରେଶ୍ୱର ସଂଜ୍ଞକମ୍ ॥"
(ବ୍ରଃ ପୁଃ ୩ । ୭୧)

ଏକଦା ଦେବରାଜ ଇନ୍ଦ୍ର ଦେବଦେବ ମହାଦେବଙ୍କୁ ସନ୍ତୁଷ୍ଟ କରିବା ପାଇଁ କଠୋର ତପସ୍ୟା କରିବାରୁ ଶିବ ପରମପ୍ରୀତ ହୋଇ ତେଜଃପୁଞ୍ଜରେ ଆବିର୍ଭୂତ ହେଲେ । ତତ୍ପରେ ସଦାଶିବ ଇନ୍ଦ୍ରଙ୍କୁ ସର୍ବୋତ୍ତର ବର ପ୍ରଦାନ କରିବାରୁ ସେହି ଦିନଠାରୁ ଶିବଙ୍କର ନାମ 'ଉତ୍ତରେଶ୍ୱର' ହେଲା । ଏହି ଉତ୍ତରେଶ୍ୱର ମହାଦେବ ଏହି କ୍ଷେତ୍ରଠାରୁ ପ୍ରାୟ ମାଇଲ ଉତ୍ତରରେ 'ମାଳ' ହାଟର ପଶ୍ଚିମଭାଗରେ ଗୋଟିଏ ଝାଟିଆ ବଣ ମଧ୍ୟରେ ଅବସ୍ଥିତ ।

"ତସ୍ମାଦ୍ଦକ୍ଷିଣତଃ ସ୍କନ୍ଦ ସର୍ବପାପ ପ୍ରଣାଶନମ୍ ।
ଶଚୀତୀର୍ଥମିତି ଖ୍ୟାତଂ ସ୍ତ୍ରୀଣାଂ ସୌଭାଗ୍ୟଦଂ ପରମ୍ ॥" ବ୍ର. ପୁ. ୭୨

ଏହି ଉତ୍ତରେଶ୍ୱରଙ୍କ ଦକ୍ଷିଣରେ ସ୍ତ୍ରୀ ଲୋକମାନଙ୍କର ସୌଭାଗ୍ୟଦାୟକ ଯେଉଁ ତୀର୍ଥ ଅଛି, ତାହା 'ଶଚୀତୀର୍ଥ' ନାମରେ ବିଖ୍ୟାତ ।

"ମାର୍ଗ କୃଷ୍ଣଚତୁର୍ଦ୍ଦଶ୍ୟାଂ ନିୟମାତ୍ ସମୁପୋଷିତଃ ॥" ବ୍ରଃପୁଃ

ମାର୍ଗଶିର ମାସ କୃଷ୍ଣପକ୍ଷ ଧୃତକମଳ ଚତୁର୍ଦ୍ଦଶୀ ତିଥିରେ ନିୟମିତ ଭାବରେ ଉପବାସ କରି ଏହି ଶଚୀତୀର୍ଥରେ ନିମ୍ନୋକ୍ତ ମନ୍ତ୍ରପାଠ ପୂର୍ବକ ସ୍ନାନ କରିବା ଉଚିତ ।

"ଓଁ ନମଃ ଶିବାୟ ଶାନ୍ତାୟ ସର୍ବପାପହରାୟ ଚ ।
ସ୍ନାନଂ କରୋମି ଦେବେଶ ଅକ୍ଷମ୍ଯାୟେଶ୍ଵରପ୍ରୟେ ॥" କ୍ର: ପୁ: ୭୪

ସ୍ନାନପରେ ହାତଯୋଡ଼ି ଶିବଙ୍କୁ ପ୍ରାର୍ଥନା କରିବ—

"ଜନ୍ମାନ୍ତରଶତଂ ଘୋରଂ ଯତ୍ର କିଞ୍ଚିତ୍ ଦୁଷ୍କୃତଂ କୃତମ୍ ।
ତତ୍ସର୍ବଂ ଦଲୟଂ ଯାତୁ ଶଚୀତୀର୍ଥାଭିଷେଚନାତ୍ ॥
ଅଭିଷିଚ୍ୟ ବିଧାନେନ ସର୍ପିଷା ଭକ୍ତିତୋ ହରମ୍ ।
ସ୍ନାପୟିତ୍ଵା ସମଭ୍ୟର୍ଚ୍ୟ ସର୍ବାନ୍ କାମାନବାପ୍ନୁୟାତ୍ ॥" କ୍ର: ପୁ:

ନିୟମାନୁସାରେ ଶଚୀତୀର୍ଥରେ ସ୍ନାନକରି ପ୍ରାର୍ଥନାପୂର୍ବକ ଭକ୍ତିର ସହିତ ଘୃତଧାରାରେ ରୁଦ୍ରାଭିଷେକ ବିଧିରେ ଶିବଙ୍କୁ ଅଭିଷିକ୍ତ କରି ପଦ୍ମ ପୁଷ୍ପରେ ପୂଜାକଲେ ଲୋକର ସମସ୍ତ କାମନା ସିଦ୍ଧ ହୁଏ । ଏହି ଚତୁର୍ଦ୍ଦଶୀ ଦିନ ପ୍ରତିବର୍ଷ ଏଠାରେ ଗୋଟିଏ ମେଳାହୁଏ । ଏହାକୁ ଉତ୍ତରେଶ୍ଵର 'ବୁଢ଼ି' ବା ଉତ୍ତରେଶ୍ଵର ମେଳା କହନ୍ତି । ଘୃତଦ୍ଵାରା ତଥା 'କମଳ' ଅର୍ଥାତ୍ ପଦ୍ମ-ପୁଷ୍ପ ଦ୍ଵାରା ଶିବଙ୍କୁ ଏହି ଦିନ ଅଭିଷିକ୍ତ ଓ ପୂଜା କରାଯାଏ ବୋଲି ଏହାକୁ 'ଘୃତକମଳ' ଚତୁର୍ଦ୍ଦଶୀ କହନ୍ତି ।

**ପଞ୍ଚନୃସିଂହ ମୂର୍ତ୍ତି—** (ନାମ ଓ ସ୍ଥାନ ନିରୂପଣ)

୧-ଅଭୟ ନୃସିଂହ—ଯାଜ୍ଞିକବନ୍ଧ ପରି 'ଦୋଗଡ଼ା' ଗ୍ରାମରେ ଅବସ୍ଥିତ ।
୨-ଲକ୍ଷ୍ମୀ ନୃସିଂହ—ଏହି ଦୋଗଡ଼ା ଗ୍ରାମର ଦକ୍ଷିଣରେ ଏକ ସ୍ଥାନରେ ।
୩-ଉଗ୍ର ନୃସିଂହ—ମାଧପୁର ନିକଟବର୍ତ୍ତୀ ଗରୁଡ଼ଙ୍କ ପାଖରେ । ଏହାକୁ ନସିଂହ ନାରାୟଣ ମଧ୍ୟ କହନ୍ତି ।
୪-ଗ୍ରାମ ନୃସିଂହ—ଏ ମଧ୍ୟ ବାହାଦଲପୁର ବା ମାଧପୁର ଗରୁଡ଼ଙ୍କ ଆଗରେ ।
୫-ବୀର ନୃସିଂହ—ଶୁକଦେଇଭିତପୁରର ଉତ୍ତରରେ ବନବିହାରୀ ମଠ ବା ବାଲିଆ ମୁଣ୍ଡୁଲୀ ଗ୍ରାମ ନିକଟରେ ।

**ଦ୍ଵାଦଶ ଗଣେଶ—** (ନାମ ଓ ସ୍ଥାନ ନିରୂପଣ)

୧-ଏକଦନ୍ତ—ବରାହ ମନ୍ଦିର ଦକ୍ଷିଣ ଦ୍ଵାରରେ ଅବସ୍ଥିତ ।
୨-ମହାକାୟ—ବରାହଙ୍କ ଦକ୍ଷିଣରେ ଥିବା ବିଶ୍ଵରୂପେଶ୍ଵରଙ୍କ ଦକ୍ଷିଣରେ ମନ୍ଦିର ଗାତରେ ଅବସ୍ଥିତ ।

୩-କପିଳ—ବରାହ ମନ୍ଦିର ମଧ୍ୟରେ ଅବସ୍ଥିତ ।
୪-ଗଜକର୍ଣ୍ଣ ବା ସିଦ୍ଧ ଗଣେଶ—ସପ୍ତମାତୃକାଙ୍କ ମନ୍ଦିର ସଂଲଗ୍ନ ମନ୍ଦିରରେ ।
ଏହାଙ୍କୁ 'ବୁଢ଼ା ଗଣେଶ' କହନ୍ତି ।
୫-ଲମ୍ବୋଦର—ଶୀତଳେଶ୍ୱର ଗ୍ରାମର ଉତ୍ତରରେ ଅଗସ୍ତି ପଡ଼ିଆରେ ଥିବା ଅଗସ୍ତୀଶ୍ୱରଙ୍କ ନିକଟରେ ।
୬-ବିକଟ (ଗଣେଶ)- ବ୍ରହ୍ମାକୁଣ୍ଡକୁ ଯିବା ପାଇଛର ବାମ ଭାଗର କାନ୍ଥରେ ଦକ୍ଷିଣ ମୁଖରେ ଅବସ୍ଥିତ ।
୭-ବିଘ୍ନନାଶନ—ବିରଜା ମନ୍ଦିର ଦକ୍ଷିଣ ପାଖ କାନ୍ଥରେ (ମନ୍ଦିର ଗାତ୍ରରେ) ଅବସ୍ଥିତ ।
୮-ବିନାୟକ—ତ୍ରିଲୋଚନଙ୍କ ନିକଟରେ ଅବସ୍ଥିତ ।
୯-ଧୂମକେତୁ—କପିଳେଶ୍ୱର ଉତ୍ତରପାର୍ଶ୍ୱସ୍ଥ ମନ୍ଦିର ଗାତ୍ରରେ ଅବସ୍ଥିତ ।
୧୦-ଗଣାଧ୍ୟକ୍ଷ—ସିଦ୍ଧେଶ୍ୱରଙ୍କ ପୂର୍ବଦ୍ୱାର ମନ୍ଦିର ଗାତ୍ରରେ ଅବସ୍ଥିତ ।
୧୧-ଭାଲଚନ୍ଦ୍ର—କୋଦଣ୍ଡପୁର ନିକଟ ନରସିଂହପୁର ଗ୍ରାମସ୍ଥ ୬ ନିଶାକର ପଣ୍ଡାଙ୍କ ଗୃହ ନିକଟରେ ଅବସ୍ଥିତ ।
୧୨-ଗଜାନନ—ବିଲ୍ୱେଶ୍ୱରଙ୍କ ପାର୍ଶ୍ୱରେ ଅବସ୍ଥିତ ।

ପ୍ରଣାମମନ୍ତ୍ର :

"ଏକଦନ୍ତୋ ମହାକାୟଃ କପିଳୋ ଗଜକର୍ଣ୍ଣକଃ ।
ଲମ୍ବୋଦରଶ୍ଚ ବିକଟଃ ବିଘ୍ନନାଶନ ଏବଚ ॥
ବିନାୟକୋ ଧୂମକେତୁଃ ଗଣାଧ୍ୟକ୍ଷ ସ୍ତଥୈବଚ ।
ଏକାଦଶେ ଭାଲଚନ୍ଦ୍ରଃ ଦ୍ୱାଦଶେ ତୁ ଗଜାନନଃ ॥
ଦ୍ୱାଦଶୈତାନି ନାମାନି ତ୍ରିସନ୍ଧ୍ୟଂ ଯଃ ପଠେନ୍ନରଃ ।
ନାସ୍ତି ବିଘ୍ନଭୟଂ ତସ୍ୟ ସର୍ବସିଦ୍ଧିଂ ଲଭେଦ୍ଧ୍ରୁବମ୍ ॥"

## କ୍ଷେତ୍ରଦ୍ୱାର ଓ କ୍ଷେତ୍ର ପ୍ରଦକ୍ଷିଣବିଧି—

"ବରାହରୂପୀ ଭଗବାନ୍ ଅଗ୍ରତସ୍ତସ୍ୟ ପୂର୍ବତଃ ।
କ୍ଷେତ୍ରଦ୍ୱାର ମିତି ଖ୍ୟାତଂ ତୀର୍ଥଂ ସିଦ୍ଧନିଷେବିତମ୍ ॥".

(ବ୍ରଃ ପୁଃ ୪ । ୧୬)

ଦଶାଶ୍ୱମେଧ ଘାଟର ପଶ୍ଚିମରେ ବରାହଙ୍କ ପୂର୍ବରେ ଏହି କ୍ଷେତ୍ର-ଦ୍ୱାର ବିଦ୍ୟମାନ । ଏହି ବିରଜାଃ କ୍ଷେତ୍ର ପ୍ରଦକ୍ଷିଣ କରିବାକୁ ଇଚ୍ଛୁକ ବ୍ୟକ୍ତି ମାଘ କିମ୍ବା ବୈଶାଖ ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ଯଥାବିଧି ଉପବାସ ରହି ଚତୁର୍ଦ୍ଦଶୀ ଦିନ ପ୍ରାତଃ ସମୟରେ ବୈତରଣୀର ଉତ୍ତରରେ ଥିବା ପୂର୍ବୋକ୍ତ କ୍ଷେତ୍ରଦ୍ୱାର ନାମକ ତୀର୍ଥରେ ସ୍ନାନ କରିବ ।

ସ୍ନାନକାଳୀନ ମନ୍ତ୍ର—

"ସର୍ବପାପ ପ୍ରଣାଶାୟ ସର୍ବସମ୍ପତ୍ ସମୃଦ୍ଧୟେ ।
କ୍ଷେତ୍ରଦ୍ୱାରାଭିଧାନେଽସ୍ମିନ୍ ତୀର୍ଥେ ସ୍ନାନଂ କରୋମ୍ୟହମ୍ ॥" ୪:୨୦

ସ୍ନାନସାର—

"ତସ୍ମାତ୍ ସ୍ଥାନାତ୍ ଅଥୈଶାନଂ ଦିଶଂ ଗଚ୍ଛେତ୍ ସମାହିତଃ ।
ଯତ୍ର ସନ୍ତେଶ୍ୱରୀ ଦେବୀ ମାତଙ୍ଗାଦ୍ରି ନିବାସିନୀ ॥" ୪: ୨୧

## ସନ୍ତେଶ୍ୱରୀ—

ସେହି ସ୍ଥାନର ଈଶାନ କୋଣରେ ଥିବା ଝୋଳମପୁର ପାଖ 'ଷଠଗାଁ'କୁ ଯାଇ ମାତଙ୍ଗ ପର୍ବତ ନିବାସିନୀ ସନ୍ତେଶ୍ୱରୀ (ଡାକନାମ ସୁନାମୁହିଁ)ଙ୍କୁ ଦର୍ଶନ କରିବ । ଏହି ଦେବୀ ଝୋଳମପୁର ଗଡ଼ର ଗଡ଼-ଚଣ୍ଡୀ ଥିଲେ ।

**ମୀନାକ୍ଷୀ**—"ଏତାଂ ପ୍ରଦକ୍ଷିଣୀକୃତ୍ୟ ଦକ୍ଷିଣାଭିମୁଖସ୍ତତଃ ।
ଗଚ୍ଛେତ୍ ପୁଣ୍ୟାଳୟଂ ରମ୍ୟଂ ମୀନାକ୍ଷୀ ଯତ୍ର ବିଦ୍ୟତେ ॥" ୪: ୨୩

ସନ୍ତେଶ୍ୱରୀଙ୍କୁ ପ୍ରଦକ୍ଷିଣ ଓ ନମସ୍କାର କରିବା ପରେ ଦକ୍ଷିଣାଭିମୁଖ ହୋଇ 'ମୀରପୁର' ଗ୍ରାମସ୍ଥିତ 'ମୀନାକ୍ଷୀ' ଦେବୀଙ୍କୁ ଦର୍ଶନ କରିବ ।

## ଉତ୍ତରେଶ୍ୱରୀ—

"ତତୋ ଗଚ୍ଛେନ୍ମହାରଣ୍ୟଂ ସ୍ଥାନମୂର୍ଜ୍ଜସ୍ୱଲଂ ପ୍ରିୟେ ।
ଯତ୍ରୋତ୍ତରେଶ୍ୱରୀ ଦେବୀ ସର୍ବସିଦ୍ଧି ପ୍ରଦାୟିନୀ ॥" ୪ : ୨୪

ତାହାପରେ ଭେଲଙ୍ଗ ଗ୍ରାମର ପୂର୍ବରେ ରହାଶୋଇ ଗ୍ରାମ ନିକଟରେ ଖ୍ରୀମେଶ୍ୱରଙ୍କ ଦକ୍ଷିଣରେ ନିବିଡ଼ମହାରଣ୍ୟର ପବିତ୍ର ସ୍ଥାନରେ ଅବସ୍ଥିତା ସର୍ବସିଦ୍ଧିଦାୟିନୀ 'ଉତ୍ତରେଶ୍ୱରୀ'ଙ୍କୁ ଦର୍ଶନ କରିବ ।

**ଭଗବତୀ—**

"ତତୋ ଭଗବତୀସ୍ଥାନ ମାସାଦ୍ୟ ଗିରିକନ୍ୟକେ ।
ପୂର୍ବଜନ୍ମକୃତାନାଂ ପାପାନାମ୍ ଅନ୍ତଂ ପ୍ରାପ୍ନୋତ୍ୟନନ୍ଦିତେ ॥" ୪ : ୨୫

ହେ ଗିରିନନ୍ଦନ ! ତତ୍ପରେ 'ତରତୋଟା' ଖାଜପୁର ପାଖ ବୈଭୂମି ଗ୍ରାମର ଦକ୍ଷିଣରେ ଅବସ୍ଥିତା ଦେବୀ ଭଗବତୀଙ୍କୁ ଦର୍ଶନ କଲେ ଲୋକ ପୂର୍ବଜନ୍ମାର୍ଜିତ ପାପସମୂହରୁ ମୁକ୍ତ ହୁଏ ।

**କୋଠବୀଶ୍ୱରୀ—**

"ତତୋ ଗଚ୍ଛେତ୍ ମୃତ୍ତିକାଦ୍ରିଂ କୋଠବୀ ଯତ୍ରବଦ୍ୟତେ ।
କୋଟିଜନ୍ମକୃତାତ୍ ପାପାତ୍ ସମାସାଦ୍ୟ ପ୍ରମୁଚ୍ୟତେ ॥" ୪ : ୨୬

ତାହାପରେ ଏନ୍. ସି. କଲେଜ ପାଖ ବାଣପୁର ଗ୍ରାମର ଦକ୍ଷିଣରେ ମୃତ୍ତିକାଦ୍ରି ଅର୍ଥାତ୍ ମାଟି ପାହାଡ଼ ନିବାସିନୀ କୋଠବୀଶ୍ୱରୀଙ୍କୁ ଦର୍ଶନ କଲେ ଲୋକ କୋଟି ଜନ୍ମକୃତ ପାପରୁ ମୁକ୍ତ ହୁଏ ।

**ଭୀମାବତୀ**—"ତତୋ ଭୀମାବତୀ ସ୍ଥାନ ମେତସ୍ମାତ୍ ହୋଡ଼ବାସିନୀ ।"

**ହୋଡ଼ବାସିନୀ—**

"ଯତ୍ର ସଂହୀଡ଼ତେ ଦେବୀ ତଂ ପ୍ରଦେଶ ମଥ ବ୍ରଜେତ୍ ॥" ୪: ୨୭

ତାହାପରେ ଗୁରୁଦାସପୁର ଗ୍ରାମର ଦକ୍ଷିଣରେ ଅବସ୍ଥିତା ଭୀମାବତୀଙ୍କୁ ଦର୍ଶନ କରି ବରାହମନ୍ଦିର ଦକ୍ଷିଣରେ ଅବସ୍ଥିତା 'ହୋଡ଼ବାସିନୀ'ଙ୍କୁ ଦର୍ଶନ କରିବ ।

"କ୍ଷେତ୍ରଦ୍ୱାରଂ ତତୋ ଗତ୍ୱା ସ୍ନାତ୍ୱା ଚ ବିଧିପୂର୍ବକମ୍ ।
ଦେବାନ୍ ପିତୃଂସ୍ତର୍ପୟିତ୍ୱା ନିୟମସ୍ଥଃ ସମାହିତଃ ॥" ୪ । ୨୮

ତାହାପରେ ପୂର୍ବୋକ୍ତ କ୍ଷେତ୍ରଦ୍ୱାର ତୀର୍ଥରେ ସଂଯତେନ୍ଦ୍ରିୟ ହୋଇ ସ୍ନାନକରି ପିତୃଲୋକଙ୍କୁ ନିୟମିତ ଭାବରେ ତର୍ପଣ କରି—

"ତ୍ରିଲୋଚନଂ ମହାଲିଙ୍ଗଂ ବ୍ରଜେତ୍ତ୍ରୈଲୋକ୍ୟ ପୂଜିତମ୍ ।
ଅଭିବନ୍ଦ୍ୟ ମହାଲିଙ୍ଗଂ ବାଗ୍ୟତସ୍ତଂ ପରିତ୍ୟଜେତ୍ ॥" ୪ : ୨୯

ଯାଜ୍ଞବଲ୍କୀବନ୍ଧ ପୂର୍ବରେ ଥିବା ତ୍ରିଭୁବନ ପୂଜିତ ପ୍ରସିଦ୍ଧ ଲିଙ୍ଗ ତ୍ରିଲୋଚନଙ୍କୁ ଦର୍ଶନ ତଥା ନମସ୍କାର କରି—

"ତତୋଗଚ୍ଛେତ୍ତ୍ରିଗିଶାନ୍ଦ୍ରଜେ ।
ଯତ୍ର ସିଦ୍ଧେଶ୍ୱରୀ ଦେବୀ ସିଦ୍ଧ ଗନ୍ଧର୍ବ ସେବିତା ॥"

ବିନ୍ଦୁସାଗରର ସମ୍ମୁଖଭାଗ ଚଣ୍ଡୀମଣ୍ଡପ ପାର୍ଶ୍ୱରେ ଥିବା ସିଦ୍ଧେଶ୍ୱରୀଙ୍କୁ ଦର୍ଶନ ପୂଜନାଦି କରି ତଳ ଲିଖିତ ମନ୍ତ୍ରପାଠ ପୂର୍ବକ ନମସ୍କାର କରିବ ।

ମନ୍ତ୍ର — "ସିଦ୍ଧେଶ୍ୱରି ମହାଦେବି ରସକୂପ ନିବାସିନି ।
ସିଦ୍ଧ ସଂପୂଜିତେ ତୁଭ୍ୟଂ ନମୋ ଭବତୁ ନଃ ସଦା ॥" ୪ । ୪୩

ତତ୍ପରେ କ୍ଷେତ୍ର ପ୍ରଦକ୍ଷିଣ କରିଥିବା ବିଷୟ ଭକ୍ତି ପୂର୍ବକ ବଦ୍ଧାଞ୍ଜଳି ଦେଖାଇ ନିମ୍ନଲିଖିତ ମନ୍ତ୍ରପାଠ କରି ନିବେଦନ କରିବ ।

"କ୍ଷେତ୍ର ପ୍ରଦକ୍ଷିଣଂ ଦେବ ମୟା କୃତ ମିଦଂ ଯଥା ।
ନ୍ୟୂନାତିରିକ୍ତଂ ଯତ୍କଞ୍ଚିତ୍ କ୍ଷନ୍ତୁମର୍ହସି ମେ ଶିବେ ॥
ଅନେକ ବିଧିନା ମହ୍ୟଂ ପ୍ରସାଦଂ କର୍ତ୍ତୁମର୍ହସି ।
ପ୍ରସନ୍ନାସ୍ତ୍ୱାଂ ତ୍ୱୟୀଶାନ ଦୁର୍ଲଭଂ କିଂ ଜଗତ୍ତ୍ରୟେ ॥"

ଅର୍ଥାତ୍ ହେ ଦେବ ! ମୁଁ ଯଥାବିଧି କ୍ଷେତ୍ର ପ୍ରଦକ୍ଷିଣ ସମ୍ପାଦନ କରିଅଛି । ଯଦି କିଛି ନ୍ୟୂନ ବା ଅଧିକ କରିଥାଏ, ତାହା କ୍ଷମା କରିବେ । ହେ ଦେବ ! ଏହି କାର୍ଯ୍ୟରେ ମୋ ପ୍ରତି ପ୍ରସନ୍ନ ହୁଅ । ତୁମ୍ଭେ ଯଦି ପ୍ରସନ୍ନ ହୁଅ, ତେବେ ତ୍ରିଭୁବନରେ କୌଣସି ବସ୍ତୁ ଦୁର୍ଲଭ ରହିବ ନାହିଁ ।

**ଅଷ୍ଟୋତ୍ତର ଶତ ଶିବଲିଙ୍ଗ**—(୧୦୮) ବର୍ଣ୍ଣାନୁକ୍ରମରେ ଏହି ଶିବଲିଙ୍ଗଙ୍କ ନାମ ଓ ସ୍ଥାନ ନିରୂପଣ :

ଏହି କ୍ଷେତ୍ରରେ ଅସଂଖ୍ୟ ଶିବଲିଙ୍ଗ ପ୍ରତିଷ୍ଠିତ । ସେମାନଙ୍କର ନାମୋଲ୍ଲେଖ କରିବା ଏବଂ କେଉଁ ଲିଙ୍ଗ କେଉଁଠାରେ ବିଦ୍ୟମାନ, ତାହା ନିରୂପଣ କରିବା କଠିନ । ପ୍ରତିଷ୍ଠିତ ଯେଉଁ ୧୦୮ ଶିବଲିଙ୍ଗଙ୍କର ନାମ ଓ ସ୍ଥାନ ଜଣା ଯାଇଛି, ତାହା ନିମ୍ନରେ କେତେକ ଇତିବୃତ୍ତ ସହିତ ଦିଆଗଲା ।

ଅଟ୍ଟହାସେଶ୍ୱର—(ଡାକନାମ ହଟେଶ୍ୱର)

ବଡ଼ବଜାର ମଧ୍ୟ ଭାଗରେ (ବ୍ରାହ୍ମଣ ପୁର) ୬ ଯୁଧିଷ୍ଠିର ମହାନ୍ତି (ଡାକନାମ ଜାଉଁଳିଆ)ଙ୍କ ଘର ଆଗରେ ବୈତରଣୀ ନଦୀର ଦକ୍ଷିଣରେ ନଈବନ୍ଧ କଡ଼ରେ ବରାହଙ୍କ ଅଗ୍ନିକୋଣରେ ଏହି 'ଅଟ୍ଟହାସେଶ୍ୱର' ଲିଙ୍ଗ ବିରାଜିତ । ଏହି ମନ୍ଦିର ମୁଖ ପଶ୍ଚିମକୁ । ଲୋକେ ଏହି ରାସ୍ତାକୁ 'ହଟେଶ୍ୱର ଗଳି' ବୋଲି କହନ୍ତି । ଏହି ମନ୍ଦିରରେ ଏକାଦଶ ରୁଦ୍ର ଅଛନ୍ତି । ଏହାଙ୍କର ନାମ— ୧-ହର, ୨-ତ୍ର୍ୟମ୍ବକ, ୩-ରୁଦ୍ର, ୪-ମୃଗବ୍ୟାଧେଶ୍ୱର, ୫-ଅପରାଜିତେଶ୍ୱର, ୬-କପାଳେଶ୍ୱର ବା କପାଳୀଶ୍ୱର, ୭-ଭୈରବେଶ୍ୱର, ୮-ଶମ୍ଭୁ, ୯-କପର୍ଦ୍ଦୀଶ୍ୱର, ୧୦-ବୃଷାକପୀଶ୍ୱର, ୧୧-ବହୁରୂପେଶ୍ୱର ।

ଅଟ୍ଟହାସେଶ୍ୱରଙ୍କ ଇତିବୃତ୍ତ—

ଦକ୍ଷ ଯଜ୍ଞରେ ଦକ୍ଷକନ୍ୟା ସତୀ ପିତାଙ୍କ ମୁଖରୁ ପତିନିନ୍ଦା ଶୁଣି ଯଜ୍ଞାନଳରେ ଦେହ ବିସର୍ଜନ କଲେ । ଶିବ ସତୀଙ୍କ ବିୟୋଗରେ ଅତ୍ୟନ୍ତ କ୍ରୁଦ୍ଧ ହେବାରୁ କପୋଳ ନିର୍ଗତ ଦୁଇଟୋପା ଝାଳରୁ 'ବୀରଭଦ୍ର' ଓ 'ଜ୍ୱର' ନାମକ ଦୁଇଟି ଅସୁର ଜାତହୋଇ ଶିବଙ୍କ ଆଦେଶରେ ଦକ୍ଷଯଜ୍ଞ ଧ୍ୱଂସ କଲେ । ଏହା ଦେଖି ଶିବ ଅଟ୍ଟହାସ୍ୟ କରିବାରୁ ବ୍ରହ୍ମା ତାହାଙ୍କୁ ସ୍ତୁତିଦ୍ୱାରା ସନ୍ତୁଷ୍ଟ କରାଇ ଅଟ୍ଟହାସ୍ୟର ସ୍ମାରକ ସ୍ୱରୂପ ଲିଙ୍ଗ ରୂପରେ ବିଦ୍ୟମାନ ହେଉନ୍ତୁ ବୋଲି ପ୍ରାର୍ଥନା କଲେ । ତହୁଁ ଶିବ ସନ୍ତୁଷ୍ଟହୋଇ 'ଅଟ୍ଟହାସେଶ୍ୱର' ନାମଧାରଣ ପୂର୍ବକ ଲିଙ୍ଗ ରୂପରେ ବିରାଜିତ ହେଲେ ।

୨-ଅପ୍ସରେଶ୍ୱର—ବିରଜା ମନ୍ଦିରର ଉତ୍ତରଭାଗସ୍ଥ କାର୍ତ୍ତିକେୟଙ୍କ ଉତ୍ତର ଭାଗରେ ଏହି ଲିଙ୍ଗ ଅବସ୍ଥିତ ।

୩-ଅଗସ୍ତୀଶ୍ୱର— ଏହି ଲିଙ୍ଗ ଶୀତଳେଶ୍ୱର ଗ୍ରାମର ଉତ୍ତରରେ ପ୍ରଧାନ ରାଜପଥର ପଶ୍ଚିମରେ ଅର୍ଦ୍ଧଭଗ୍ନ ମନ୍ଦିରରେ ପୂର୍ବାଭିମୁଖୀ ହୋଇ ଅବସ୍ଥିତ । ଏହି ସଡ଼କକୁ ଲାଗି 'ଜୀଉନ୍ତି', 'ମଡ଼ନ୍ତି' (ଜୀବବତ୍ସା, ମୃତବତ୍ସା) ନାମକ ଦୁଇଟି କ୍ଷୁଦ୍ର ଅପରିଷ୍କୃତ ପୁଷ୍କରିଣୀ ମନ୍ଦିର ଆଗରେ ଅଛି । ଏହି ଅଗସ୍ତୀଶ୍ୱରଙ୍କ ଅଗ୍ନିକୋଣରେ ଅର୍ଥାତ୍ ରାଜପଥର ପୂର୍ବରେ ବଟେଶ୍ୱର ଓ ଶୃଙ୍ଗେଶ୍ୱର ନାମକ ଦୁଇଟି ଲିଙ୍ଗ ବିଦ୍ୟମାନ ।

ଅଗସ୍ତୀଶ୍ୱରଙ୍କ ଇତିବୃତ୍ତ—

"ମନ୍ଦାକିନ୍ୟାଃ ପ୍ରବାହିନ୍ୟା ଉତ୍ତରେଣ ମହାମୁନିଃ ।
ତପସ୍ତେପେ ମହାଦେବ କୁମ୍ଭଯୋନି ର୍ମହାମନାଃ ॥
ବର୍ଷାଣି ଶ୍ରୀଣି ପଞ୍ଚାଶଚ୍ଛତାନି ଶ୍ରୀଣି ଶୁମ୍ଭିକେ ॥" ବ୍ରୁ: ପୁ

ଏକଦା ବୈତରଣୀ ଦକ୍ଷିଣରେ ମନ୍ଦାକିନୀର ଉତ୍ତରରେ କୁମ୍ଭ ମୁନିଙ୍କ ପୁତ୍ର ମହାତପା ଅଗସ୍ତି ବହୁଶତ ବର୍ଷ ତପସ୍ୟା କରି ସାମବେଦ ଗାନ ପୂର୍ବକ ମହାଦେବଙ୍କୁ ନିତ୍ୟ ଅଭିଷେକ କରିବାରୁ ଦେବାଧିଦେବ ଶିବ ପ୍ରସନ୍ନ ହୋଇ ମୁନିଙ୍କ ସମକ୍ଷରେ ଆବିର୍ଭୂତ ହେଲେ ଓ କହିଲେ—

'ଅଗସ୍ତୀଶ୍ୱରସଞ୍ଜ୍ଞଂ ମାଂ ବିଦୁଃ ପ୍ରାଜ୍ଞାଃ ପୁରାବଦାଃ ॥'

ହେ ମହର୍ଷେ ! ମୋତେ ପ୍ରାଚୀନାଗୃମାନେ ଅଗସ୍ତୀଶ୍ୱର ବୋଲି କହନ୍ତି । ଆହୁରି ମଧ୍ୟ—

"ମାସି ଭାଦ୍ରପଦେ ପୁଣ୍ୟେ ପୌର୍ଣ୍ଣମାସ୍ୟାଂ ତଥୌ ଶୁଚିଃ ।
ସ୍ନାତଃ ପଦ୍ମରେଖାୟ୍ବାଂ ବାଗ୍ୟତଃ ସୁସମାହିତଃ ॥
ଯୋ ମାଂ ପଶ୍ୟତି ଦେବେଶି ସ୍ତୌତି ସମ୍ପୂଜୟତ୍ୟପି ।
ନିଲକ୍ଷୈର୍ବିଲ୍ୱପତ୍ରାଣାଂ ପଦ୍ମାନାମୟୁତୈ ସ୍ତ୍ରିଭିଃ ॥
ମାଂ ପୂଜୟିତ୍ୱା ଦେବେଶି ଯତ୍ ଫଳଂ ଲଭତେ ନରଃ ।
ତତ୍ ଫଳଂ ସମବାପ୍ନୋତି ମମ ଦର୍ଶନ ମାତ୍ରତଃ ॥"

ଅର୍ଥାତ୍ ଭାଦ୍ରବ ମାସ ପବିତ୍ର ଇନ୍ଦୁ ପୂର୍ଣ୍ଣିମା ଦିନ ପଦ୍ମରେଖାରେ ସ୍ନାନକରି ବାକ୍ ସଂଯତ ହୋଇ ଯେ ମୋତେ ଦର୍ଶନ, ପୂଜା ଓ ସ୍ତୁତି କରେ, ସେ ତିନି ଲକ୍ଷ ବିଲ୍ୱପତ୍ର ତଥା ତିନିଲକ୍ଷ ପଦ୍ମ ଅର୍ପଣର ଯେଉଁ ଫଳ ଲାଭକରେ, କେବଳ ମୋତେ ଦର୍ଶନ କଲେ ଲୋକ ସେହି ଫଳ ପାଇଥାଏ । ଆହୁରି ମଧ୍ୟ—

"ସକୃଦ୍ ଭକ୍ତ୍ୟା ପୁରସ୍ତାନ୍ମେ ଯଃ ପଠେତ୍ ଶତରୁଦ୍ରୀୟମ୍ ।
ସାଙ୍ଗୋପାଙ୍ଗୈରଧୀତୈଃ କିମାମ୍ନାୟୈରସ୍ୟ ପାର୍ବତି ॥" ବ୍ରୁ: ପୁ

ଯଦି କେହି ମୋ ସମ୍ମୁଖରେ ଭକ୍ତି ପୂର୍ବକ ଥରେ ଶତରୁଦ୍ର ଅର୍ଥାତ୍ 'ନୀଳସୂକ୍ତ' ପାଠକରେ, ତାହାର ବେଦାଙ୍ଗ ସହିତ ବେଦ ପାଠ କରିବାରେ କି ଫଳ ?

୪-ଅଚେଶ୍ୱର—ସିଦ୍ଧେଶ୍ୱରଙ୍କ ବାୟୁକୋଣରେ ନଦୀ ତୀରରେ ଏହି ଲିଙ୍ଗ ଅବସ୍ଥିତ ।

୫-ଅଗ୍ନୀଶ୍ୱର—ବିରଜା ବେଢ଼ାର ଦକ୍ଷିଣରେ ବିରଜା ହାଟ ନିକଟରେ ପ୍ରଧାନ ସଡ଼କର ପୂର୍ବରେ ଏହି ଅଗ୍ନୀଶ୍ୱର ଲିଙ୍ଗ ଅବସ୍ଥିତ । ଏହି ଶିବ ଦିନରେ ତିନିରୂପ ଧାରଣ କରନ୍ତି । ପ୍ରାତଃ ସମୟରେ ଘନ କୃଷ୍ଣବର୍ଣ୍ଣ, ମଧ୍ୟାହ୍ନରେ ଈଷତ୍ ରକ୍ତବର୍ଣ୍ଣ ଓ ସାୟଂ କାଳରେ ଶୁଭ୍ରବର୍ଣ୍ଣ ଧାରଣ କରନ୍ତି—"ଘନକୃଷ୍ଣ ଆଦ୍ୟ ପ୍ରହରେ ରଙ୍ଗବପୁ ଦିଶୁଥାଏ ।

ବିଭୂତି ଧବଳ ସାଜନ୍ତି ମହାପ୍ରଭୁ ତୃତୀୟେ ॥" (ବୈତରଣୀ)

୬-ଅର୍ଦ୍ଧନାରୀଶ୍ୱର—ବାହାବଳପୁର ନିକଟବର୍ତ୍ତୀ ଗରୁଡ଼ଙ୍କ ସମୀପ ମାଧୁପୁର ଗ୍ରାମରେ ଅବସ୍ଥିତ ।

୭-ଆଖଣ୍ଡଳେଶ୍ୱର— ବଡ଼ବଜାର ମଧ୍ୟ ଭାଗରେ ରାଜପଥର ପଶ୍ଚିମ ଦିଗରେ ଅବସ୍ଥିତ । ଏହାଙ୍କ ଉତ୍ପତ୍ତି ବିଷୟ ସ୍ୱତନ୍ତ୍ର ଭାବରେ ବର୍ଣ୍ଣନା କରାଯାଇଛି ।

୮-ଈଶାନେଶ୍ୱର—ବିରଜାବେଢ଼ା ମଧ୍ୟବର୍ତ୍ତୀ ବିରଜାଙ୍କ ଉତ୍ତର ଦିଗରେ ଅବସ୍ଥିତ । ଏହାଙ୍କ ଉତ୍ପତ୍ତି ବିଷୟ ସ୍ୱତନ୍ତ୍ର ଭାବରେ କୁହାଯାଉଛି ।

୯-ଉତ୍ତରେଶ୍ୱର—ମାଲହାଟର ପଶ୍ଚିମରେ ଶଚୀତୀର୍ଥ ନିକଟରେ ଅବସ୍ଥିତ । ଏହାଙ୍କ ଉତ୍ପତ୍ତି ବିଷୟ ବର୍ଣ୍ଣନା କରାଯାଇଛି ।

୧୦-କପିଳେଶ୍ୱର—ଖଣ୍ଡିରା ଗ୍ରାମକୁ ଯିବା ରାସ୍ତାର ତଥା କପିଳେଶ୍ୱର ଗ୍ରାମର ପୂର୍ବରେ ମଦ୍‌ଗୁରେଖାର ନିକଟବର୍ତ୍ତୀ ଏହି ଲିଂଗ ବିଦ୍ୟମାନ । ଏହାଙ୍କ ନାମାନୁସାରେ କପିଳେଶ୍ୱର ଗ୍ରାମ । ଏହି ଶିବ ସର୍ବଦା ଜଳମଗ୍ନ । ଏହାଙ୍କ ମନ୍ଦିରକୁ ଲାଗି ଉତ୍ତର ପାଖରେ ଯେଉଁ ପୁଷ୍କରିଣୀ ଅଛି, ତାହାର ନାମ 'କପିଳତୀର୍ଥ' । ଏହି ତୀର୍ଥରେ ସ୍ନାନକରି କପିଳେଶ୍ୱରଙ୍କୁ ଦର୍ଶନ

କଲେ ଲୋକ ଅଷ୍ଟଯୁଗ କାଶୀବାସର ଫଳ ପାଇଥାଏ । ଏ ବିଷୟ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି ।

୧୧-କାଶ୍ୟପେଶ୍ୱର—ବରାହଙ୍କ ଦକ୍ଷିଣରେ ଢୋଲ୍ଡ଼ବାସିମାନଙ୍କ ନିକଟରେ ଅବସ୍ଥିତ ।

୧୨-କାଳେଶ୍ୱର—ରାମବାଗକୁ ଗଲାବାଟରେ ବେଗବତୀ (ବେଙ୍ଗା) ନଦୀ-ତଟରେ ବରାହଣ୍ଡା ଗ୍ରାମରେ ଅବସ୍ଥିତ ।

୧୩-କାମେଶ୍ୱର—ବୈତରଣୀ ବ୍ରାହ୍ମଣମାନଙ୍କ ବସତି ବଡ଼ଶାସନ ମଧ୍ୟସ୍ଥାନରେ (ମଧ୍ୟପାଡ଼ାରେ) ଅବସ୍ଥିତ ।

୧୪ ଖାଲଲଟେଶ୍ୱର (ଡାକନାମ ଖିଲକେଶ୍ୱର)—ବାଲେଶ୍ୱର ଜିଲ୍ଲାନ୍ତର୍ଗତ ଖଙ୍ଗର ଗ୍ରାମରେ ଅବସ୍ଥିତ । ଏହାଙ୍କ ବିଷୟ ବିଶଦ ଭାବରେ କୁହାଯାଇଛି । ଏହି ଶିବ କ୍ଷେତ୍ରସୀମାନିର୍ଦ୍ଦେଶକ ଅଟନ୍ତି ।

୧୫-ଖାକଣେଶ୍ୱର—ସିଦ୍ଧେଶ୍ୱରଙ୍କ ଉତ୍ତରପାର୍ଶ୍ୱ ବୈତରଣୀ ତଟରେ ଅସ୍ଥି-କ୍ଷେପଣ ତୀର୍ଥର ଦକ୍ଷିଣରେ ଅବସ୍ଥିତ ।

୧୬-କୁମାରେଶ୍ୱର—ଯାଜ୍‌ପୁର ଲିଙ୍ଗ ପଶ୍ଚିମରେ ସୋମତୀର୍ଥ ତଥା ସୋମେ-ଶ୍ୱରଙ୍କ ଉତ୍ତରରେ ଅବସ୍ଥିତ ।

୧୭-କୁବେରେଶ୍ୱର—ବରାହଙ୍କ ଦକ୍ଷିଣପୂର୍ବ ଧର୍ମଶାଳା ସମ୍ମୁଖସ୍ଥ ମନ୍ଦିରରେ ଅବସ୍ଥିତ ।

୧୮ କୁସୁମେଶ୍ୱର—କୁସୁମା ପୋଖରୀର ଉତ୍ତରରେ ବଡ଼ ଡାକ୍ତରଖାନା (General Hospital) ହତା ମଧ୍ୟସ୍ଥ ମନ୍ଦିରରେ ଅବସ୍ଥିତ । ମନ୍ଦିରର ମୁଖ ପୂର୍ବକୁ ।

୧୯-କେଦାରେଶ୍ୱର—ଭଗବାନପୁର ଗ୍ରାମର ପଶ୍ଚିମରେ ଅବସ୍ଥିତ । ଏହାଙ୍କ ଅଗ୍ନିକୋଣରେ ସୁଦର୍ଶନ ତୀର୍ଥ ବିଦ୍ୟମାନ ।

୨୦—କୋଦଣ୍ଡେଶ୍ୱର—କୋଦଣ୍ଡପୁର ଗ୍ରାମରେ ଅବସ୍ଥିତ । ଏହାଙ୍କ ନାମାନୁ-ସାରେ ଗ୍ରାମର ନାମ କୋଦଣ୍ଡପୁର । ଏହି ଗ୍ରାମରେ ପ୍ରସିଦ୍ଧ ଜମିଦାର ୰ ନରସିଂହ ଚୌଧୁରୀଙ୍କ ପ୍ରାସାଦ ବିଦ୍ୟମାନ । ଏହି ମହାଶୟଙ୍କ ଦାନରେ ସ୍ଥାପିତ 'ନରସିଂହ ଚୌଧୁରୀ କଲେଜ' (N. C. College) ପ୍ରତିଷ୍ଠିତ ।

ଆଡ୍ଡୁରମଧ୍ୟ ଏହାଙ୍କ ଦାନରେ ଯାଜପୁର ରୋଡ୍ ଏନ୍. ସି. ହାଇସ୍କୁଲ ସ୍ଥାପିତ ।

୨୧—ଖଣ୍ଡେଶ୍ୱର—ପ୍ରଧାନ ସଡ଼କର ପୂର୍ବ ପାଖରେ ଖଣ୍ଡେଶ୍ୱର ଗ୍ରାମରେ ଏହି ଲିଙ୍ଗ ଅବସ୍ଥିତ । ଏହି ମନ୍ଦିର ମୁଖ ପଶ୍ଚିମକୁ । ଏହାଙ୍କ ନାମାନୁସାରେ ଗ୍ରାମର ନାମ ଖଣ୍ଡେଶ୍ୱର ।

୨୨-ଖଗେଶ୍ୱର—ଅଲିବାଗ ପଡ଼ିଆର ପଶ୍ଚିମରେ ଏହି ଲିଙ୍ଗ ଅବସ୍ଥିତ ।

୨୩—ଗଙ୍ଗେଶ୍ୱର—ଗାରଡ୍ଡେଶ୍ୱର ଗ୍ରାମ ନିକଟବର୍ତ୍ତୀ ବୈତରଣୀ କୂଳରେ ଅବସ୍ଥିତ ।

୨୪-ଗଞ୍ଜେଶ୍ୱର—ଗଞ୍ଜଘାଟର ଦକ୍ଷିଣରେ, ଅର୍ଥାତ୍ ବଡ଼ଶାସନରୁ ଉତ୍ତର-ମୁଖ ହୋଇ ନନ୍ଦକୂଳ ବନ୍ଧ ଆଡ଼କୁ ଆସିବାବେଳେ ସାନବଜାରକୁ ଯାଇଥିବା ପ୍ରଧାନ ସଡ଼କର ଦକ୍ଷିଣ ଭାଗରେ ଏହି ଦେବ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ମୁଖ ପୂର୍ବକୁ ।

୨୫-ଗଡ଼େଶ୍ୱର—ଗଡ଼ଆପୁର ଗ୍ରାମର ମୁଣ୍ଡରେ ଅବସ୍ଥିତ । ଏହାଙ୍କ ନାମାନୁସାରେ ଗଡ଼ଆପୁର ଗ୍ରାମର ନାମ ହୋଇଅଛି ।

୨୬—ଗାରୁଡ଼େଶ୍ୱର—ଗାରଡ଼େଶ୍ୱର ଗ୍ରାମରେ ଅବସ୍ଥିତ । ଏହାଙ୍କ ନାମାନୁସାରେ ଗ୍ରାମର ନାମ ଗାରଡ଼େଶ୍ୱର ।

୨୭—ଗୋକର୍ଣ୍ଣେଶ୍ୱର—ତ୍ରିଲୋଚନଙ୍କ ଦକ୍ଷିଣ ସୋମନାଥପୁର ଗ୍ରାମରେ । ଏଠାରେ ଗୋଟିଏ ପଥରବନ୍ଧା ପୁଷ୍କରିଣୀ ଅଛି । ଏହା ଗୋକର୍ଣ୍ଣତୀର୍ଥ । ଏହି ଶିବଙ୍କ ନିକଟରେ ଉର୍ବଶୀତୀର୍ଥ ବିଦ୍ୟମାନ ।

୨୮—ଗୋଧନେଶ୍ୱର—ଗୋଧନେଶ୍ୱର ଗ୍ରାମର ଦକ୍ଷିଣରେ ଏହି ଲିଙ୍ଗ ଅବସ୍ଥିତ । ଏହି ଲିଙ୍ଗ ଏପରି ଭାବରେ ଅବସ୍ଥାନ କରିଛନ୍ତି ଯେ, ଗାଈଠାରୁ ବାଛୁରୀ ଦୁଗ୍ଧ ପାନ କଲାପରି ଜଣାଯାଏ । ଏହାଙ୍କ ଜୀର୍ଣ୍ଣ ମନ୍ଦିରଟିକୁ ଏବେ ସ୍ଥାନୀୟ ଲୋକେ ପୁନର୍ନିର୍ମାଣ କରୁଅଛନ୍ତି । ଏହାଙ୍କ ଇତିବୃତ୍ତ କୁହାଯାଇଛି ।

୨୯—ଗୋପାଳେଶ୍ୱର—ବଡ଼ଶାସନ ଅର୍ଥାତ୍ ବୈତରଣୀ ଶାସନ ମଧ୍ୟରେ ଯାଇଥିବା ରାସ୍ତାର ଦକ୍ଷିଣରେ ପ୍ରାୟ ଶାସନ ମୁଣ୍ଡରେ ।

୩୦-ଘଣ୍ଟେଶ୍ୱର—କୁସୁମା ପୋଖରୀର ଉତ୍ତର ପାଖରେ ବଡ଼ ଡାକ୍ତରଖାନାର ନିକଟରେ, ମୁକ୍ତାର ଶ୍ରୀ ବନମାଳୀ ପଣ୍ଡାଙ୍କ ଘର ଆଗରେ ।

୩୧-ଚମ୍ପକେଶ୍ୱର—ଯାଉଁଳବନ୍ଧ ରାସ୍ତାର ପୂର୍ବ ତ୍ରିଲୋଚନଙ୍କ ନୈଋତ କୋଣରେ ଅବସ୍ଥିତ ।

୩୨—ଚଣ୍ଡେଶ୍ୱର—ଚଣ୍ଡେଶ୍ୱର ଗ୍ରାମର ପୂର୍ବରେ, ଶୁଭସ୍ତମ୍ଭର ଉତ୍ତରରେ । ଏହାଙ୍କ ନାମାନୁସାରେ ଗ୍ରାମର ନାମ ଚଣ୍ଡେଶ୍ୱର ।

୩୩-ଚିତ୍ରଗୁପ୍ତେଶ୍ୱର—ଚମ୍ପାମଣ୍ଡେଇ ଗ୍ରାମର ପଶ୍ଚିମରେ, ପ୍ରାଣାୟାମେଶ୍ୱରଙ୍କ ଆଗରେ ପଶ୍ଚିମାଭିମୁଖ ।

୩୪—ଜମ୍ବେଶ୍ୱର—ଜମ୍ବୁରେଖା ନିକଟରେ ଝାଆନାଳୀ କୂଳର ପୂର୍ବକୁ ବନ୍ଧତଳେ ଗଡ଼ାଣିର ପୂର୍ବରେ ଥିବା ମନ୍ଦିରରେ ଅବସ୍ଥିତ । ଏହି ମନ୍ଦିରର ଦ୍ୱାର ପଶ୍ଚିମକୁ । ଉକ୍ତ ରେଖାନଦୀଟି ଭାଗବତପୁର ଗ୍ରାମଆଡ଼କୁ ଯାଇ ଧାନ୍ୟ କ୍ଷେତ୍ରରେ ପରିଣତ ହୋଇ କପୂଦାଂଶ କେଦାରେଶ୍ୱରଙ୍କ ନିକଟରେ ଦେଖା-ଯାଏ । ଏହିଠାରେ ସୁଦର୍ଶନ ତୀର୍ଥ ।

୩୫-ଜଟେଶ୍ୱର—ଶୀତଳେଶ୍ୱର ଛକରେ, ସଦର ରାସ୍ତାର ବାମରେ ଏହି ଲିଙ୍ଗ ଅବସ୍ଥିତ ।

୩୬—ଜାଡ଼େୟଶ୍ୱର—ସିଦ୍ଧେଶ୍ୱରଙ୍କ ପଶ୍ଚିମରେ ଅବସ୍ଥିତ ।

୩୭—ଝାଡ଼େଶ୍ୱର—ପଣସା ଗ୍ରାମରେ ଅବସ୍ଥିତ ।

୩୮-ତାରକେଶ୍ୱର—କୁସୁମା ପୋଖରୀ ଆଡ଼ର ପଶ୍ଚିମରେ ।

୩୯—ତଳକେଶ୍ୱର ବା ଡାକନାମ ତଳଘଣ୍ଟେଶ୍ୱର—

କିମ୍ବଦନ୍ତୀରୁ ଜଣାଯାଏ, ଏହି ଶିବ ଦିନକୁ ତିଳେ ତିଳେ ବଢିବାରୁ ଦ୍ୱାର କବାଟ ବାଜିବା ଭଳି ହୋଇଗଲା । ଶିବଙ୍କ ଶକ୍ତି ଫାଟିଗଲା । ପୂଜକ ବିରକ୍ତି ପ୍ରକାଶ କରି କହିଲା--ତଳଘଣ୍ଟେଶ୍ୱର ! ଆପଣ ଯଦି ଏପରି ଭାବରେ ବଢ଼ନ୍ତି, ତେବେ ମୁଁ ଆଉ ପୂଜା କରିପାରିବି ନାହିଁ । ତତ୍ପରଠାରୁ ଦେବତା ଆଉ ବଢିଲେ ନାହିଁ । ପ୍ରକୃତରେ ଏହି ଶିବ ଅତି ବିଶାଳକାୟ, ଏପରି ଶିବ ଏ କ୍ଷେତ୍ରରେ ବିରଳ । କେବଳ ତଳଘଣ୍ଟେଶ୍ୱର ଓ ଅଗ୍ନୀଶ୍ୱରଙ୍କ

ବ୍ୟକ୍ତିତ ଆଜି ବିଶାଳକାୟ ଶିବ ଏ କ୍ଷେତ୍ରରେ ଦେଖାଯାଉନ୍ତି ନାହିଁ । କାଳକ୍ରମେ ମନ୍ଦିରଟିର କୟୂଦଂଶ ଭାଙ୍ଗିଯିବାରୁ ଏଠାକାର ପ୍ରସିଦ୍ଧ ଜମିଦାର ୰ ନରସିଂହ ଚୌଧୁରୀ ମନ୍ଦିରଟିକୁ ମରାମତ କରି ଦେଇଛନ୍ତି ।

୪୦-ତ୍ରିଲୋଚନ—"ତତ୍ରଦେବ ମହାଲିଙ୍ଗଂ ତ୍ରିଲୋଚନ ମିତି ଶ୍ରୁତମ୍ ।
ଯସ୍ୟ ଦର୍ଶନତୋ ମର୍ତ୍ତ୍ୟା ଅମର୍ତ୍ତ୍ୟୈଃ ସମତାଂଗତାଃ ॥"
(ବ୍ର. ପୁ. ୪ : ୧୩)

ଶିବ କହିଲେ—ହେ ପାର୍ବତି ! 'ତ୍ରିଲୋଚନ' ନାମକ ଏକ ସୁବିଖ୍ୟାତ ଲିଙ୍ଗ ଏହି କ୍ଷେତ୍ରରେ ଅଛନ୍ତି । ଯାହାଙ୍କୁ ମର୍ତ୍ତ୍ୟବାସୀମାନେ ଦର୍ଶନ କଲେ ଦେବତାମାନଙ୍କ ସମ ହୁଅନ୍ତି ।

ଯାଉଁଳୀବନ୍ଧର ପୂର୍ବଭାଗରେ ଅବସ୍ଥିତ । ଏହି ମନ୍ଦିରର ସ୍ଥାପତ୍ୟ ଚାରୁକଳା ଉତ୍କଳ ବିଖ୍ୟାତ । ମନ୍ଦିରଗାତ୍ରର କୋଠିକମ ଦେଖିଲେ ଲୋକେ ବିସ୍ମିତ ହୁଅନ୍ତି ।

୪୧-ସ୍ଥାନେଶ୍ୱର—ବାଙ୍କମୁହାଁ ମଞ୍ଜୁଷା ଗ୍ରାମରେ ଅବସ୍ଥିତ ।

୪୨-ତ୍ରୈଲୋକ୍ୟନାଥ—ଜଗନ୍ନାଥଙ୍କ ବେଢ଼ାସ୍ଥିତ ମୁକ୍ତେଶ୍ୱରଙ୍କ ମନ୍ଦିରରେ ଅବସ୍ଥିତ ।

୪୩-ଦକ୍ଷେଶ୍ୱର—ସିଦ୍ଧେଶ୍ୱରଙ୍କ ବାୟୁ କୋଣରେ ଅବସ୍ଥିତ ।

୪୪-ଦଣ୍ଡୀଶ୍ୱର—ତ୍ରିଲୋଚନଙ୍କ ସମ୍ମୁଖରେ ପୂର୍ବାଭିମୁଖ ମନ୍ଦିରରେ ଅବସ୍ଥିତ ।

୪୫-ଦାରୁକେଶ୍ୱର—ପ୍ରଭାକରପୁର ଗ୍ରାମର ପଶ୍ଚିମ ନାରାୟଣପୁର (ଡାକନାମ ନରଣପୁର) ଗ୍ରାମରେ ଦକ୍ଷିଣମୁଖ ମନ୍ଦିରରେ ଅବସ୍ଥିତ ।

୪୬-ଧବଳେଶ୍ୱର—ରାଜଘାଟର ଦକ୍ଷିଣରେ ନଦୀ କୂଳରେ ଅବସ୍ଥିତ ।

୪୭-ଧର୍ମେଶ୍ୱର—ସାନନଜାର କରମଙ୍ଗାବାଡିର ଉତ୍ତର ବୈତରଣୀ ବନ୍ଧର ଦକ୍ଷିଣ ଭାଗରେ ଅବସ୍ଥିତ ।

୪୮-ନନ୍ଦିକେଶ୍ୱର—ସିଦ୍ଧେଶ୍ୱରଙ୍କ ଉତ୍ତରରେ ଅବସ୍ଥିତ ।

୪୯-ନାରଦେଶ୍ୱର—ବଉଳାବେଢ଼ାର ବହିର୍ଭାଗରେ ଉତ୍ତର ପାର୍ଶ୍ୱରେ ଥିବା ଭର୍ଗେଶ୍ୱରଙ୍କ ଦକ୍ଷିଣରେ ଅବସ୍ଥିତ ।

୫୦-ନାଗ୍ୟେଶ୍ୱର—ଗଣପତିପୁର ଗ୍ରାମର ମୁଣ୍ଡରେ ପଶ୍ଚିମ ମୁଖ ମନ୍ଦିରରେ ଅବସ୍ଥିତ ।

୫୧-ନୈବେଦ୍ୟେଶ୍ୱର—ପାଉଁଳୀବନ୍ଧର ପଶ୍ଚିମରେ ସୋମତୀର୍ଥର ଉତ୍ତର ସୋମେଶ୍ୱରଙ୍କ ପଶ୍ଚିମରେ ଅବସ୍ଥିତ ।

୫୨-ପାରଦାରେଶ୍ୱର—ଚମ୍ପାମଣ୍ଡଇ ଗ୍ରାମରେ ପ୍ରାଣାଯ୍ୟାମେଶ୍ୱରଙ୍କ ପୂର୍ବରେ ଅବସ୍ଥିତ ।

୫୩-ପାଣ୍ଡବେଶ୍ୱର—ମାଧପୁର ଅର୍ଦ୍ଧନାରୀଶ୍ୱରଙ୍କ ଦକ୍ଷିଣରେ ଅବସ୍ଥିତ ।

୫୪-ପାପମୋଚନେଶ୍ୱର—ପାଉଁଳୀବନ୍ଧର ତଥା ସୋମେଶ୍ୱରଙ୍କ ପଶ୍ଚିମରେ ଅବସ୍ଥିତ ।

୫୫-ପଦ୍ମେଶ୍ୱର—ପଦ୍ମରେଖା କୂଳରେ ସପନପୁର ଶୁକପୁର ମଧ୍ୟଭାଗରେ ଅବସ୍ଥିତ ।

୫୬-ପରଶୁନାଥ – ସିଦ୍ଧଗଣେଶ ମନ୍ଦିର ମୁଖଶାଳାର ପଶ୍ଚିମରେ ଅବସ୍ଥିତ ।

୫୭-ପାତାଳେଶ୍ୱର – ବଳସର୍ଗ ଗ୍ରାମର ପୂର୍ବରେ ଅବସ୍ଥିତ ।

୫୮-ପ୍ରଭାକରେଶ୍ୱର – ପ୍ରଭାକରପୁର ଗ୍ରାମର ନରଣପୁର ରାସ୍ତାର ଦକ୍ଷିଣରେ ମହେଶ୍ୱର ପଣ୍ଡାଙ୍କ ଘର ଆଗରେ ।

୫୯-ପ୍ରାଣାଯ୍ୟାମେଶ୍ୱର – ଚମ୍ପାବାଗ ଗ୍ରାମସ୍ଥିତ ପାରଦାରେଶ୍ୱରଙ୍କ ପଶ୍ଚିମରେ ଅବସ୍ଥିତ ।

୬୦-ଫାଳେଶ୍ୱର – ଭେଲଙ୍ଗ ଗ୍ରାମ ନିକଟରେ ଅବସ୍ଥିତ ।

୬୧-ବରୁଣେଶ୍ୱର – ଅରୋଇ ଛକର ପୂର୍ବରେ ସ୍ୱନାମ ପ୍ରସିଦ୍ଧ ସୀମାଲିଙ୍ଗ । ଏହାଙ୍କର ବିଶଦବିବରଣ ଲୁହାଯାଇଛି ।

୬୨-ବଟେଶ୍ୱର – କପିଳେଶ୍ୱରଙ୍କ ନିକଟରେ 'ଧର୍ମବଟ' ମୂଳରେ ଅବସ୍ଥିତ, ଏହାଙ୍କ ବିଷୟରେ ଲୁହାଯାଇଛି ।

୬୩- ବାସୁକେଶ୍ୱର—ବାସୁକରେଖା ଯାହାଉପରେ 'ଅଠରନଳା' ପୋଲ ନିର୍ମିତ, ଏହାର ନିକଟରେ ।

୬୪- ବାସୁପୂଜତେଶ୍ୱର—ଭୁବନେଶ୍ୱରଙ୍କ ଦକ୍ଷିଣରେ ପ୍ରସିଦ୍ଧ ପଞ୍ଚପାଣ୍ଡବ ।

୬୫- ବାଣେଶ୍ୱର—ରାମବାଗକୁ ଯିବା ବାଟରେ ପାଲଦା ଗ୍ରାମର ଉତ୍ତର ଦିଗରେ ଅବସ୍ଥିତ ।

୬୬- ବାରୁଣେଶ୍ୱର—ବଡବା ଦେବୀଙ୍କ ପଶ୍ଚ ମରେ ଅବସ୍ଥିତ ।

୬୭- ବ୍ରହ୍ମେଶ୍ୱର—ବ୍ରହ୍ମାକୁଣ୍ଡର ଈଶାନ କୋଣରେ ଅର୍ଦ୍ଧନିର୍ମିତ ମନ୍ଦିରରେ ଅବସ୍ଥିତ ।

୬୮- ବିଶ୍ୱେଶ୍ୱର—କପିଳେଶ୍ୱରଙ୍କ ନିକଟବର୍ତ୍ତୀ ।

୬୯- ବିଶ୍ୱରୂପେଶ୍ୱର—ବରାହଙ୍କ ଦକ୍ଷିଣରେ ନଦୀ କୂଳରେ ଅବସ୍ଥିତ ।

୭୦- ବିଲ୍ୱେଶ୍ୱର—ବାରଭଜିଆ ଗ୍ରାମ ନିକଟବର୍ତ୍ତୀ ଲୋକପ୍ରସିଦ୍ଧ ସୀମାଳିଙ୍ଗ । ଏହାଙ୍କ ନିକଟରେ ବରୁଣେଇ ଠାକୁରାଣୀ ଅଛନ୍ତି ।

୭୧- ବିମୁକ୍ତେଶ୍ୱର—ବୈତରଣୀ ନଦୀର ଦକ୍ଷିଣରେ ଆଖଣ୍ଡଳେଶ୍ୱରଙ୍କଠାରୁ ୯୮ ଧେନୁ ଅନ୍ତରରେ ଅର୍ଥାତ୍ ଧେନୁକ ଶ୍ରୁତିହାତ ହିସାବରେ ୩୯୨ ହାତ ଦୂରରେ ଜଗନ୍ନାଥ ମନ୍ଦିରର ବାୟୁ କୋଣରେ 'ବିମୁକ୍ତେଶ୍ୱର ବିଦ୍ୟମାନ ।

ଏହାଙ୍କର ଇତିବୃତ୍ତ :—ପୂର୍ବେ 'ବିଷ୍ଣୁ' ମାତୃଅଭିଶାପରେ ନିଜ ପାପରୁ ବିଚ୍ୟୁତହୋଇ ନିରାହାରରେ ୪୫୦ ବର୍ଷ କାଳ କଠୋର ତପସ୍ୟାରେ ରତହୋଇ ଏବଂ ଶିବଙ୍କର ପ୍ରୀତି ସମ୍ପାଦନ ପାଇଁ ହୋମ, ପୂଜା, ରୁଦ୍ରା–ଭିଷେକ ପ୍ରଭୃତି ଆନୁଷ୍ଠାନିକ କାର୍ଯ୍ୟ ସମ୍ପାଦନ ପୂର୍ବକ ସ୍ତବ, ସ୍ତୋତ୍ରାଦି ପାଠକରି ଥିଲେ । ତତ୍ପରେ ଶିବ ପ୍ରୀତହୋଇ ବିଷ୍ଣୁଙ୍କୁ ସମସ୍ତ ପାପରୁ ମୁକ୍ତ କରିବାରୁ ଏହାଙ୍କର ନାମ 'ବିମୁକ୍ତେଶ୍ୱର' ହେଲା ।

ବିଷ୍ଣୁଙ୍କ ପ୍ରତି 'ମାତୃଶାପର କାରଣ'—(ପୌରାଣିକ ବାର୍ତ୍ତା)

ପୂର୍ବକାଳରେ ଦିତିଙ୍କର ପୁତ୍ର ଦୈତ୍ୟମାନେ ଇନ୍ଦ୍ରାଦି ଦେବଗଣଙ୍କୁ ପରାସ୍ତ କରି ସ୍ୱର୍ଗରାଜ୍ୟ ଭୋଗକଲେ । ତତ୍ପରେ ଇନ୍ଦ୍ରାଦି ଦେବତାଙ୍କ

ଅନୁରୋଧରେ ବିଷ୍ଣୁ ଦୈତ୍ୟମାନଙ୍କୁ ସଂହାର କରିବାରୁ ଦିତି କ୍ରୋଧାନ୍ୱିତା ହୋଇ ସ୍ୱାମୀ କଶ୍ୟପ ଋଷିଙ୍କ ନିକଟରେ ଶରଣାପନ୍ନ ହୋଇ ଇନ୍ଦ୍ରଙ୍କଠାରୁ ଅଧିକ ବଳବୀର୍ଯ୍ୟ ସମ୍ପନ୍ନ ପୁତ୍ରଲାଭ କରିବାର ଉପାୟ ଜିଜ୍ଞାସା କଲେ । କଶ୍ୟପ ଦିତିଙ୍କୁ କଠୋର ତପସ୍ୟା କରିବା ପାଇଁ କହିବାରୁ ଦିତି ଗଙ୍ଗା-କୂଳରେ କଠୋର ତପସ୍ୟା କଲେ । ଇନ୍ଦ୍ର ଭୟଭୀତହୋଇ ବିଷ୍ଣୁଙ୍କ ଶରଣାପନ୍ନ ହେଲେ ଓ ପରାମର୍ଶ ନେଇଲେ । ବିଷ୍ଣୁଙ୍କ ଆଦେଶରେ ଇନ୍ଦ୍ର ଦିତିଙ୍କ ସେବା କାର୍ଯ୍ୟରେ ରହି ଏକଦା ଦିତି ପାଦଧୌତ ନ କରି ଶୟନ କରିବାରୁ ଅନାବୃତର ଛିଦ୍ରପାଇ ଇନ୍ଦ୍ର ତାଙ୍କ ଗର୍ଭରେ ପ୍ରବେଶ କରି ବଜ୍ର-ଦ୍ୱାରା ଗର୍ଭସ୍ଥ ଭ୍ରୂଣକୁ ସାତଖଣ୍ଡ କରି କାଟି ପକାଇଲେ । ତତ୍ପରେ ଦିତିଙ୍କର ନିଦ୍ରାଭଙ୍ଗ ହେବାରୁ ସେ ଭ୍ରୂଣର କ୍ରନ୍ଦନ ଶୁଣି ନିଜେ କ୍ରନ୍ଦନ କଲେ । ଇନ୍ଦ୍ର ତାଙ୍କୁ ସାନ୍ତ୍ୱନା ପ୍ରଦାନ କଲେ । ତତ୍ପରେ ଦିତି ସେହି ସାତୋଟି ପୁତ୍ରଙ୍କୁ ସପ୍ତମାରୁତ ହୋଇ ଇନ୍ଦ୍ରଙ୍କୁ ସେବା କରିବା ପାଇଁ କହି କଶ୍ୟପଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ । ତତ୍ପରେ ଏ ସମସ୍ତ ବିଷ୍ଣୁଙ୍କ କୃତ୍ୟବୋଲି କଶ୍ୟପଙ୍କ ଠାରୁ ଶୁଣି ଦିତି କ୍ରୁଦ୍ଧହୋଇ ଅଭିଶାପ ଦେଲେ ଯେ—'ତୁମ୍ଭେ ବୁଦ୍ଧିହୀନ ହୁଅ ।' ତେଣୁ ବିଷ୍ଣୁ ମାତୃଶାପରୁ ମୁକ୍ତ ହେବାପାଇଁ ଏହି ଶିବଙ୍କର ଆଶ୍ରୟ ନେଲେ ।

୭୨-ବୈଦ୍ୟନାଥ—ନାଭିଗୟାର ପୂର୍ବରେ ଅବସ୍ଥିତ ।

୭୩-ଭସ୍ମେଶ୍ୱର—ନନ୍ଦପୁର ଗ୍ରାମ ନିକଟ ।

୭୪-ଭାରଭୂତେଶ୍ୱର—ଅଠଢେଶ୍ୱର (ହଟଟେଶ୍ୱର)ଙ୍କ ନୈର୍ଋତ କୋଣରେ ଅବସ୍ଥିତ ।

୭୫-ଭାର୍ଗବେଶ୍ୱର—ଚିରଜାଙ୍କ ଉତ୍ତର ବେଢ଼ାର ବହିର୍ଭାଗରେ ନାରଦେ-ଶ୍ୱରଙ୍କ ଉତ୍ତରରେ ବ୍ରହ୍ମେଶ୍ୱରଙ୍କ ଦକ୍ଷିଣରେ କାଞ୍ଚିର ଅଗ୍ନିକୋଣରେ ଅବସ୍ଥିତ ।

**ଇତିବୃତ୍ତ**—ପୂର୍ବେ ଭୃଗୁମହର୍ଷିଙ୍କ ପୁତ୍ର ଭାର୍ଗବ ପୁତ୍ରକାମନାରେ ଏହି ଲିଙ୍ଗଙ୍କୁ ଆରାଧନା କରି ଉତ୍ତମ ପୁତ୍ର ଲାଭ କରିଥିଲେ । ତେଣୁ ପୁତ୍ରଲାଭ ଆଶାରେ ଯେଉଁ ବ୍ୟକ୍ତି ଏହାଙ୍କୁ ପୂଜାକରେ ସେ ସତ୍ପୁତ୍ର ଲାଭକରେ ।

୭୭। ଖିମେଶ୍ୱର—ଖିହାଶୋଇ ଗ୍ରାମ ନିକଟରେ ।

୭୭। ଭୁବନେଶ୍ୱର—ପଞ୍ଚପାଣ୍ଡବଙ୍କ ଉତ୍ତରରେ ।

୭୮। ଭୁଙ୍ଗଘଂଟେଶ୍ୱର—ସିଦ୍ଧେଶ୍ୱରଙ୍କ ଦକ୍ଷିଣରେ ।

୭୯। ମାର୍କଣ୍ଡେୟେଶ୍ୱର—ବଉଳାଙ୍କ ସମ୍ମୁଖ କାମାକ୍ଷୀଙ୍କ ପଶ୍ଚିମରେ ଶ୍ମଶାନ-ତୀର୍ଥ ନିକଟରେ ।

୮୦। ମହାକାଳେଶ୍ୱର—ଲକ୍ଷେନ୍ଦ୍ରପୁର ମଧ୍ୟସ୍ଥିତ ।

୮୧। ମାନସେଶ୍ୱର—କୁଆମଣ୍ଡେଇ ଗ୍ରାମର ରୌଦ୍ରତୀର୍ଥ ବା ଶୌରିକୁଣ୍ଡ ନିକଟବର୍ତ୍ତୀ ।

୮୨। ମାନେଶ୍ୱର—କୋଦଣ୍ଡପୁର ନିକଟବର୍ତ୍ତୀ ।

୮୩। ମୁକୁନ୍ଦେଶ୍ୱର—ବନ୍ଧାଣ ଗ୍ରାମସ୍ଥିତ ହରଚଣ୍ଡେଶ୍ୱରଙ୍କ ପଶ୍ଚିମରେ ।

୮୪। ମୁକ୍ତେଶ୍ୱର—ଜଗନ୍ନାଥଙ୍କ ବେଢ଼ା ମଧ୍ୟସ୍ଥିତ ।

୮୫। ମୃତ୍ୟୁଞ୍ଜୟେଶ୍ୱର—ଶଙ୍ଖନାଭିର ଈଶାନ କୋଣରେ ମନ୍ଦିର ମଧ୍ୟସ୍ଥିତ ଗଭୀର ଗର୍ତ୍ତ ମଧ୍ୟରେ ଅନ୍ତର୍ଗତ । ମୃତ୍ୟୁଞ୍ଜୟ ତୀର୍ଥ ଅନୁସାରେ ଏହାଙ୍କର ନାମ ମୃତ୍ୟୁଞ୍ଜୟେଶ୍ୱର, କିନ୍ତୁ ଏହାଙ୍କର ଅନ୍ୟନାମ ଯୂପେଶ୍ୱର । ଏଥିପାଇଁ ପିଣ୍ଡ-ଦାନ ବାକ୍ୟରେ 'ଯୂପକୂପୟୋର୍ମଧ୍ୟେ' ବୋଲି ଉଚ୍ଚାରଣ କରାଯାଏ । କେତେକ କଥାଛଳରେ କହନ୍ତି—"ମନ୍ଦିର ଭିତରେ ମନ୍ଦିର ବା ଦେଉଳ ଭିତରେ ଦେଉଳ ।"

୮୬। ଯଯାତିଶ୍ୱର—ଯାଜପୁରରେ ବୈତରଣୀ ତଟସ୍ଥିତ 'ଯଯାତି ତୀର୍ଥ' ଆଗରେ ।

୮୭। ଯମେଶ୍ୱର—ଯାଉଁଳୀବନ୍ଧର ପୂର୍ବକୁ ତ୍ରିଲୋଚନଙ୍କ ଆଗରେ । ଯେଉଁ ଲୋକ ମହାକାର୍ତ୍ତିକରେ ସ୍ନାନକରି ଏହି ଶିବଙ୍କୁ ଦର୍ଶନ କରେ, ସେ ଯମଯାତନା ଭୋଗକରେ ନାହିଁ ।

୮୮। ଯାମଦଗ୍ନ୍ୟେଶ୍ୱର—ବଉଳାବେଢ଼ା ମଧ୍ୟବର୍ତ୍ତୀ ଈଶାନେଶ୍ୱରଙ୍କ ଉତ୍ତ-ରରେ, ଲୋମହର୍ଷଣେଶ୍ୱରଙ୍କ ଈଶାନ କୋଣରେ, ନରକାନ୍ତ ମାଧବଙ୍କ ଦକ୍ଷିଣରେ ।

୮୯। ଯୁକ୍ତେଶ୍ୱର—ଯମେଶ୍ୱରଙ୍କ ଦକ୍ଷିଣରେ ।

୯୦-ବ୍ରଜେଶ୍ବର—ସ୍ଵନାମ ପ୍ରସିଦ୍ଧ ବ୍ରଜଘାଟ କରମଙ୍ଗାବାଙ୍କି ଗ୍ରାମ ପାଖରେ ବୈତରଣୀ କୂଳରେ ଏହି ଲିଙ୍ଗ ଅବସ୍ଥିତ ।

୯୧-ଧ୍ଵଜଵ୍ରଜେଶ୍ଵର—ବଡ଼ବଗ୍ରଇ ମୌଜାର ଦକ୍ଷିଣରେ ଡାକ୍ତର ଶ୍ରୀ ବୃନ୍ଦାବନ ପଣ୍ଡାଙ୍କ କୋଠାର ପୂର୍ବଭାଗରେ ଅବସ୍ଥିତ । ଆଡ଼ଭୋକେଟ୍ ଶ୍ରୀ ନବକିଶୋର ଶତପଥୀଙ୍କ କୋଠା ସମ୍ମୁଖରେ ।

୯୨-ବ୍ରହ୍ମେଶ୍ବର—ଭୁବନେଶ୍ବରଙ୍କ ଦକ୍ଷିଣରେ ପ୍ରସିଦ୍ଧ ପଞ୍ଚପାଣ୍ଡବ ବାସୁପୂଜଜେଶ୍ବରଙ୍କ ପଶ୍ଚିମରେ ଅବସ୍ଥିତ (ବ୍ରହ୍ମାକୁଣ୍ଡ ନିକଟ) ।

୯୩-ରୁଦ୍ରେଶ୍ବର—୬ ଯୁଧିଷ୍ଠିର ମହାନ୍ତି (ଡାକନାମ ଯାଉଁଳିଆ)ଙ୍କ ଘର ସମ୍ମୁଖବର୍ତ୍ତୀ ହଟ୍ଟେଶ୍ବର ମନ୍ଦିରରେ ଯେଉଁ ଏକାଦଶ ରୁଦ୍ର ବିଦ୍ୟମାନ, ସେମାନଙ୍କ ମଧ୍ୟରୁ 'ରୁଦ୍ରେଶ୍ବର' ଏକତମ ।

୯୪-ଲକ୍ଷେଶ୍ବର—ବାଣପୁର ଗ୍ରାମର ଉତ୍ତର ପଶ୍ଚିମରେ N.C.College ନିକଟରେ ଅବସ୍ଥିତ ।

୯୫-ରୋମହର୍ଷଣେଶ୍ବର—ବରଜାଙ୍କ ବେଢ଼ା ମଧ୍ୟସ୍ଥିତ ଈଶାନେଶ୍ବରଙ୍କ ଉତ୍ତର ଭାଗରେ ଅବସ୍ଥିତ ।

୯୬-ଲିଙ୍ଗରାଜ—ଏଠାରୁ ପ୍ରାୟ ୧୫ମାଇଲ ଦୂରବର୍ତ୍ତୀ ସିଦ୍ଧେଶ୍ୱରଙ୍କ ପୂର୍ବ ଦିଗରେ ଅବସ୍ଥିତ, ଯେଉଁଠାରେ ବୈତରଣୀ ନଦୀ ଉତ୍ତରବାହିନୀ ହୋଇଅଛି ।

୯୭-ଶୀତଳେଶ୍ବର—ଶୀତଳେଶ୍ବର ଗ୍ରାମରେ ଶୀତଳେଶ୍ବରୀ (ଶୀତଳା)ଙ୍କ ନିକଟରେ ଅବସ୍ଥିତ । ଏହି ଦେବଦେବୀଙ୍କ ନାମାନୁସାରେ ଗ୍ରାମର ନାମ 'ଶୀତଳେଶ୍ବର' ହୋଇଅଛି ।

୯୮-ଶୃଙ୍ଗେଶ୍ବର—ଶୀତଳେଶ୍ବର ନିକଟରେ ହଟ୍ଟେଶ୍ବରଙ୍କ ସମ୍ମୁଖଭାଗରେ ଥିବା ମନ୍ଦିରରେ ଅବସ୍ଥିତ ।

୯୯-ସକଳେଶ୍ବର—ଯାଜପୁର ବୈତରଣୀ ତଟସ୍ଥିତ ଯଯାତିଶ୍ବରଙ୍କ ପୂର୍ବରେ ଯଯାତିତୀର୍ଥ ନିକଟରେ ଅବସ୍ଥିତ ।

୧୦୦-ସନ୍ତେଶ୍ବର—ସନ୍ତମାଧବ ଗ୍ରାମ ମଣ୍ଡପ (ଡାକନାମ ମଣ୍ଡୁଅ)ରେ ପଡ଼ା ମିଶ୍ରଙ୍କ ଗୃହର ପଶ୍ଚିମ ଭାଗରେ ଅବସ୍ଥିତ ।

୧୦୧-ସିଦ୍ଧେଶ୍ୱର—ଏଠାରୁ ପ୍ରାୟ ଗୃହମାଇଲ ଦୂରସ୍ଥିତ ଜନପ୍ରସିଦ୍ଧ ହାଗପୁର ଗ୍ରାମ ନିକଟବର୍ତ୍ତୀ ବୈତରଣୀ କୂଳରେ ଅବସ୍ଥିତ, ଯାହାଙ୍କୁ 'ହରିହର ଏକାତ୍ମା' ବୋଲି କହନ୍ତି । ଏହାଙ୍କ ନିକଟରେ ସିଦ୍ଧବନ, ସିଦ୍ଧବଟ ବିଦ୍ୟମାନ । ବାରାଣସୀରେ ଗଙ୍ଗା ଯେପରି ଉତ୍ତରବାହିନୀ ହୋଇଅଛି, ସେହିପରି ଏଠାରେ ବୈତରଣୀ ଉତ୍ତରବାହିନୀ ହୋଇ ସିଦ୍ଧବନର ତିନି ପାଖରେ ଘେରି ବହିଯାଉଅଛି । କିମ୍ବଦନ୍ତୀରୁ ଜଣାଯାଏ ବ୍ରହ୍ମା ଯଜ୍ଞସାଧନ ପାଇଁ ବୈତରଣୀଙ୍କୁ ଆହ୍ୱାନ କରି ଆଣି ଯଜ୍ଞ ଶେଷରେ ତାଙ୍କୁ ସ୍ୱସ୍ଥାନାଭି-ମୁଖୀ କରାଇ 'ଉତ୍ତରବାହିନୀ' କରାଇଲେ । ଏଣୁ ନଦୀ ଏଠାରେ ଉତ୍ତର ଦିଗକୁ ସ୍ରୋତର ଗତିପଥ ପରିବର୍ତ୍ତନ କରି ସ୍ୱଭାବତଃ ଲୀଳା ହୋଇ ସମୁଦ୍ର-ଗାମିନୀ ହୋଇଛନ୍ତି । ଏହି ନଦୀକୁ ସୁଖାବତରଣ କରି ସ୍ନାନ ପାନର ସୁବ୍ୟବସ୍ଥା ପାଇଁ ପ୍ରସ୍ତର ପାବଚ୍ଛ ଶ୍ରେଣୀ ବିଦ୍ୟମାନ । ଏହାକୁ ସୁରମ୍ୟ ସ୍ଥାନ ବୋଲି ଭାବି ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ଏଠାରେ ତପସ୍ୟା କରିଥିଲେ । ଏହି ତୀର୍ଥ ସମ୍ବନ୍ଧରେ କପିଳ ସଂହିତାରେ ବର୍ଣ୍ଣିତ—

"ତୀର୍ଥଂ ସିଦ୍ଧେଶ୍ୱରଂ ନାମ ସିଦ୍ଧିଦଂ ସର୍ବକାମଦମ୍ ।
ଯଦାଶ୍ରିତ୍ୟ ବିଧିବତ୍ ସିଦ୍ଧାଃ ସିଦ୍ଧତ୍ୱ ମାଯଯୁଃ ॥" ୯୩

× × × ×

"ସିଦ୍ଧେଶ୍ୱରେ ସକୃଦ୍ ଯେନ ମସ୍ତକମୁଣ୍ଡନଂ କୃତମ୍ ।
ତସ୍ୟ ତୁଷ୍ଟଃ ପ୍ରଜାନାଥଃ ସିଦ୍ଧିଂ ଦଦ୍ୟାଦ୍ ଯଥେପ୍ସିତମ୍ ॥ ୯୪
ସିଦ୍ଧେଶ୍ୱରେ ମନୋଜ୍ଞେ ଚ ପ୍ରସନ୍ନେ ସଲିଳେ ଶୁଭେ ।
ସ୍ନାତଂ ଯେନ ହିନୈକଂଚ ସ୍ନାତଂ ତେନ ଜଗତ୍ରୟେ ॥" ୯୫

ଅର୍ଥାତ୍ ସିଦ୍ଧେଶ୍ୱର ନାମକ ତୀର୍ଥରେ ସ୍ନାନକଲେ ଲୋକର ସମସ୍ତ କାମନା ପୂର୍ଣ୍ଣ ହୁଏ ; ଯେଉଁ ତୀର୍ଥରେ ସିଦ୍ଧମାନେ ଯଥାବିଧି ଅବସ୍ଥାନ କରି ସିଦ୍ଧିଲାଭ ପୂର୍ବକ 'ସିଦ୍ଧ' ବୋଲି ଖ୍ୟାତି ଲାଭ କରିଅଛନ୍ତି । ଯେଉଁ ଲୋକ ସିଦ୍ଧେଶ୍ୱରରେ ଥରେମାତ୍ର ମୁଣ୍ଡନ (ଲଣ୍ଡା) ହୁଏ, ତାହାପ୍ରତି ବ୍ରହ୍ମା ସନ୍ତୁଷ୍ଟ ହୋଇ ଅଭିଳଷିତ ବର ପ୍ରଦାନ କରନ୍ତି । ଆହୁରି ମଧ୍ୟ ଯେଉଁ ଲୋକ ସୁରମ୍ୟ ସିଦ୍ଧେଶ୍ୱର ତୀର୍ଥରେ ସ୍ୱଚ୍ଛ ଜଳରେ ଶୁଭଦିନ ଶୁଭଯୋଗରେ ସ୍ନାନ-କରେ, ସେ ତ୍ରିଭୁବନସ୍ଥିତ ସକଳ ତୀର୍ଥ ସ୍ନାନର ଫଳଲାଭ କରେ ।

୧୦୨ ସ୍ୱପ୍ନେଶ୍ୱର—ସପନପୁର ଶାସନର ପୂର୍ବ ଦିଗରେ ଶାସନ ମୁଖରେ ଅବସ୍ଥିତ । ଏହାଙ୍କ ନାମାନୁସାରେ ଶାସନର ନାମ ସ୍ୱପ୍ନପୁର (ସପନପୁର) ।

୧୦୩-ସୁକୁମାରେଶ୍ୱର—କୁଆଁସରଧୂର ଗ୍ରାମରେ ଅବସ୍ଥିତ ।

୧୦୪-ସୋମେଶ୍ୱର—ପାଉଁଳିବନ୍ଧର ପଶ୍ଚିମରେ ସୋମତୀର୍ଥର ଉତ୍ତର-ଭାଗରେ ଅବସ୍ଥିତ ।

୧୦୫-ହରକେଶେଶ୍ୱର—ସିଦ୍ଧେଶ୍ୱରଙ୍କ ପୂର୍ବ ଭାଗରେ ମହର୍ଷିତୀର୍ଥ ନିକଟରେ ଅବସ୍ଥିତ ।

୧୦୬-ହରନ୍ଦେଶ୍ୱର—ବନ୍ଧାଣ ଗ୍ରାମର ପଶ୍ଚିମରେ ଅବସ୍ଥିତ । ଏହି ଶିବ-ଲିଙ୍ଗ ସର୍ବଦା ଜଳମଗ୍ନ ଥାନ୍ତି । ଏଠାରେ ଥିବା ଦେବୀ ବନ୍ଧେଶ୍ୱରୀଙ୍କ ନାମା-ନୁସାରେ ଗ୍ରାମର ନାମ 'ବନ୍ଧାଣ' ହୋଇଅଛି ।

୧୦୭-ହାଟକେଶ୍ୱର—ଜଗନ୍ନାଥ ମନ୍ଦିର ବେଢ଼ା ମଧ୍ୟବର୍ତ୍ତୀ ବାୟୁକୋଣରେ ଅବସ୍ଥିତ । ଏହି ହାଟକେଶ୍ୱରଙ୍କୁ ଦର୍ଶନକଲେ ଭକ୍ତର ମନୋଽଭୀଷ୍ଟ ସିଦ୍ଧ ହୁଏ । ଏ ବିଷୟରେ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି—

"ଆକାଶେ ତାରକଂ ଲିଙ୍ଗଂ ପାତାଳେ ହାଟକେଶ୍ୱରମ୍ ।
ମର୍ତ୍ତ୍ୟଲୋକେ ମହାକାଳଂ ଦୃଷ୍ଟ୍ୱା କାମାନବାପ୍ନୁୟାତ୍ ॥"

× × × ×

ଅର୍ଥାତ୍ ଆକାଶରେ ତାରକ ଲିଙ୍ଗଙ୍କୁ ବା ତାରକେଶ୍ୱରଙ୍କୁ, ପାତା-ଳରେ ହାଟକେଶ୍ୱରଙ୍କୁ ତଥା ମର୍ତ୍ତ୍ୟ ମଣ୍ଡଳରେ ମହାକାଳେଶ୍ୱରଙ୍କୁ ଦର୍ଶନ କଲେ ଦର୍ଶକମାନଙ୍କର ମନସ୍କାମନା ପୂର୍ଣ୍ଣ ହୁଏ । ଏଣୁ ପାତାଳର ହାଟକେଶ୍ୱର ପରି ଏଠାରେ ହାଟକେଶ୍ୱରଙ୍କର ଦର୍ଶନ ଫଳ ଅପରସୀମ ତଥା ଅଭୀଷ୍ଟ ଫଳପ୍ରଦ ଅଟେ ।

୧୦୮-କ୍ଷେତ୍ରେଶ୍ୱର—ସୋମତୀର୍ଥର ଉତ୍ତର ଭାଗରେ ସୋମେଶ୍ୱରଙ୍କ ନିକଟରେ ଅବସ୍ଥିତ ।

ବି: ଦ୍ର:—୧-ଉପର ଲିଖିତ ତାଲିକା ଭୁକ୍ତ ଶିବଲିଙ୍ଗଙ୍କ ବ୍ୟତୀତ କେତେକ ବିଭିନ୍ନ ସ୍ଥାନରେ ଲୋକ ଚକ୍ଷୁର ଅଗୋଚରରେ ରହିଥିବାରୁ ସେମାନଙ୍କ ମଧ୍ୟରୁ କେତେକ ଶିବଲିଙ୍ଗଙ୍କୁ ଆଣି ବଡ଼ଦାଣ୍ଡ ବେଢ଼ାର ଉତ୍ତର ଦ୍ୱାରର

ପୂର୍ବଭାଗରେ ଗୋଟିଏ ଶାଳା ମଧ୍ୟରେ ଏକତ୍ରିତ କରା ଯାଇଅଛି । ଏହି ଲିଙ୍ଗଙ୍କର ସଂଖ୍ୟା ମାତ୍ର ୫୪ । ଏହାକୁ 'ରୁଦ୍ରମେଳା' କୁହାଯାଏ ।

୨-ପ୍ରାୟ ଯେଉଁଠାରେ ଶିବଲିଙ୍ଗ ବିଦ୍ୟମାନ, ସେଠାରେ ପ୍ରାୟ ଗୋଟିଏ ଗୋଟିଏ ତୀର୍ଥ ବିଦ୍ୟମାନ ।

## କ୍ଷେତ୍ରର ୬୮ ତୀର୍ଥ, ତାହାର ନାମ ଓ ସ୍ଥାନ ନିରୂପଣ :—

ଏହି ବିରଜାଃ କ୍ଷେତ୍ରର ବିଭିନ୍ନ ସ୍ଥାନରେ ୬୮ (ଅଡ଼ଷଠିଟି) ତୀର୍ଥ ରହିଅଛି, ଯେଉଁଠାରେ ତିଥି, ଯୋଗ ମାସ ଅନୁସାରେ ସ୍ନାନ ତର୍ପଣାଦି କଲେ ଲୋକ ପୁଣ୍ୟ ଫଳ ଲଭକରେ । ସେହି ତୀର୍ଥମାନଙ୍କର ନାମ ଓ ସ୍ଥାନର ପରିଚୟ ଶାସ୍ତ୍ରାନୁସାରେ ତଥା ବୟସ୍କ ଲୋକମାନଙ୍କ ଆପ୍ତବାକ୍ୟା–ନୁସାରେ ନିମ୍ନରେ ବର୍ଣ୍ଣାନୁକ୍ରମରେ ଦିଆଗଲା ।

୧-ଅଶ୍ୱମେଧତୀର୍ଥ—ଦଶାଶ୍ୱମେଧ ଘାଟର ଦକ୍ଷିଣତଟ ସପ୍ତମାତୃକାଙ୍କ ସମ୍ମୁଖ ଭାଗ ଅଂଶ ।

୨–ଅସ୍ଥି କ୍ଷେପଣତୀର୍ଥ—ସିଦ୍ଧେଶ୍ୱରଙ୍କ ଉତ୍ତର ପାର୍ଶ୍ୱ ବୈତରଣୀ ତଟରେ । ଏଠାରେ ପିତୃଲୋକମାନଙ୍କର ଚିତାଭସ୍ମ ଓ କିୟଦଂଶ ଅସ୍ଥି ବିସର୍ଜନ କରାଯାଏ ।

୩–ଅନ୍ତର୍ବେଦୀତୀର୍ଥ—ସପ୍ତମାତୃକା ତଥା ସିଦ୍ଧଗଣେଶଙ୍କ ପଶ୍ଚିମ ଦିଗରେ ଯେଉଁ ଚତୁଷ୍କୋଣୀ ବେଦୀଟି ଅଛି, ତାହାହିଁ ଅନ୍ତର୍ବେଦୀ । ଏଠାରେ ମୁମୂର୍ଷୁ ବ୍ୟକ୍ତିର ପ୍ରାଣ ବିସର୍ଜନ ହେଲେ ଊର୍ଦ୍ଧ୍ୱଗତି ହୁଏ ବୋଲି ଶାସ୍ତ୍ରସିଦ୍ଧ ।

୪-ଅଗ୍ନି ତୀର୍ଥ—ଜଗନ୍ନାଥ ବେଢ଼ାର ଦକ୍ଷିଣ ପଶ୍ଚିମ ଅର୍ଥାତ୍ ନୈଋତ କୋଣରେ ଡାଃ ଭବାନୀ ବାବୁଙ୍କ ଘର କୋଣ ପୋଖରୀ ।

୫–ଅଗସ୍ତି ତୀର୍ଥ—ଶୀତଳେଶ୍ୱର ଗ୍ରାମର ଉତ୍ତର ଅଗସ୍ତ୍ୟେଶ୍ୱରଙ୍କ ପୂର୍ବରେ ।

୬–ଅନନ୍ତତୀର୍ଥ—ହଂସରେଖା (ଡାକନାମ 'ହଂସିଆ')ର ଦକ୍ଷିଣେ ଖୋର ତଳ–ଭାଣ୍ଡେଶ୍ୱରଙ୍କ ଉତ୍ତର ପାର୍ଶ୍ୱ ।

୭–ଅଲ୍ପାମ୍ବୁ (ସ୍ୱଳ୍ପାମ୍ବୁ) ତୀର୍ଥ—ବାରଭାଗିଆ ଗ୍ରାମ ନିକଟରେ ବିଲ୍ୱେଶ୍ୱରଙ୍କ ଉତ୍ତର ବୈତରଣୀ ତଟରେ । ଏ ବିଷୟରେ କପିଳ ସଂହିତାରେ ବର୍ଣ୍ଣିତ—

"ଅଲ୍ଲାମ୍ବୁ ସଙ୍କକଂ ତୀର୍ଥଂ ନବାଟ୍ଟେ ଢ଼ରଜେ ଦ୍ୱିଜାଃ ।
ଅଲ୍ପମୃଣ୍ୟଂ ଭବେତ୍ତତ୍ର ମେରୁତୁଲ୍ୟଂ ନସଂଶୟଃ ॥" କ. ସ. ୭୫

୮-ଅଲାବୁତୀର୍ଥ—ପାଉଁଳିବନ୍ଧର ପୂର୍ବ ତ୍ରିଲୋଚନଙ୍କ ଈଶାନ କୋଣରେ ।

୯-ଉତ୍ପଳତୀର୍ଥ—ହୀରପୁରରେ ଥିବା ମାଳାକ୍ଷୀଙ୍କ ଉତ୍ତରରେ ।

୧୦-ଉର୍ବଶୀତୀର୍ଥ—ପାଉଁଳିବନ୍ଧର ପୂର୍ବ ତ୍ରିଲୋଚନଙ୍କ ବାୟୁ କୋଣରେ ଅବସ୍ଥିତ ।

୧୧-କଶ୍ୟପତୀର୍ଥ—ବରାହଙ୍କ ଦକ୍ଷିଣ ଘୋଡ଼ାବାହିନୀଙ୍କ ନିକଟ କାଶ୍ୟପେଶ୍ୱରଙ୍କ ପଶ୍ଚିମରେ ।

୧୨-କନ୍ୟାତୀର୍ଥ—କ୍ଷେତ୍ରର ସୀମାଲିଙ୍ଗ ବରୁଣେଶ୍ୱରଙ୍କ ପଶ୍ଚିମରେ ଅବସ୍ଥିତ ।

୧୩-କାଲଲତୀର୍ଥ—ଖୋଦୋଡ଼ା ବା ଖଙ୍ଗର ଗ୍ରାମ ନିକଟବର୍ତ୍ତୀ କ୍ଷେତ୍ରର ସୀମାଲିଙ୍ଗ କାଲଲଟେଶ୍ୱରଙ୍କ ଉତ୍ତରରେ "ଶାତାତପ ଋଷିଙ୍କ ତପଃସ୍ଥାନ ।"

୧୪-କପିଲତୀର୍ଥ—କପିଳେଶ୍ୱରଙ୍କ ଉତ୍ତରସ୍ଥିତ ପୁଷ୍କରଣୀ ।

"ତତ୍ର କ୍ଷେତ୍ରବରେ ବିପ୍ରାଃ କାପିଳଂ କ୍ଷେତ୍ର ମୁତ୍ତମମ୍ ।
ପ୍ରସନ୍ନସଲିଳଂ ଚୈବ ମନୋଜ୍ଞଂ ଶୁଭ୍ରଦର୍ଶନମ୍ ॥" କ. ସ. ୭୮

+ + + +

୧୫-ଘୋଡ଼ତୀର୍ଥ—ଘୋଡ଼ ବାହିନୀଙ୍କ ପଶ୍ଚିମରେ ଅବସ୍ଥିତ ।

୧୬-ଗଦାତୀର୍ଥ—ଈଶାନେଶ୍ୱରଙ୍କ ପଶ୍ଚିମରେ ।

୧୭-ଗଙ୍ଗାତୀର୍ଥ—ଗାରଡ଼େଶ୍ୱର ଗ୍ରାମର ପଶ୍ଚିମ ବୈତରଣୀ ତୀରରେ ପ୍ରସିଦ୍ଧ ଗଙ୍ଗେଶ୍ୱରଙ୍କ ଉତ୍ତରରେ ।

୧୮-ଗାରୁଡ଼ତୀର୍ଥ—ଗାରଡ଼େଶ୍ୱରଙ୍କ ଉତ୍ତରରେ ଅବସ୍ଥିତ ।

୧୯-ଗୋକର୍ଣ୍ଣତୀର୍ଥ—ତ୍ରିଲୋଚନଙ୍କ ନିକଟବର୍ତ୍ତୀ ସୋମନାଥପୁର ଗ୍ରାମରେ ଅବସ୍ଥିତ । ଏହି ତୀର୍ଥର ଇତିବୃତ୍ତ—

ଏକଦା ଶିବ ସ୍ୱୟଂ ନିଜ ତ୍ରିଶୂଳରେ ଗୋଟିଏ ସରୋବର ଖୋଳିଥିଲେ । ଦେବତା, ଋଷି, ଗନ୍ଧର୍ବ ସେଠାକୁ ଆସି ନିତ୍ୟ ସ୍ନାନସନ୍ଧ୍ୟା

ତର୍ପଣାଦ କର ଶିବଙ୍କୁ ପୂଜା କରନ୍ତ । ଏକଦନେ କୌଣସି ଜଣେ ବ୍ରାହ୍ମଣ ଗୋବଧ ପାପରେ ଲିପ୍ତ ହୋଇ ଏଠାକୁ ଆସି ଏହ୍ସ ତୀର୍ଥରେ ଏକବର୍ଷ ପର୍ଯ୍ୟନ୍ତ ତପସ୍ୟା କରବା ପରେ ତାହାର ଗୋବଧ କୃତପାପ କଣ୍ଠ ରନ୍ଧ୍ର ଦେଇ ବହର୍ଗତ ହେବାରୁ ତୀର୍ଥର ନାମ ଗୋକର୍ଣ୍ଣ ତୀର୍ଥ ଓ ଶିବଙ୍କ ନାମ ଗୋକର୍ଣ୍ଣେଶ୍ୱର ରହିଲା ।

୨୦-ଚନ୍ଦ୍ରତୀର୍ଥ ବା ଚନ୍ଦତୀର୍ଥ—ଖଣ୍ଡେଶ୍ୱର ସାମିଲ 'ତେଲୁଲମାଳ' ଗ୍ରାମର ପଞ୍ଚମେଲାଠାରେ ଚନ୍ଦ୍ରମାପଦା (ବାଡ଼ି) ବୋଲି ଲୋକ ପ୍ରସିଦ୍ଧ । ୮ ନନ୍ଦ ସାମନ୍ତଙ୍କ ଘର ଆଗ ଖାଲ ।

୨୧-ଚନ୍ଦତୀର୍ଥ—ହଂସରେଖା (ହଂସିଆ) ନିକଟରେ ।

୨୨-ଜଟାତୀର୍ଥ—ଶୀତଳେଶ୍ୱର ଗ୍ରାମର ପୂର୍ବରେ ଜଟେଶ୍ୱରଙ୍କ ପୂର୍ବରେ ଯେଉଁ ଜଳଭଣ୍ଡାର (ଜମି ଦେଖାଯାଏ ।

୨୩-ଜମ୍ବୁତୀର୍ଥ—ଭଗବତପୁର ଗ୍ରାମର ପୂର୍ବରେ ଜମ୍ବୁରେଖା କୂଳରେ ଏ 'ରେଖା' ଧାନଜମିରେ ପରିଣତ ହୋଇଅଛି ।

୨୪-ଦୁର୍ବାସାତୀର୍ଥ—ତ୍ରିଲୋଚନଙ୍କ ଆଗରେ ଲୋମହର୍ଷଣେଶ୍ୱରଙ୍କ ନିକଟରେ ।

୨୫-ଦଣ୍ଡୀତୀର୍ଥ—ତ୍ରିଲୋଚନଙ୍କ ଆଗରେ ଦଣ୍ଡୀଶ୍ୱରଙ୍କ ନିକଟରେ ।

୨୬-ନାଗଯୂଣତୀର୍ଥ—ଗଡପଡପୁର ଗ୍ରାମର ପଶ୍ଚିମ ବାଲିଖି ଦେବୀଙ୍କ ପଶ୍ଚିମ ବୈତରଣୀ ତଟରେ ଅବସ୍ଥିତ ।

୨୭-ନିଷାଦତୀର୍ଥ—ବରାହଙ୍କ ଉତ୍ତର ପାର୍ଶ୍ୱରେ, ଯେଉଁଠାରେ ଶବର ଦ୍ୱିଚନଧନ୍ୱା ବରାହ ଶିକାର କରୁଥିଲା ।

୨୮-ପ୍ରଭାସତୀର୍ଥ—ଆଖଣ୍ଡଳେଶ୍ୱରଙ୍କ ପୃଷ୍ଠଭାଗସ୍ଥିତ ପୁଷ୍କରିଣୀ ।

୨୯-ପ୍ରଜାପତିତୀର୍ଥ—ଅଟଟେଶ୍ୱର (ହଟେଶ୍ୱର)ଙ୍କ ଉତ୍ତରରେ ।

୩୦-ପାବକତୀର୍ଥ—ବଉଳାହାଟ ନିକଟସ୍ଥ ଅଗ୍ନୀଶ୍ୱରଙ୍କ ଦକ୍ଷିଣରେ ।

୩୧-ପଦ୍ମତୀର୍ଥ—ଖଣ୍ଡେଶ୍ୱରଙ୍କ ଈଶାନ କୋଣରେ ମନ୍ଦାକିନୀର ଶାଖା 'ପଦ୍ମରେଖା' କୂଳସ୍ଥିତ 'ପଦ୍ମେଶ୍ୱର' ଲିଙ୍ଗଙ୍କ ନିକଟରେ ଅବସ୍ଥିତ ।

୩୨-ପୌରବତୀର୍ଥ—ସିଦ୍ଧେଶ୍ୱରଙ୍କ ପଶ୍ଚିମକୁ ଜାଜ୍ଜେଂଶ୍ୱରଙ୍କ ଦକ୍ଷିଣରେ ବୈତରଣୀ ତଟରେ ।

୩୩-ବରାହତୀର୍ଥ—ବରାହଙ୍କ ପଶ୍ଚିମରେ ଯେଉଁ ଅର୍ଦ୍ଧଲୁପ୍ତ ପୁଷ୍କରିଣୀ ଦେଖାଯାଏ ।

୩୪-ବ୍ରହ୍ମତୀର୍ଥ---(କୁଣ୍ଡତୀର୍ଥ ବା ବ୍ରହ୍ମାକୁଣ୍ଡ) ବିରଜାଙ୍କ ପଶ୍ଚିମରେ ପ୍ରସିଦ୍ଧ 'ବ୍ରହ୍ମାକୁଣ୍ଡ' ନାମକ ବିଶାଳ ସରୋବର, ଯେଉଁ ଜଳକୁ ପ୍ରଥମେ ମୁଣ୍ଡରେ ମାରି ଯାତ୍ରୀମାନେ ବିରଜା ଦର୍ଶନକୁ ଯା'ନ୍ତି ।

"କ୍ରୋଡକୋଶେ ଚ ବିରଜା ଦେବୀ ବ୍ରହ୍ମପ୍ରତିଷ୍ଠିତା ।
ତତ୍‌ସନ୍ନିଧୌ ବ୍ରହ୍ମକୁଣ୍ଡଂ ବ୍ରହ୍ମଣା ସୁପ୍ରତିଷ୍ଠିତମ୍ ॥" କଃ ସଂ ୧୦।୮

\+ \+ \+ \+

'କ୍ରୋଡ଼' ଅର୍ଥାତ୍ ବରାହ, ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠିତା ବିରଜା ଦେବୀ ବରାହଙ୍କ ଠାରୁ ଏକକୋଶ ଦୂରରେ ଅଛନ୍ତି । ଏହାଙ୍କ ନିକଟରେ ବ୍ରହ୍ମାଙ୍କ ପ୍ରତିଷ୍ଠିତ 'ବ୍ରହ୍ମାକୁଣ୍ଡ' ବିଦ୍ୟମାନ ।

୩୫-ବରୁଣତୀର୍ଥ—ବରୁଣେଶ୍ୱର (ସୀମାଲିଙ୍ଗ)ଙ୍କ ପଶ୍ଚିମରେ ଯେଉଁ ଜଳାଶୟ, ସେଠାରେ ବରୁଣଦେବଙ୍କ ତପଃ ସ୍ଥାନ ହୋଇ ଥିବାରୁ ତାଙ୍କର ନାମାନୁ-ସାରେ ତୀର୍ଥର ନାମକରଣ ହୋଇଅଛି ।

୩୬—ବାରୁଣୀତୀର୍ଥ—ବନ୍ଧାଣ ଗ୍ରାମର ପଶ୍ଚିମ ତୀରରେ ।

୩୭—ବାସୁକିତୀର୍ଥ—ମହାବିନାୟକରୁ ପ୍ରବାହିତ ବାସୁକିରେଖାରେ ଏହି ତୀର୍ଥ ବିଦ୍ୟମାନ । ଏହା ସମ୍ପୂର୍ଣ୍ଣ ଲୁପ୍ତ ଧାନ୍ୟକ୍ଷେତ୍ର ଦ୍ୱାରା ଓ ଅଠନେଳା ପୋଲ ଦ୍ୱାରା ।

୩୮—ବାଲୁତୀର୍ଥ—ଚମ୍ପାମଣ୍ଡଳ (ଚମ୍ପାବାଗ)ର ଦକ୍ଷିଣରେ ଥିବା ହଂସ-ରେଖାରେ ଏହି ତୀର୍ଥ ।

୩୯-ବିଶ୍ୱରୂପତୀର୍ଥ—ବରାହଙ୍କ ଦକ୍ଷିଣରେ ବିଶ୍ୱେଶ୍ୱରଙ୍କ ସମ୍ମୁଖ ବୈତରଣୀ ତୀରରେ ।

୪୦-ବନାପୁକତୀର୍ଥ -ସିଦ୍ଧଗଣେଶ ପଶ୍ଚିମ ଅନ୍ତବେଦୀର ସମ୍ମୁଖ ବୈତରଣୀ ତଟରେ ।

୪୧-ବେଣୀତୀର୍ଥ—ସିଦ୍ଧେଶ୍ୱରଙ୍କ ବାୟୁ କୋଣରେ ।

୪୨-ବୈତରଣୀତୀର୍ଥ—ବରାହଙ୍କ ଅଗ୍ର ଭାଗରେ ।

୪୩-ବମୁକ୍ତତୀର୍ଥ—ଜଗନ୍ନାଥଙ୍କ ବାୟୁ କୋଣରେ ମୁକ୍ତେଶ୍ୱରଙ୍କ ସମ୍ମୁଖରେ ଯେଉଁଠାରେ ବଷ୍ଟୁ ମାତୃଶାପରୁ ମୁକ୍ତ ହୋଇଥିଲେ ।

୪୪—ମଦ୍‌ଗୁତୀର୍ଥ—ଆଳ୍କୁଳ ଗ୍ରାମରେ ।

୪୫-ମଣିକର୍ଣ୍ଣିକାତୀର୍ଥ—ବଚନପୁର ଗ୍ରାମର ସୁନାମ ପ୍ରସିଦ୍ଧ ମଣିକର୍ଣ୍ଣିକା ପୁଷ୍କରଣୀ ।

୪୬-ମହର୍ଷିତୀର୍ଥ—ସିଦ୍ଧେଶ୍ୱରଙ୍କ ପୂର୍ବ ବେଗବତୀ (ବେଙ୍ଗା) ନଦୀ ତୀରରେ ଅବସ୍ଥିତ ।

୪୭-ମାତୃକାତୀର୍ଥ— ସପ୍ତମାତୃକାଙ୍କ ସମ୍ମୁଖ ବୈତରଣୀ ତଟରେ ।

୪୮-ମୃତ୍ୟୁଞ୍ଜୟତୀର୍ଥ—ବରଜାଙ୍କ ଈଶାନ କୋଣରେ ଗୟାନାଭି କୂପ ବା ନାଭିଗୟା ବଦ୍ୟମାନ । ନାଭିଗୟାର ଈଶାନ କୋଣରେ 'ଯୁପେଶ୍ୱର ଶିବ' । ଏହାଙ୍କ ପଶ୍ଚିମରେ ଏହି ମୃତ୍ୟୁଞ୍ଜୟ ତୀର୍ଥ ବଦ୍ୟମାନ ।

## ଗୟାନାଭି ଶ୍ରାଦ୍ଧ—

ମୃତ୍ୟୁଞ୍ଜୟ ତୀର୍ଥର ତାତ୍ପର୍ଯ୍ୟ—

"ତତ୍ର ମୃତ୍ୟୁଞ୍ଜୟଂ ନାମ ତୀର୍ଥଂ ଦେବଗଣୈଃସ୍ତୁତମ୍ ।
ମୃକଣ୍ଡତନୟୋ ଯତ୍ର ସ୍ନାତ୍ୱା ମୃତ୍ୟୁଞ୍ଜୟୋଽଭବତ୍ ॥" କ: ସଂ: ୧୨୭

+ + + +

ପୂର୍ବ କାଳରେ ଦେବତାମାନଙ୍କ ସ୍ତୁତିସିଦ୍ଧ ଏହି ମୃତ୍ୟୁଞ୍ଜୟ ତୀର୍ଥରେ ମୃକଣ୍ଡ ଋଷିଙ୍କ ପୁତ୍ର ମାର୍କଣ୍ଡେୟ ମୃତ୍ୟୁକୁ ଜୟକରି ଚିରଞ୍ଜୀବୀ ହୋଇ-ଅଛନ୍ତି ।

ଏଠାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରିବା ବିଷୟରେ କପିଳ ସଂହିତାରେ କୁହାଯାଇଛି—

"ଯୂପ କୂପ ଦ୍ୱୟୋର୍ମଧ୍ୟେ ତୀର୍ଥେ ମୃତ୍ୟୁଞ୍ଜୟେ ଦ୍ୱିଜାଃ ।
ପ୍ରାପ୍ତ୍ୟେ ବ୍ରହ୍ମଲୋକସ୍ୟ ପିଣ୍ଡସ୍ଥାନ ମୁଦାହୃତମ୍ ॥" କ. ସଂ. ୧୨୯

ଅର୍ଥାତ୍ ଯୂପେଶ୍ୱର ଓ ନାଭିକୂପର ମଧ୍ୟ ଭାଗରେ ମୃତ୍ୟୁଞ୍ଜୟ ତୀର୍ଥରେ ପିତୃଗଣଙ୍କର ବ୍ରହ୍ମ ଲୋକପ୍ରାପ୍ତି ପାଇଁ ପିଣ୍ଡଦାନ କରିବା ବିଧେୟ ।

ଅନ୍ୟତ୍ର ମଧ୍ୟ—"ଗଙ୍ଗା ଗୟା କୁରୁକ୍ଷେତ୍ରଂ ସରସ୍ୱତ୍ୟପି ପୁଷ୍କରମ୍ ।
ପ୍ରୟାଗାଦୀନି ତୀର୍ଥାନି ସନ୍ତୁ ନାମ ସହସ୍ରଶଃ ।
ଅତ୍ର ମୃତ୍ୟୁଞ୍ଜୟେ ତୀର୍ଥେ ସର୍ନ୍ନିଧୌ ତୁ ଗଦାଭୃତଃ ॥"
(ବ୍ରଃ ପୁଃ ୭. ୯. ୧୦)

+ + + +

ଅର୍ଥାତ୍ ମୃତ୍ୟୁଞ୍ଜୟ ତୀର୍ଥରେ ଗଦାଧରଙ୍କ ନିକଟରେ ଗଙ୍ଗା, ଗୟା, କୁରୁକ୍ଷେତ୍ର, ସରସ୍ୱତୀ ତୀର୍ଥ, ପୁଷ୍କର ତୀର୍ଥ, ପ୍ରୟାଗ ପ୍ରଭୃତି ତୀର୍ଥ ସକଳ ବିଦ୍ୟମାନ ।

"ତତ୍ର ଶ୍ରୀବିରଜାଃ କ୍ଷେତ୍ରେ ଦେବ୍ୟା ଈଶାନ କୋଣତଃ ।
ଗୟାନାଭି ମହାପୁଣ୍ୟଂ ପିତୃଣାଂ ମୋକ୍ଷଦାୟକମ୍ ॥" କଃ ସଂ:

+ + + +

ଏ ବିଷୟରେ ବ୍ରହ୍ମାଣ୍ଡ ପୁରାଣରେ ବର୍ଣ୍ଣିତ—
ଈଶାନତୋ ଦକ୍ଷିଣତୋ ଭବାନି
ମୃତ୍ୟୁଞ୍ଜୟଂ ତୀର୍ଥବରଂ ସୁପୁଣ୍ୟମ୍ ।
ଗଦାଧରାଖ୍ୟୋ ଭଗବାନନନ୍ତଃ
ସ୍ୱୟଂ ବିଧତ୍ତେ ଖଳୁ ଯତ୍ର ବାସମ୍ ॥" ୭ଅ. ୩ଶ୍ଳୋ.

ଏହି ବିରଜାଃ କ୍ଷେତ୍ରରେ ଦେବୀ ବିରଜାଙ୍କ ଈଶାନ କୋଣରେ ଈଶାନେଶ୍ୱରଂକ ଦକ୍ଷିଣରେ ମୃତ୍ୟୁଞ୍ଜୟ ତୀର୍ଥରେ ପିତୃଲୋକଙ୍କ ମୁକ୍ତିଦାୟକ ପବିତ୍ର ଗୟାନାଭି କୂପ ବିଦ୍ୟମାନ । ଯେଉଁଠାରେ ଭଗବାନ ନାରାୟଣ ସାକ୍ଷାତ ଗଦାଧର ରୂପ ଧାରଣ କରି ପିଣ୍ଡଦାନର ସାକ୍ଷୀ ରୂପେ ରହିଅଛନ୍ତି । ସେଠାରେ ପିଣ୍ଡଦାନ କଲେ ପିତୃପୁରୁଷ ସନ୍ତୁଷ୍ଟ ହୁଅନ୍ତି ।

"ଯସ୍ମିନ୍ନରାଃ ସଂଯମିନୋ ବଧାୟ
ସ୍ନାନଂ ପିତୃଭକ୍ତିଯୁତାଃ ବଶେଷାତ୍ ।
ପିଣ୍ଡ ପ୍ରଦାନେନ ଦ୍ଵବଂ ନୟନ୍ତ
ତ୍ରିସପ୍ତକୁତ୍ୱଃ କୁଳଜାନ୍ ସ୍ୱକାୟାନ୍ ॥" କଃ ସଂ ୭-୪

ଅର୍ଥାତ୍ ଯେଉଁଠାରେ ପିତୃଭକ୍ତ ପରାୟଣ ପୁତ୍ରମାନେ ସଂଯତେନ୍ଦ୍ରିୟ ହୋଇ ସ୍ନାନକରି ପିଣ୍ଡଦାନ କରିବାଦ୍ୱାରା ନିଜ ବଂଶର ତ୍ରିସପ୍ତ କୁଳ ଅର୍ଥାତ୍ ଏକୋଇଶ ପୁରୁଷଙ୍କୁ ସ୍ୱର୍ଗଗାମୀ କରାନ୍ତ ।

ପିଣ୍ଡଦାନ ବିଷୟରେ ବାୟୁ ପୁରାଣରେ ବର୍ଣ୍ଣିତ ଅଛି—
ଯା୨୨ସ୍ତେ ବୈତରଣୀ ନାମ ନଦୀ ତ୍ରୈଲୋକ୍ୟ ବିଶ୍ରୁତା ।
ସା୨ବତୀର୍ଣ୍ଣା ଗୟା କ୍ଷେତ୍ରେ ପିତୃଣାଂ ତାରଣାୟ ବୈ ।
ସ୍ନାତ୍ୱା ଗୋଦୋ ବୈତରଣ୍ୟାଂ ତ୍ରିସପ୍ତକୁଳ ମୁଦ୍ଧରେତ୍ ॥"

\+ \+ \+ \+

( ଗୋଦଃ—ଗୋଦାନକାରୀ )

ଅର୍ଥାତ୍ ତ୍ରିଭୁବନ ବିଖ୍ୟାତ ଏହି ପୁତସଲିଳା ବୈତରଣୀ ନଦୀ ନାଭିଗୟା କ୍ଷେତ୍ରରେ ପ୍ରବାହିତ ହୋଇ ପିତୃ ଲୋକମାନଙ୍କୁ ଉଦ୍ଧାର କରୁଅଛି । ଯେଉଁ ବୈତରଣୀରେ ସ୍ନାନ କରି ଗୋଦାନ କରୁଥିବା ବ୍ୟକ୍ତି ନିଜର ଏକ ବିଂଶତି (୨୧) ପୁରୁଷଙ୍କୁ ଉଦ୍ଧାର କରେ । ଆହୁରି ମଧ୍ୟ—

ତନ୍ତ୍ରଚୂଡ଼ାମଣିରେ—'ଉତ୍କଳେ ନାଭିଦେଶେ ଚ ବିରଜା କ୍ଷେତ୍ର ମୁଚ୍ୟତେ ॥'

ଆହୁରି ମଧ୍ୟ- ହିନ୍ଦୁମାନଙ୍କର ପ୍ରଖ୍ୟାତ ତୀର୍ଥ ନାଭିଗୟାର ସୃଷ୍ଟି ସମ୍ବନ୍ଧରେ ବଙ୍ଗୀୟ ଲେଖକ ବଂଶୀଦାସ ନିଜ 'ମନସାମଙ୍ଗଳ'ରେ ଉଲ୍ଲେଖ କରିଅଛନ୍ତି—
"ନାଭି କାଟିଆ ବିଷ୍ଣୁ ପାଡିଲ ସେଖାନେ ।
'ନାଭିଗୟା' ନାମ ତାହା ବିଖ୍ୟାତ ଭୁବନେ ॥"

ଅର୍ଥାତ୍ ଦକ୍ଷଯଜ୍ଞରେ ଦେବର୍ଷି, ବ୍ରହ୍ମର୍ଷି ତଥା ସକଳ ଦେବ-ସଭାରେ ଦେବାଧିଦେବ ନିଜ ପତି ଶିବଙ୍କର ନିନ୍ଦା ଦକ୍ଷପ୍ରଜାପତିଙ୍କ ମୁଖରୁ ଶୁଣି ବ୍ୟଥିତା ସତୀ ଦେହତ୍ୟାଗ କରିବାରୁ ତାହାଙ୍କର ଅର୍ଦ୍ଧଦଗ୍ଧ ଶରୀରକୁ ଶିବ ସ୍କନ୍ଧରେ ଧାରଣ କରି ଆକୁମାରିକା ହିମାଳୟ ଭ୍ରମଣ କଲେ ।

ସେହି ଦଗ୍‌ଧ ଶରୀର କ୍ରମଶଃ ବିଷ୍ଣୁଙ୍କ ଚକ୍ରଦ୍ୱାରା ଖଣ୍ଡ ଖଣ୍ଡ ହେବାକୁ ଲାଗିଲା । ସତୀଙ୍କର 'ନାଭି' ଏହି ବୈତରଣୀ ତୀର୍ଥରେ ପଡ଼ିବାରୁ ତଥା ଗୟାସୁରର ନାଭି ପଡ଼ି ଏକତ୍ରିତ ହେବାରୁ ଏହା ପ୍ରସିଦ୍ଧ 'ନାଭିଗୟା' ନାମରେ ପରିଚିତ ହେଲା ଓ ଏହା ନାଭି କ୍ଷେତ୍ରରେ ପରିଣତ ହେଲା । ଏଠାରେ ପିଣ୍ଡଦାନ କଲେ ପିତୃଗଣ ମୁକ୍ତିଲାଭ କରନ୍ତି ।

"ନାଭିକୂପ ସମୀପେଷୁ ଦେବୀ ଯା ବିରଜା ସ୍ଥିତା ।
ତତ୍ର ପିଣ୍ଡାଦିକଂ କୃତ୍ୱା ତ୍ରିସପ୍ତକୁଳ ମୁଦ୍ଧରେତ୍ ॥" ବାୟୁପୁରାଣ

ଏହି ନାଭିକୂପ ଅର୍ଥାତ୍ ନାଭିଗୟା ନିକଟରେ କ୍ଷେତ୍ରାଧୀଶ୍ୱରୀ ବିରଜାଦେବୀ ବିଦ୍ୟମାନ । ଏହି ଗୟାନାଭିରେ ପିଣ୍ଡ ପ୍ରଦାନକଲେ ଏକୋଇଶ ପୁରୁଷ ପର୍ଯ୍ୟନ୍ତ ପିତୃଲୋକ ଉଦ୍ଧାର ଲାଭ କରନ୍ତି ।
ଆହୁରି ମଧ୍ୟ ବ୍ରହ୍ମପୁରାଣ ବର୍ଣ୍ଣିତ—

"ବିରଜେ ଯୋ ମମ କ୍ଷେତ୍ରେ ପିଣ୍ଡଦାନଂ କରୋତି ବୈ ।
ସ କରୋତ୍ୟକ୍ଷୟାଂ ତୃପ୍ତିଂ ପିତୃଣାଂ ନାତ୍ର ସଂଶୟଃ ॥"

ଅର୍ଥାତ୍ ଯେଉଁ ଲୋକ 'ବିରଜା' ନାମକ କ୍ଷେତ୍ରରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡ ପ୍ରଦାନ କରେ ସେ ପିତୃପୁରୁଷମାନଙ୍କର ଅକ୍ଷୟ ତୃପ୍ତି ବିଧାନ କରେ । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆହୁରି ମଧ୍ୟ—

"ମମ କ୍ଷେତ୍ରେ ମୁନିଶ୍ରେଷ୍ଠ ବିରଜେ ଯେ କଳେବରମ୍ ।
ପରିତ୍ୟଜନ୍ତି ପୁରୁଷାସ୍ତେ ମୋକ୍ଷଂ ପ୍ରାପ୍ନୁବନ୍ତି ବୈ ॥"

ଅର୍ଥାତ୍ ହେ ମୁନିଶ୍ରେଷ୍ଠ ! ଏହି ବିରଜାଃ କ୍ଷେତ୍ରରେ ଯେଉଁମାନେ ଶରୀର ତ୍ୟାଗକରନ୍ତି ସେମାନେ ମୋକ୍ଷଲାଭ କରନ୍ତି ଅର୍ଥାତ୍ ସେମାନଙ୍କର ପୁନର୍ଜନ୍ମ ହୁଏନାହିଁ ।

ପିତାମାତା ପ୍ରଭୃତି ପିତୃପୁରୁଷଙ୍କ କ୍ଷୟାହତିଥିଭିନ୍ନ ଆଉ କେଉଁ କେଉଁ ତିଥିରେ ଗୟାନାଭିରେ ବିଶେଷତଃ ଶ୍ରାଦ୍ଧ କରିବା ବିଧେୟ, ସେ ବିଷୟରେ ବ୍ରହ୍ମ ପୁରାଣରେ କଥିତ ଅଛି—

"ବୈଶାଖ ଶୁକ୍ଳସ୍ୟ ଚ ଯା ତୃତୀୟା
ତସ୍ୟାଂ ତଥୌ ପିଣ୍ଡକୃତୋ ମନୁଷ୍ୟାଃ ।

କୁଳାନ ସପ୍ତାପି ଚତୁର୍ଦ୍ଦଶାପି
ମତ୍ତା ଦଦଂ ବ୍ରହ୍ମପଦଂ ପ୍ରଯାନ୍ତି ॥" ୭ ଅ. ୫

ଅର୍ଥାତ୍ ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟା (ଅକ୍ଷୟ ତୃତୀୟା) ତିଥିରେ ଲୋକମାନେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡ ପ୍ରଦାନ କଲେ ନିଜ ବଂଶର ସାତ, ଚଉଦ ପୁରୁଷ ଏକୋଇଶ ପୁରୁଷ ସ୍ୱର୍ଗପଦ ଲାଭ କରନ୍ତି। ଶ୍ରାଦ୍ଧକର୍ତ୍ତା ମଧ୍ୟ ବ୍ରହ୍ମପଦ ଲାଭ କରେ । ଆହୁରି ମଧ୍ୟ—

"ଶ୍ରବଣା ଦ୍ୱାଦଶୀଂ ପ୍ରାପ୍ୟ ନୃତ୍ୟନ୍ତି ପିତୃଦେବତାଃ ।
ଅସ୍ମାକ୍ଂ ବଂଶତୋ ନୂନଂ ପିଣ୍ଡାଂସ୍ତୀର୍ଥେ ପ୍ରଦାସ୍ୟତି ॥" ୭ଅ: ୮

ଶ୍ରବଣାନକ୍ଷତ୍ର ଯୁକ୍ତ ଦ୍ୱାଦଶୀ (ଶ୍ରବଣା ଦ୍ୱାଦଶୀ) ଦିନ ପିତୃପୁରୁଷ ମାନେ ଆନନ୍ଦରେ ଏକତ୍ରିତ ହୋଇ ନୃତ୍ୟକରି ଆପଣା ଆପଣା ମଧ୍ୟରେ କୁହାକୁହି ହୁଅନ୍ତି ଯେ ନିଶ୍ଚୟ ଆମ୍ଭ ବଂଶରୁ କେହି ଆସି ଆମ୍ଭମାନଙ୍କୁ ପିଣ୍ଡ-ପ୍ରଦାନ କରିବ ।

ପିଣ୍ଡ ପ୍ରଦାନ ସମ୍ବନ୍ଧରେ ନିମ୍ନଲିଖିତ ବାକ୍ୟୋଚ୍ଚାରଣ ପୂର୍ବକ ପିଣ୍ଡ ପ୍ରଦାନ କରାଯାଏ—

ଗୋତ୍ର, ନାମ ଉଚ୍ଚାରଣ ପରେ "ଅସ୍ୟ ବ୍ରହ୍ମଲୋକ ପ୍ରାପ୍ତ୍ୟର୍ଥଂ ମୃତ୍ୟୁଞ୍ଜୟ ତୀର୍ଥେ ଗୟାନାଭୌ ଯୂପକୂପୟୋର୍ମଧ୍ୟେ ଏଷ ପିଣ୍ଡସ୍ତୁଭ୍ୟଂ ସ୍ୱଧା ନମଃ ."

ପିଣ୍ଡଦାତା ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରିସାରି ପିଣ୍ଡଦାନର ସାକ୍ଷୀରୂପେ ଗଦାଧରଙ୍କ ବାମ ଭାଗରେ ପୂର୍ବ ମୁଖ ହୋଇ ବଦ୍ଧାଞ୍ଜଳି ପୂର୍ବରେ ପାଠ କରନ୍ତି :—

"ସାକ୍ଷିଣଃ ସନ୍ତୁ ମେ ଦେବା ବ୍ରହ୍ମେଶାନାଦୟସ୍ତଥା ।
ମୟା ଗୟାଂ ସମାସାଦ୍ୟ ପିତୃଣାଂ ନିଷ୍କୃତିଃ କୃତା ॥
ଆଗତୋଽସ୍ମି ଗୟାଂ ଦେବ ପିତୃକାର୍ଯ୍ୟେ ଗଦାଧର ।
ତ୍ୱମେବ ସାକ୍ଷୀ ଭଗବନ୍ ଅନୃଣୋଽହଂ ଋଣ ସୟାତ୍ ॥"
(ଗୟାନାଭି ଶ୍ରାଦ୍ଧ ପଦ୍ଧତି)

ଅର୍ଥାତ୍ ହେ ବ୍ରହ୍ମ ମହେଶ୍ୱରାଦ୍ଦି ଦେବଗଣ ! ଆପଣମାନେ ସାକ୍ଷୀ ରହନ୍ତୁ, ମୁଁ ଗୟାକୁ ଆସି ପିତୃପୁରୁଷଙ୍କୁ ପିଣ୍ଡଦାନ କରି ପିତୃ ଋଣରୁ ଉଦ୍ଧାର ପାଇଲି । ଆହୁରି ମଧ୍ୟ ହେ ତୀର୍ଥ ସ୍ୱାମିନ୍ ଗଦାଧର ! ପିତୃକାର୍ଯ୍ୟ ଉଦ୍ଦେଶ୍ୟରେ ମୁଁ ଏହି ଗୟାକୁ ଆସି ଶ୍ରାଦ୍ଧକାର୍ଯ୍ୟ ସମ୍ପାଦନ କରି ଋଣ–ତ୍ରୟରୁ ଅର୍ଥାତ୍ ଦେବଋଣ, ଅତିଥିଋଣ ଓ ପିତୃଋଣରୁ ମୁକ୍ତ ଲାଭ ପୂର୍ବକ ଅନୃଣ ହେଲି, ହେ ଭଗବାନ ! ଆପଣ ସାକ୍ଷୀ ରହିବେ ।

ଋଣ ତ୍ରୟରୁ କପରି ମୁକ୍ତି ଲାଭ କରାଯାଏ :–

ପ୍ରତ୍ୟେକ ଗୃହସ୍ଥ ଯାଗ, ଯଜ୍ଞ, ଦେବାର୍ଚ୍ଚନାଦି କରି ଦେବଋଣରୁ, 'ବୈଶ୍ୱଦେବ' ସମ୍ପାଦନ ପୂର୍ବକ ଅତିଥି ଅଭ୍ୟାଗତଙ୍କୁ ଯଥାଶକ୍ତି ପାନ ଭୋଜନାଦି ଦେଇ ଅତିଥିଋଣରୁ, ତଥା ଶ୍ରାଦ୍ଧତର୍ପଣାଦି କରି ବ୍ରାହ୍ମଣ ଭୋଜ–ନାଦି ଦ୍ୱାରା ପିତୃଋଣରୁ ମୁକ୍ତିଲାଭ କରେ ।

ଏହି କ୍ଷେତ୍ରାଧୀଶ୍ୱରୀ ବିରଜା ଦେବୀଙ୍କୁ ଆଜ୍ୟପା ପିତୃଗଣଙ୍କର 'ମାନସୀକନ୍ୟା' ରୂପରେ କଳ୍ପନା କରାଯାଇ ଥିବାରୁ ଶ୍ରାଦ୍ଧ ଶେଷରେ ପିଣ୍ଡ-ଦାତା ଦେବୀଙ୍କୁ ଦର୍ଶନ ପୂର୍ବକ ବଦ୍ଧାଞ୍ଜଳି ହୋଇ ପାଠ କରନ୍ତୁ––

"ଦେବ ଦେବ ମହାଦେବ ତ୍ୱଂ ଦେବୀ ପିତୃରୂପିଣୀ ।
ତ୍ୱଂ ଦେବୀ ସର୍ବଭୂତାନାଂ ଗଂସ୍ଥାପୂଂ ମୁକ୍ତିଦାୟିନୀ ॥"

(ଶ୍ରାଦ୍ଧ ପଦ୍ଧତି)

ଆହୁରି ମଧ୍ୟ ଉକ୍ତ ମୃତ୍ୟୁଞ୍ଜୟ ତୀର୍ଥ ଜଳରେ ଦେବୀ ବିରଜାଙ୍କର ନିତ୍ୟ ସ୍ନାନବିଧି ସମ୍ପାଦନ କରାଯାଏ ।

ଏହି ମୃତ୍ୟୁଞ୍ଜୟ ତୀର୍ଥ ସମ୍ବନ୍ଧରେ ଗୋଟିଏ ପୌରାଣିକ ବାର୍ତ୍ତା ଶୁଣାଯାଏ ।

ଥରେ ଅସ୍ଥିମାଳାଧାରୀ ଶିବଙ୍କୁ ପାର୍ବତୀ 'ଅସ୍ଥିମାଳା'ର କାରଣ ପଚାରିବାରୁ ଶିବ କହିଲେ– ହେ ଦେବ ! ଏହି ମାଳାର ଅସ୍ଥି ସଂଖ୍ୟା ଅନୁସାରେ ତୁମ୍ଭର ବିନାଶ ହେବ । ତହୁଁ ପାର୍ବତୀ ମୃତ୍ୟୁକୁ ଜୟ କରିବାର ଉପାୟ ପଚାରିବା ପରେ ଶିବ ଗୟାନାଭିରେ ତପସ୍ୟା କରିବାକୁ ଉପଦେଶ ଦେଲେ । ତଦ୍ରୂପେ ପାର୍ବତୀ ଏଠାରେ ତପସ୍ୟା କରି ମୃତ୍ୟୁକୁ ଜୟ କରିବାରୁ ସେହିଦିନ ଠାରୁ ଏହା 'ମୃତ୍ୟୁଞ୍ଜୟତୀର୍ଥ' ରୂପରେ ପରିଗଣିତ ହେଉଅଛି ।

ଆହୁରି ମଧ୍ୟ ଷଷ୍ଠୀ ବା ସପ୍ତମୀ ଯଦି ରବିବାର ପଡ଼େ ତେବେ ଏହି ଦିନ ଗୟାନାଭିରେ ଶ୍ରାଦ୍ଧକଲେ ଶ୍ରାଦ୍ଧ ସଫଳ ହୁଏ । ଯେଉଁମାନେ ବିଗୟା ଅର୍ଥାତ୍ ଗୟାସୁରର ଶିରରେ (ଶିରଗୟା ପ୍ରୟାଗରେ) ପାଦଗୟା ଗୋଦାବରୀରେ, ନାଭିଗୟା ବିରଜାଃ କ୍ଷେତ୍ରରେ ପିଣ୍ଡଦାନ କରନ୍ତି ସେମାନଙ୍କର ପିତୃପୁରୁଷ ମୁକ୍ତି ଲାଭ କରନ୍ତି ।

## ବିଗୟାରେ ଶ୍ରାଦ୍ଧ କରିବାର ତାତ୍ପର୍ଯ୍ୟ—(କପିଳ ସଂହିତା)

"ପୁରାକଳ୍ପେ ଧର୍ମପରଃ ଗୟାନାମ ମହାସୁରଃ ।
ଅନେକ ଯଜ୍ଞ ମଯଜତ୍ ତପଃ ସ୍ୱାଧ୍ୟାୟ ତତ୍ପରଃ ॥
ବିନୀତଃ ସର୍ବ ଭୂତେଷୁ ଦୈତ୍ୟୈଶ୍ଚ ବିବର୍ଜିତଃ ।
ଦାନଧର୍ମପରୋନିତ୍ୟଂ କାନ୍ତ୍ୟା ଚନ୍ଦ୍ର ଇବାପରଃ ॥
ତେଜସା ସୂର୍ଯ୍ୟସଦୃଶଃ କ୍ଷମୟା ପୃଥିବୀସମଃ ।
ଜ୍ଞାନ କର୍ମଣି ଯୋଗୀନ୍ଦ୍ରଃ ସଂଗ୍ରାମେ ଚନ୍ଦ୍ରିସନ୍ନିଭଃ ॥"

ଅର୍ଥାତ୍ ପୂର୍ବକାଳରେ ଧର୍ମ ପରାୟଣ, ଯାଗ ଯଜ୍ଞାଦି କର୍ମନିପୁଣ, ବେଦ ବେଦାଙ୍ଗ ପାରଗ, ତପଶ୍ଚରଣଶୀଳ 'ଗୟା' ନାମକ ମହାପରାକ୍ରମଶାଳୀ ଅସୁରଟିଏ ଥିଲା । ଯଦିଓ ସେ ଅସୁର କୁଳରେ ଜନ୍ମଗ୍ରହଣ କରିଥିଲା ତଥାପି ପ୍ରାଣୀମାନଙ୍କ ପ୍ରତି ହିଂସା, ଦ୍ୱେଷଭାବ ପୋଷଣ ନକରି ଅତ୍ୟନ୍ତ ବିନୀତ ହୋଇ ପ୍ରତିଦିନ ଦାନଧର୍ମାଦି ସତ୍କର୍ମ କରି ସମସ୍ତଙ୍କର ଆଦର୍ଶ ହୋଇଥିଲା । ସେ ସ୍ୱକୀୟ କ୍ଷାତ୍ର ତେଜରେ ସୂର୍ଯ୍ୟଙ୍କ ସଦୃଶ, ରୂପରେ ଚନ୍ଦ୍ରଙ୍କ ପରି ଆହ୍ଲାଦଦାୟକ, କ୍ଷମା ବା ସହିବା ଗୁଣରେ ପୃଥିବୀ ସଦୃଶ, ତତ୍ତ୍ୱଜ୍ଞାନରେ ଶ୍ରେଷ୍ଠଯୋଗୀଙ୍କ ପରି ତଥା ଯୁଦ୍ଧରେ ଚକ୍ରଧାରୀ ବିଷ୍ଣୁଙ୍କ ପରି ବଳବୀର୍ଯ୍ୟ ସମ୍ପନ୍ନ ହୋଇଥିଲା । ଏହି ସମସ୍ତ ଗୁଣରେ ପରିପୂର୍ଣ୍ଣ ହୋଇଥିବାର ଦେଖି ଦେବତାମାନେ ତାହାକୁ ସ୍ତବରେ ସନ୍ତୁଷ୍ଟ କରି କହିଲେ "ମଖେ ପଶୁର୍ଭବେ ଭବ । ତ୍ୱାଦୃକ୍ ପୁଣ୍ୟତମୋ ଲୋକେ ନ ଭୂତୋ ନ ଭବିଷ୍ୟତି ।"

+ + + +

ହେ ଦୈତ୍ୟରାଜ ! ତୁମ୍ଭପରି ପୁଣ୍ୟବାନ୍ ଲୋକ ଏ ସଂସାରରେ ଜନ୍ମହୋଇ ନାହାନ୍ତି କି ଜନ୍ମ ହେବେନାହିଁ । ଏଣୁ ତୁମ୍ଭେ ଆମ୍ଭର ଯଜ୍ଞରେ ପବିତ୍ର ପଶୁର କାର୍ଯ୍ୟ କର । ତାହା ଶୁଣି ଗୟାସୁର କହିଲା—

"ଯଦ୍ଵ ମେ ବଚନଂ ଦେବାଃ କର୍ତ୍ତବ୍ୟଂ ଚ ସୁନଶ୍ଚିତମ୍ ।
ତର୍ହି ମଦ୍‌ବଚନଂ ଯୂୟ୍ଂ ମଙ୍ଗୀକୁରୁତ ସାମ୍ପ୍ରତମ୍ ॥"

ଅର୍ଥାତ୍ ହେ ଦେବଗଣ ! ଯଦ୍ଵ ମୋର କଥା ଅନୁସାରେ ଆପଣମାନେ ନଶ୍ଚିତ ଭାବରେ କାର୍ଯ୍ୟ କରିବେ ତେବେ ମୁଁ ଆପଣମାନଙ୍କର କାର୍ଯ୍ୟ କରିବ । ତେବେ ମୋ କଥା ଶୁଣ—

"ପାଦ ନାଭ ଶିରଶ୍ଚୈବ ପତିଷ୍ୟନ୍ତି ମହୀତଲେ ।
ତାନ୍ୟତ୍ତମାନ ତୀର୍ଥାନ ପିତୃଣାଂ ତୃପ୍ତିଦାନ ଚ ॥
ଦଦାତି ପିଣ୍ଡଂ ଯତ୍ରୈବ ଜିଷୁ ସ୍ଥାନେଷୁ ଯନ୍ନତଃ ।
ପିତରସ୍ତସ୍ୟ ତୃପ୍ତାଃ ସ୍ୟୁରେକବଂଶନ୍ତପୂରୁଷାଃ ॥"

ହେ ଦେବଗଣ ! ଏହି ପୃଥିବୀରେ ମୋର ପାଦ, ନାଭ ଓ ଶିର ଯେଉଁ ଯେଉଁ ସ୍ଥାନରେ ପଡ଼ିବ ସେହି ସେହି ସ୍ଥାନ ପିତୃଗଣଙ୍କ ତୃପ୍ତିଦାୟକ ଉତ୍ତମ ପୁଣ୍ୟ ତୀର୍ଥରେ ପରିଣତ ହେଉ । ଏହି ତନୋଟି ସ୍ଥାନରେ ଯେଉଁମାନେ ଯନ୍ନର ସହିତ ପିଣ୍ଡ ଦାନ କରିବେ ସେମାନଙ୍କର ଏକବଂଶୀତ ପୁରୁଷ ପିତୃଲୋକ ପରମତୃପ୍ତି ଲାଭ କରନ୍ତୁ ।

"ତଥେତ୍ୟୁକ୍ତ୍ଵା ତୁ ତଂ ଦେବାସ୍ତନ୍ତୁଃ 'ପଶୁବର୍ତ୍ତ' ମଖେ ।"

\+ \+ \+ \+

ଦେବତାମାନେ ଗୟାସୁରର କଥାରେ ପ୍ରତିଶ୍ରୁତ ହୋଇ ତାହାଙ୍କୁ ଯଜ୍ଞରେ ପଶୁରୂପରେ ହତ୍ୟାକଲେ ।

"ପତନାତ୍ ତସ୍ୟ ପାଦସ୍ୟ ମହେନ୍ଦ୍ର ପର୍ବତୋତ୍ତମେ ।
ପିତୃତୀର୍ଥ ମଭୂତ୍ ତତ୍ର ବସନ୍ତି ମୁନ ସତ୍ତମାଃ ॥"

ଦକ୍ଷିଣ ଦିଗରେ ଗୋଦାବରୀ ନକଟ ମହେନ୍ଦ୍ର ପର୍ବତରେ ଗୟାସୁରର ପାଦ ପଡ଼ିବାରୁ ତାହା ପିତୃତୀର୍ଥ (ପାଦଗୟା) ନାମରେ ପରିଚିତ ହେଲ । ଯେଉଁଠାରେ ଅଗସ୍ତି, ସାତକର୍ଣ୍ଣି ଓ ଅର୍ତ୍ତି ପ୍ରଭୃତି ମହାତପା ଋଷି ମୁନମାନଙ୍କର ଆଶ୍ରମ ଥିଲ ବୋଲି ପୁରାଣମାନଙ୍କରୁ ଜଣାଯାଏ ।

"ତତ୍ର ନାଭିଃ କୂପରୂପା ଦେବ୍ୟା ଈଶାନକୋଣତଃ ।
ଗୟାସୁରସ୍ୟ ପତିତା ତତ୍ର ତଂ ବୈ ତ୍ରୈଲୋକ୍ୟ ପୂଜିତମ୍ ॥
ତତ୍ର ପିଣ୍ଡଂ ପ୍ରଯଚ୍ଛନ୍ତି ଯେ ନରା ବୀତକଲ୍ମଷାଃ ।
ପିତୄନୁଦ୍ଦିଶ୍ୟ ନରକାତ୍ ତେ ବ୍ରଜନ୍ତି ପରଂ ହରେଃ ॥" ବ୍ରଃ ପୁଃ

+ + + +

ଅର୍ଥାତ୍ ବିରଜାକ୍ଷେତ୍ରରେ ବିରଜା ଦେବୀଙ୍କ ଈଶାନ କୋଣରେ ଗୟାସୁରର ତ୍ରୈଲୋକ୍ୟ ପୂଜିତ ନାଭିଟି ପଡ଼ି 'ନାଭିକୂପ' ରୂପରେ ପରିଣତ ହେଲା । ସେହି ନାଭିକୂପରେ ଯେଉଁମାନେ ପିତୃଗଣଙ୍କ ଉଦ୍ଦେଶ୍ୟରେ ପିଣ୍ଡ ପ୍ରଦାନ କରନ୍ତି, ସେମାନଙ୍କର ପିତୃଲୋକମାନେ ନିଷ୍ପାପଶରୀର ହୋଇ ନରକ ଯନ୍ତ୍ରଣା ତ୍ୟାଗକରି ବିଷ୍ଣୁଲୋକକୁ ଗମନ କରନ୍ତି ।

"ମଗଧେଷୁ ଶିରସ୍ତସ୍ୟ ଫଲ୍‌ଗୁତୀର୍ଥ ସମୀପତଃ ।
ଗଦାଧରଃ ସ୍ୱୟଂ ତତ୍ର ତୀର୍ଥ ଲୋଭାତ୍ ବସେତ୍ ପୁନଃ ॥
ପିତୄନୁଦ୍ଦିଶ୍ୟ ଯେ ପିଣ୍ଡଂ ଗଦାଧରକରେ ନରାଃ ।
ଉଦ୍ଧରନ୍ତି ନରକାତ୍ ପୁରୁଷାନେକ ବିଂଶତୀନ୍ ॥"

ମଗଧ ଦେଶରେ ଫଲ୍‌ଗୁତୀର୍ଥ ନିକଟରେ ଗୟାସୁରର 'ଶିର' ପଡ଼ିଥିବାରୁ ଏହା 'ଶିରଗୟା' ନାମରେ ଖ୍ୟାତି ଲାଭକଲା । ତୀର୍ଥ ଲୋଭରେ ସ୍ୱୟଂ ଗଦାଧର ସେଠାରେ ଅବସ୍ଥାନ କରନ୍ତି । ଯେଉଁମାନେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଗଦାଧରଙ୍କ ହସ୍ତରେ ପିଣ୍ଡ ପ୍ରଦାନ କରନ୍ତି ସେମାନେ ତାଙ୍କର ଏକୋଇଶ ପୁରୁଷ ପିତୃଲୋକମାନଙ୍କୁ ନରକରୁ ଉଦ୍ଧାର କରନ୍ତି । ଗୟା-ମାହାତ୍ମ୍ୟ କଥାରେ ଦେଖିବାକୁ ମିଳେ- ଶ୍ରୀ ବିଷ୍ଣୁପଦ ମନ୍ଦିର ପ୍ରକାଶ— ଠାକୁର ପୁସ୍ତକାଳୟ କୃଷ୍ଣ ପ୍ରକାଶ ପଥ ୭ମ ପୃଷ୍ଠାରେ ବର୍ଣ୍ଣିତ—"ଇତନା କଥା କହକର ସନତ୍ କୁମାରଜୀ ନାରଦସେ ବୋଲେ କି ଗୟାସୁରକେ ନାଭିକୁପ (ନାଭିଗୟା) ସ୍ଥାନକେ ସମୀପ ବିରଜାଦେବୀକା ମନ୍ଦିର ହୈ । ଉହାଁପର ପିଣ୍ଡଦାନ କରନେସେ ଇକ୍‌କିଶ ପୁରୁଷ କି ମୁକ୍ତି ହୋତୀ ହୈ । ଔର ଯୋ ଗୟାସୁର ନେପାଁ ପର ପିଣ୍ଡଦାନ କରତା ହୈ, ଇସ୍‌କେ ସାତକୁଲ ସ୍ୱର୍ଗକୋ ଯାତେ ହୈ ।"

ଏହି ପିଣ୍ଡ ନାଭିକୂପରେ ପକାଇବା ସମୟରେ ନିମ୍ନଲିଖିତ ମନ୍ତ୍ର ପାଠ କରଯାଏ—

"ଗୟାୟାଂ ବିରଜେ ଚୈବ ମାହେନ୍ଦ୍ରେ ଜାହ୍ନବୀତଟେ ।
ଅତ୍ର ପିଣ୍ଡ ପ୍ରଦାଃ ଯାନ୍ତି ବ୍ରହ୍ମଲୋକ ମନାମୟମ୍ ॥"

ଅର୍ଥାତ୍ ଗୟାରେ (ଶିରୋଗୟାରେ), ବିରଜାକ୍ଷେତ୍ରରେ (ନାଭି-ଗୟାରେ) ଓ ମହେନ୍ଦ୍ର ଗିରି ନିକଟସ୍ଥ ଗୋଦାବରୀ ନଦୀ କୂଳରେ (ପାଦ-ଗୟାରେ) ଯେଉଁମାନେ ପିତୃଗଣଙ୍କ ଉଦ୍ଦେଶ୍ୟରେ ପିଣ୍ଡ ପାତନ କରନ୍ତି ସେମାନେ ନିରାମୟ ବ୍ରହ୍ମଲୋକ ଲାଭ କରନ୍ତି ।

ଗୟାରେ ଗଦାଧରଙ୍କ ହସ୍ତରେ ପିଣ୍ଡଦାନ କରାଯାଏ, ବିରଜାକ୍ଷେତ୍ରରେ ନାଭିକୂପରେ ପିଣ୍ଡଦାନ କରାଯାଏ ଓ ଗୋଦାବରୀ ପାଦରେ ପିଣ୍ଡଦାନ କରାଯାଏ ।

ଏହି ଶାସ୍ତ୍ରୀୟ ପ୍ରମାଣମାନ ଥିବାରୁ ଉପରୋକ୍ତ ସ୍ଥାନମାନଙ୍କରେ ଲୋକମାନେ ପିତୃପୁରୁଷ ଉଦ୍ଦେଶ୍ୟରେ ଯଥାକାଳରେ ପିଣ୍ଡ ପ୍ରଦାନ କରନ୍ତି ।

୪୯-ସୋମତୀର୍ଥ—ଅଟଛେଶ୍ବର (ଡାକନାମ ହଟେଶ୍ବର)ଙ୍କ ଈଶାନ-କୋଣରେ ରାଜପୁର ନିକଟବର୍ତ୍ତୀ ବୈତରଣୀ କୂଳରେ ଅବସ୍ଥିତ ।

୫୦-ଯମତୀର୍ଥ—ଚମ୍ପାମଣ୍ଡେଇ ଗ୍ରାମର ପୂର୍ବଦିଗରେ ଧୌରିକୁଣ୍ଡ ନାମରେ ଅଭିହିତ ।

୫୧-ରସକୂପତୀର୍ଥ—ସିଦ୍ଧେଶ୍ବରଙ୍କ ଉତ୍ତରରେ ବୈତରଣୀ ତଟରେ ଅବସ୍ଥିତ ।

୫୨-ରମାତୀର୍ଥ—ଯାଉଁଳିବନ୍ଧର ପୂର୍ବ ତ୍ରିଲୋଚନଙ୍କ ନୈଋତ କୋଣରେ ଅବସ୍ଥିତ ।

୫୩-ରେବାତୀର୍ଥ—ବରାହଙ୍କ ସିଂହାସନ ପାଇଛ ତଳେ ।

୫୪-ରେଖାତୀର୍ଥ—ଯାଉଁଳିବନ୍ଧର ପୂର୍ବ ତ୍ରିଲୋଚନଙ୍କ ଈଶାନକୋଣରେ ଅବସ୍ଥିତ ।

୫୫-ଗୌତ୍ମତୀର୍ଥ — କୁଆମଣ୍ଡେଇ ଗ୍ରାମରେ ଅବସ୍ଥିତ ।

୫୬-ଲିଙ୍ଗତୀର୍ଥ—ସିଦ୍ଧେଶ୍ୱରଙ୍କ ଶକ୍ତିର ନିମ୍ନ ଭାଗହିଁ ଲିଙ୍ଗତୀର୍ଥ ।

୫୭-ସମ୍ବର୍ତ୍ତତୀର୍ଥ—ଗାରୁଡ଼େଶ୍ୱରଙ୍କ ଦକ୍ଷିଣ ବୈତରଣୀ ତୀରରେ ଅବସ୍ଥିତ ।

୫୮-ସୀତାକୁଣ୍ଡତୀର୍ଥ—ବର୍ତ୍ତମାନ ଯେଉଁ ଜୁମାମସ୍‌ଜିଦ୍ ବିଦ୍ୟମାନ ସେଠାରେ ଅବଶ୍ୟ ବ୍ରାହ୍ମଣମାନଙ୍କର ମୁକ୍ତିମଣ୍ଡପ ଅର୍ଥାତ୍ ଧର୍ମଶାସ୍ତ୍ରଚର୍ଚ୍ଚା ତଥା ବ୍ୟବସ୍ଥା ସଭାମଣ୍ଡପ ଥିଲା । ଧର୍ମବିଦ୍ୱେଷୀ କଳାପାହାଡ଼ ତାହା ଉପରେ ମୁସଲିମ୍– ମାନଙ୍କର ପ୍ରାର୍ଥନାମନ୍ଦିର ନିର୍ମାଣ କରିଅଛନ୍ତି । ଏହାର ଉତ୍ତରକୁ ବୈତରଣୀ ତଟରେ ଏହି ତୀର୍ଥ ବିଦ୍ୟମାନ । ଯେଉଁଠାରେ ବର୍ତ୍ତମାନ ସୂର୍ଯ୍ୟମନ୍ଦିର ନିର୍ମିତ ହୋଇଅଛି ।

୫୯-ସେନାପତୀର୍ଥ—ସିଦ୍ଧେଶ୍ୱରଙ୍କ ନୈଋତକୋଣରେ ବୈତରଣୀ ଯେଉଁଠାରେ ଉତ୍ତରବାହିନୀ ହୋଇଅଛି ।

୬୦-ସୁଦର୍ଶନତୀର୍ଥ—ଭଗବତପୁର ଗ୍ରାମର ପଶ୍ଚିମରେ ଅବସ୍ଥିତ କେଦାରେ- ଶ୍ୱରଙ୍କ ଦକ୍ଷିଣରେ ଥିବା ଜଳାଧାର । ଭୋଗମାଧବ ଗ୍ରାମର ପଶ୍ଚିମ ମନ୍ଦା– କିନୀ ତଟ ।

୬୧-ସିଦ୍ଧତୀର୍ଥ—ସିଦ୍ଧେଶ୍ୱରଙ୍କ ନିକଟ ଉତ୍ତରବାହିନୀ ବୈତରଣୀ ତଟରେ ।

୬୨-ସୋମତୀର୍ଥ—ପାଉଁଳବନ୍ଧ ତଥା ସୋମେଶ୍ୱରଙ୍କ ଦକ୍ଷିଣ ପାର୍ଶ୍ୱସ୍ଥ ପୁଷ୍କରିଣୀ । ଏଠାରେ ମାଘମାସ ସୋମବାର ଅମାବାସ୍ୟା ହେଲେ ତୀର୍ଥସ୍ନାନ ଯୋଗହୁଏ ।

"ସୋମତୀର୍ଥବରଂ ଶୁଭ୍ରେ ନିର୍ମିତଂ ବୈ ହିମାଂଶୁନା ।
ସ୍ନାତ୍ୱା ତତ୍ର ନରଶ୍ରେଷ୍ଠଶ୍ଚନ୍ଦ୍ର ଲୋକଂ ସ ଗଚ୍ଛତି ॥" କ: ଖ:

ଅର୍ଥାତ୍ ଭଗବାନ ଚନ୍ଦ୍ରଙ୍କ ଦ୍ୱାରା ଏହି ତୀର୍ଥଶ୍ରେଷ୍ଠ ସୋମତୀର୍ଥ ବିଦ୍ୟମାନ । ଚନ୍ଦ୍ରଙ୍କ ନାମାନୁସାରେ 'ସୋମତୀର୍ଥ' ହୋଇଅଛି । ଯେଉଁ ତୀର୍ଥରେ ଯଥାକାଳରେ ସ୍ନାନକରି ଲୋକ ଚନ୍ଦ୍ରଲୋକକୁ ଗମନ କରନ୍ତି ।

୬୩ ଶଚୀତୀର୍ଥ —ମାଳହାଟର ନୈଋତ ପଶ୍ଚିମ କୋଣରେ ତଥା ଉତ୍ତରେ- ଶ୍ୱରଙ୍କ ଉତ୍ତରରେ ଏହି ତୀର୍ଥ ବିଦ୍ୟମାନ । ଏଠାରେ ଇନ୍ଦ୍ର କଠୋର ତପସ୍ୟା କରି ସିଦ୍ଧିଲାଭ କରିଥିଲେ ।

୬୪-ଶଶିତୀର୍ଥ—ଖଣ୍ଡେଶ୍ୱର ଗ୍ରାମରେ ଥିବା ଖଣ୍ଡେଶ୍ୱର ଶିବଙ୍କ ପଶ୍ଚିମରେ ଶଶିରେଖାରେ ବା ଇନ୍ଦୁରେଖାରେ ଏହି ତୀର୍ଥ ବିଦ୍ୟମାନ ।

୬୫-ଶୂଳମାତୀର୍ଥ—ବିରଜାଙ୍କ ଅଗ୍ରଭାଗ କାମାକ୍ଷୀଦେବୀଙ୍କ ପଶ୍ଚିମରେ । ଏହି ତୀର୍ଥ ନିକଟରେ ମାର୍କଣ୍ଡେଶ୍ୱର ଲିଙ୍ଗ ବିଦ୍ୟମାନ ।

୬୬-ଶାତାତପତୀର୍ଥ—ଷୋଡୋଡ଼ା ଗ୍ରାମର ନିକଟବର୍ତ୍ତୀ ସୀମାଲିଙ୍ଗ କାଳିଂଳଟେଶ୍ୱରଙ୍କ ଦକ୍ଷିଣରେ । ଏହିଠାରେ ଶାତାତପ ଋଷି କୀଲାଳ (ଜଳ) ପାନକରି ତପସ୍ୟା କରୁଥିଲେ ବୋଲି ଏହାର ନାମ 'ଶାତାତପତୀର୍ଥ' ହୋଇଅଛି ।

୬୭-ଶ୍ୱେତଗଙ୍ଗା ବା ଭୋଗବତୀଗଙ୍ଗା—

"ବରାହସ୍ୟ ପୃଷ୍ଠଭାଗେ ଗଙ୍ଗା ଭୋଗବତୀ ତଥା ।" କ: ଫ୍ରୁ:

ବରାହଙ୍କ ପୃଷ୍ଠଭାଗରେ ଅର୍ଥାତ୍ ପଶ୍ଚିମଭାଗରେ ଥିବା ପୁଷ୍କରିଣୀ । ଏହା ବର୍ତ୍ତମାନ ପୋତିହୋଇ ଏଠାରେ କଦଳୀ, କାକୁଡ଼ି, କଲରା ଚାଷ ହେଉଛି । ପରିଚୟ କେବଳ ଶାସ୍ତ୍ରରୁ ବା ଲୋକମୁଖରୁ ମିଳେ ।

୬୮-କ୍ଷେତ୍ରଦ୍ୱାରତୀର୍ଥ—ବରାହଙ୍କ ପୂର୍ବଭାଗରେ ଅବସ୍ଥିତ । ଏହିଠାରୁ କ୍ଷେତ୍ର ପରିକ୍ରମା ବା ପ୍ରଦକ୍ଷିଣ ଆରମ୍ଭ ହୁଏ ।

ବି: ଦ୍ର:—ଉକ୍ତ ତୀର୍ଥଗୁଡ଼ିକ ମଧ୍ୟରୁ ଅଧିକାଂଶ ନାମତଃ ବିଦ୍ୟମାନ, କେତେକ ପୋତିହୋଇ କ୍ଷେତ ଜମିରେ ପରିଣତ ହୋଇଅଛି । କେଉଁଠି ବା ଘରବାଡ଼ି ହୋଇ ତାର ଚିହ୍ନ ବର୍ତ୍ତି ଦେଖାଯାଏ ନାହିଁ । ଯେଉଁଠାରେ ତୀର୍ଥ ସେଠାରେ ପ୍ରାୟ ଗୋଟିଏ ଗୋଟିଏ ଶିବଲିଙ୍ଗ ବିଦ୍ୟମାନ । ତେଣୁ ଏହି ତୀର୍ଥମାନଙ୍କ ସ୍ଥାନରୁ କେବଳ ଧୂଳି ସ୍ପର୍ଶ କରିବା ବ୍ୟତୀତ ସ୍ନାନ କରିବାର ପ୍ରଶ୍ନ ନାହିଁ । ଏମାନଙ୍କର ପୁନରୁଦ୍ଧାର ପାଇଁ ଯଦି ସ୍ଥାନ ଚିହ୍ନଟ କରି ଗୋଟିଏ ଗୋଟିଏ ସ୍ଥାୟୀ 'ଶଙ୍କୁ' ରଖାଯାଆନ୍ତା ତେବେ ବିଦେଶୀ ତଥା ସ୍ୱଦେଶୀ ଯାତ୍ରୀମାନଙ୍କର ବହୁତ ସୁବିଧା ହୁଅନ୍ତା ।

ଏହି ତ୍ରିକୋଣାକାର ଶକ୍ତି କ୍ଷେତ୍ରର ପରିସ୍ଥିକ ତ୍ରିକୋଣ ଯନ୍ତ୍ରରେ ଅଷ୍ଟଚଣ୍ଡୀ, ନବଦୁର୍ଗା, ଭୈରବ ଚତୁଷ୍ଟୟ, ତ୍ରୟୋଦଶ ରୁଦ୍ର, ଏକାଦଶ

ରୁଦ୍ର, ଦ୍ୱାଦଶ ମାଧବ, ତିନୋଟି ବେଣୀ, ତିନୋଟି ନଦୀ (କୌଶିକ, ବେଗବତୀ ଓ ମନ୍ଦାକିନୀ) ସପ୍ତରେଖା, ତିନୋଟି ପ୍ରବନ୍ଧ ସିଦ୍ଧ ବଟର, ଅଷ୍ଟୋତ୍ତର ଶତ (୧୦୮) ଶିବଲିଙ୍ଗ, ଅଡ଼ଷଠୀ (୬୮) ତୀର୍ଥ ତଥା ସପ୍ତ ପର୍ବତ ବିଦ୍ୟମାନ ।

ସପ୍ତ ପର୍ବତ—୧-ମାତଙ୍ଗାଦ୍ରି, ୨-ମୃତ୍ତିକାଦ୍ରି, ୩-ମହିଗଣ, ୪-ମଣିଚୂଡ଼ା ଗିରି, ଏହି ଗିରିରେ ବରାହଙ୍କ ମନ୍ଦିର ବିଦ୍ୟମାନ । ୫-ବିନ୍ଧ୍ୟଗିରି, ଏହି ଗିରିରେ କ୍ଷେତ୍ରାଧୀଶ୍ୱରୀ ବିରଜାଙ୍କ ମନ୍ଦିର ବିଦ୍ୟମାନ, ଯାହାକି ଯାଜପୁରର ପ୍ରସିଦ୍ଧ ନାଟ୍ୟକାର, ଗାଳ୍ପିକ, ସାହିତ୍ୟିକ, ସ୍ୱର ସଂଯୋଜକ, କାବ୍ୟିକ କବିମଞ୍ଜୁଳ ୯ କୃଷ୍ଣପ୍ରସାଦ ବସୁ ମହୋଦୟ ସ୍ୱରଚିତ କବିତାରେ ଗାଇଛନ୍ତି 'ବୈତରଣି ବାଲି ବନ୍ଧୁଲୋ ମାଗୋ ବିନ୍ଧ୍ୟ ବାସିନୀ ବିରଜା··· ।' ଆଉ ଦୁଇଟି ପର୍ବତର ନାମ ଅବିଦିତ । ଏଠାରେ ଏହି ପର୍ବତମାନ ଥିବା ବିଷୟରେ ମନ୍ଦିର ଗୁଡ଼ିକ ପ୍ରମାଣ । ଅର୍ଥାତ୍ ଏଠାରେ ଯେତେ ଯେଉଁଠି ମନ୍ଦିର ଅଛି, ସେସବୁ ପ୍ରସ୍ତର ନିର୍ମିତ । ଏହାଛଡ଼ା କେତେକ କୋଠା ବାଡ଼ୀ, ପିଣ୍ଡା, ଚୌପାଢ଼ୀ, ପୁଷ୍କରିଣୀ ପ୍ରଭୃତି ଏହି ପ୍ରସ୍ତର ନିର୍ମିତ । ଏଠାରେ ଯଦି ପର୍ବତମାନ ନ ଥାନ୍ତା ତେଣୁ ଏତେ ବଡ଼ ବଡ଼ ପଥର ଅନ୍ୟଠାରୁ ଆସିବା ଦୁରୂହ ହୋଇଥାନ୍ତା । ଏହାଛଡ଼ା ମନ୍ଦିର ନିର୍ମାଣ ସ୍ଥାନଗୁଡ଼ିକର ଉଚ୍ଚତା ଦୃଷ୍ଟିରୁ ପର୍ବତ ଥିବା ନିଃସନ୍ଦେହ । ପ୍ରମାଣ ସ୍ୱରୂପ—ତ୍ରିଲୋଚନ ମନ୍ଦିରର ମଣ୍ଡପର ଭୂମିକୁ ଦେଖିଲେ ଯେ କୌଣସି ଲୋକ ଏହା ପାର୍ବତ୍ୟ ଭୂମି ବୋଲି ଅନୁମାନ କରିବ । ଏହି ପଥରଗୁଡ଼ିକ 'ବଉଳମାଳିଆ' । ଏଥିରେ ଲତା ପତ୍ରାଦି କାରୁକାର୍ଯ୍ୟ କରିବା ବା ସୂକ୍ଷ୍ମକଳା ପ୍ରଦର୍ଶନ କରିବା ସହଜସାଧ୍ୟ ।

## ବୈତରଣୀର ପରିଚୟ—

ବର୍ତ୍ତମାନ ଯେଉଁ ନଦୀଟି ଭୁସାଣି ଛଡ଼ିଆ ବା ଡାକନାମ 'କାଠ–ଶୋଳ' ଠାରେ ପ୍ରବାହିତ ହେଉଅଛି, ଯେଉଁଠାରେ ପ୍ରତିବର୍ଷ ଦୁର୍ଗାମେଢ଼, କାଳୀମେଢ଼ ବା ଅନ୍ୟାନ୍ୟ ଦେବ ଦେବୀ ମେଢ଼ର ମୂର୍ତ୍ତିମାନଙ୍କୁ ବିସର୍ଜନ ଦିଆଯାଏ, ତାହା ପ୍ରକୃତ ବୈତରଣୀ ନୁହେଁ । ତାହାର ନାମ 'ଖେଙ୍ଗୁଟୀ' । ଏହି ଖେଙ୍ଗୁଟୀ ନଦୀଟି ବଡ଼ପଣ୍ଡା ମାଳର କିଛିଦୂର ତଳେ କୁଞ୍ଜବିହାରୀପୁର

ଗ୍ରାମ ନିକଟରେ 'ଶଙ୍ଖାଗ୍ରମୁହାଁ' ଠାରେ ପ୍ରକୃତ ବୈତରଣୀ ନଦୀରୁ ବାହାର ପୂର୍ବାଭିମୁଖୀ ହେଲା । ପ୍ରକୃତ ବୈତରଣୀ ବାରଭୂଗିଆ, ବଲେଶ୍ୱର, ନାଲ-ବାଗ, ପଣସା, ବଳାଣ ପ୍ରଭୃତି ଗ୍ରାମମାନଙ୍କ ଆଗଦେଇ ଆସି ଜୁମାମସ୍‌ଜିଦ୍‌ର ଉତ୍ତର ଦିଗରେ କୂଳବନ୍ଧ ତଳେ ତଳେ ଦଶାଶ୍ୱମେଧ ଘାଟ, ସିଦ୍ଧିଗଣେଶ ଓ ସପ୍ତମ ତୃକାଙ୍କ ଆଗରେ ପ୍ରବାହିତ ହୋଇ ଶଙ୍ଖାଗ୍ରମୁହାଁରୁ ବାହାରି ବନ୍ଧ ଆସୁଥିବା ଗେଙ୍ଗୁଟୀ ନଦୀ ସହିତ କାଠଗୋଲା ଘାଟଠାରେ ମିଳିତ ହେଲା । କିଛିଦୂର ଏକତ୍ରିତ ହୋଇ ପ୍ରବାହିତ ହେବାପରେ ମୁଦ୍‌ଗଲେଶ୍ୱର ଡାକନାମ ମୁଗୁରେଶ୍ୱର, ମହାବୀର ହନୁମାନ ମନ୍ଦିର ପାଖରେ 'ଗେଙ୍ଗୁଟୀ' ନଦୀଟି ସୋଲପାଣି ଗ୍ରାମ ଦେଇ ପ୍ରବାହିତ ହେଲା । ବୈତରଣୀ ନଦୀଟି ସେଠାରୁ ବିଭକ୍ତ ହୋଇ 'ସିଦ୍ଧେଶ୍ୱର' ନିକଟରେ ପ୍ରବାହିତ ହୋଇ କଇଁଆଗୋଲାର କିଛି ଦୂରତଳେ 'ଖରସ୍ରୋତା'କୁ ନେଇ 'ବୃନ୍ଦବାଳି' ବାଟରେ 'ଧାମରା' ଠାରେ ସମୁଦ୍ର ସହିତ ମିଳିତ ହୋଇଅଛି ।

କାଳକ୍ରମେ ଶଙ୍ଖାଗ୍ରମୁହାଁରୁ ବାହାରିଥିବା ଗେଙ୍ଗୁଟୀ ବାଲୁକା-ଶଯ୍ୟା ପାଇଁ ପ୍ରସାର ଲାଭ କରିବାରୁ ପଣସା ପ୍ରଭୃତି ଦେଇ ପ୍ରବାହିତ ହେଉଥିବା ପ୍ରକୃତ ବୈତରଣୀର ମୁହଁଟି ପୋତିହୋଇ ସବୁଦିନ ପାଇଁ ସ୍ରୋତ ବନ୍ଦ ହୋଇଗଲା । କେବଳ ପ୍ରତିବର୍ଷ ବନ୍ୟାସମୟରେ ଏହି ଚିର-ଶୁଷ୍କା ବାଲୁକାମୟୀ ବୈତରଣୀ ବନ୍ୟାଜଳ ଦ୍ୱାରା ଜଳପୂର୍ଣ୍ଣ ହୁଏ । ଯେଉଁ 'ଦଶାଶ୍ୱମେଧ ଘାଟ' ବାରୁଣୀ ପ୍ରଭୃତି ଯୋଗ ସ୍ନାନ ପାଇଁ ପ୍ରସିଦ୍ଧ, ସେହି ବୈତରଣୀ ଜଳାଭାବ ଯୋଗୁ ସ୍ରୋତସ୍ୱିନୀ ନ ହୋଇ ଶୁଷ୍କ ପଡ଼ିଥିବାରୁ ଏହି ଯାଜପୁରର ତଦାନୀନ୍ତନ ଏସ୍ ଡ଼ି ଓ. ୰ ରାଧା ଚରଣ ଦାସ ମହୋ-ଦୟଙ୍କ ଆନୁକୂଲ୍ୟରେ ସ୍ୱନାମଧନ୍ୟ ଓକିଲ ୰ ଗୋବିନ୍ଦ ପ୍ରସାଦ ବୋଷ, (ଡାକନାମ ଗାଲଗୋବିନ୍ଦ ବାବୁ), ଓକିଲ ୰ କୃଷ୍ଣ ପ୍ରସାଦ ସିଂହ, ଓକିଲ ୰ ହରିଧନ ମିଶ୍ର, ସିରସ୍ତାଦାର ୰ ହରିହର ଦାସ (ଡାକନାମ ବଡ଼ହରି ବାବୁ), ମୁକ୍ତାର ୰ ବାଳକୃଷ୍ଣ ଦାସ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ତାତ୍କାଳିକ ବ୍ରିଟିଶ ସରକାର ମହୋଦୟଙ୍କ ପାଖରେ ବାରଂବାର ଆବେଦନ ନିବେ-ଦନ କରି 'ମୁଣ୍ଡିମୁହାଁ' ପାଖରୁ ଗୋଟିଏ ନାଳ ଗେଙ୍ଗୁଟୀରୁ ଆଣି ଏହି ଶୁଷ୍କା ବୈତରଣୀ ସହିତ ଦଶାଶ୍ୱମେଧ ଘାଟଠାରେ ମିଶାଇବାକୁ ବହୁଯତ୍ନ

କରିଥିଲେ । ଯାହାଫଳରେ କୌଳିଗ୍ୟନଣେ ଏହା କାର୍ଯ୍ୟରେ ପରିଣତ ହେଲା । ବର୍ତ୍ତମାନ ଏହା ଗୋଟିଏ ଶ୍ରେଷ୍ଠ ନଦୀରେ ପରିଣତ ହେଲାଣି, ଯେଉଁ ନଦୀ ଉପରେ ପ୍ରତିବର୍ଷ ବାରୁଣୀଯାତ୍ରା ପାଇଁ ଅସ୍ଥାୟୀ କାଠପୋଲ ନିର୍ମାଣ କରା-ଯାଉଛି । ଏହି ନାଳଟିକୁ ଅଧିକାଂଶ ବ୍ୟକ୍ତି ମୁଖ୍ୟ ଉଦ୍ୟୋକ୍ତା ରାଧା-ଚରଣ ବାବୁ ଓ ଗୋବିନ୍ଦ ବାବୁଙ୍କ ନାମାନୁସାରେ 'ରାଧାଗୋବିନ୍ଦନାଳ' ବୋଲି କହନ୍ତି ।

ଆଜି ଏମାନେ ଅବଶ୍ୟ ନାହାନ୍ତି । ଏମାନଙ୍କର ନର ଶରୀର ମାଟିରେ ମିଶି ଯାଇଛି, କିନ୍ତୁ 'କୀର୍ତ୍ତିର୍ଯସ୍ୟ ସ ଜୀବତି' ନ୍ୟାୟରେ ଏମାନଙ୍କର ଅମର କୀର୍ତ୍ତି ଚିର ଭାସ୍ୱର ହୋଇ ରହିଥିବ । ଏହା ନହୋଇ ଥିଲେ ଏଠାରେ ତୀର୍ଥଜଳ ମୁନ୍ଦାଏ ବି ମିଳୁ ନଥାନ୍ତା ।

'ବାରୁଣୀ ସ୍ନାନଯୋଗ', 'ରୋହିଣୀ ପ୍ରତିପଦ ସ୍ନାନ' ପ୍ରଭୃତି 'ଯୋଗସ୍ନାନ' କରିବା ଏହି ସ୍ଥାନରେ ଶାସ୍ତ୍ର ସମ୍ମତ । ଅର୍ଥାତ୍ ପେଣ୍ଠିକ ପରିସର ମଧ୍ୟରେ ସପ୍ତମାତୃକା ମନ୍ଦିର ସମ୍ମୁଖରେ 'ଦଶାଶ୍ୱମେଧ ଘାଟ' ବନ୍ଧା ଯାଇଛି ଏବଂ ବରାହଙ୍କ ଦକ୍ଷିଣରେ ବିଶ୍ୱେଶ୍ୱରଙ୍କ ସମ୍ମୁଖ ଭାଗରେ ବୈତରଣୀର ଯେଉଁ ଅଂଶଟିକ ଘାଟ ବା ପଥର ପାଇଛ ବନ୍ଧା ଯାଇଛି, ବୈତରଣୀର ସେହି ସ୍ଥାନକୁ ହିଁ 'ଗଙ୍ଗା' କୁହାଯାଏ । ଏହାମଧ୍ୟ ପୂର୍ବରୁ କୁହାଯାଇଛି । ଯଥା—

"ମଧ୍ୟେ ବହତି କଲ୍ୟାଣି ଗଙ୍ଗା ହରିବରାହୟୋଃ ।
ବୈତରଣ୍ୟାଖ୍ୟୟା ଭୂମୌ ଯା ଗଙ୍ଗା କୀର୍ତ୍ତ୍ୟତେ ବୁଧୈଃ ॥" ବ୍ରାଃପୁଃ

**ବାରୁଣୀ**—ଏହି ଯାଜପୁର ବିରଜାକ୍ଷେତ୍ରରେ ପ୍ରବାହିତା ବୈତରଣୀରେ ପ୍ରତିବର୍ଷ ବାରୁଣୀସ୍ନାନ ଯୋଗ ପଡ଼ିବା ଗୋଟିଏ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା । ଏଥିପାଇଁ ଓଡ଼ିଶାର ପୁରପଲ୍ଲୀରୁ ତଥା ଭାରତର ବିଭିନ୍ନ ପ୍ରାନ୍ତରୁ ଧର୍ମପ୍ରାଣ, ଈଶ୍ୱର ବିଶ୍ୱାସୀ, ତୀର୍ଥପ୍ରେମୀ, ଅସଂଖ୍ୟ ଯାତ୍ରୀ, ସାଧୁ ସନ୍ନ୍ୟାସୀ ତଙ୍କୁ ଅକର୍ମଣ୍ୟ ବହୁସଂଖ୍ୟାରେ ଏହି ସ୍ଥାନରେ ସମବେତ ହୁଅନ୍ତି । ଏହି ବାରୁଣୀ କ'ଣ, ଯୋଗସ୍ନାନ କ'ଣ, ଏ ବିଷୟରେ ବହୁ ଲୋକଙ୍କ ମନରେ ବହୁ

ପ୍ରଶ୍ନ ଜାତହୁଏ । ତାହାର ସମାଧାନ କେହି କେହି କରନ୍ତି ବା କେହି କିଛି ନ କହି ନୀରବ ରହନ୍ତି ଅଥବା ମନ ଭୁଲାଣିଆ ଉତ୍ତର ଦେଇ ନିଜକୁ ଅଭିଜ୍ଞ ବୋଲି ପରିଚୟ ଦେଇଥାନ୍ତି । ଯାହାହେଉ ଶାସ୍ତ୍ରୀୟ ପ୍ରମାଣ ଅନୁସାରେ ଏହି 'ବାରୁଣୀ' ତିନ ଭାଗରେ ବିଭକ୍ତ ଯଥା :—(୧) ବାରୁଣୀ, (୨) ମହା-ବାରୁଣୀ, (୩) ମହା ମହା ବାରୁଣୀ ।

'ବରୁଣ' ଅର୍ଥାତ୍ ସତେଇଶଟି ନକ୍ଷତ୍ର ମଧ୍ୟରୁ 'ଶତଭିଷା' ନକ୍ଷତ୍ରର ଅନ୍ୟନାମ 'ବରୁଣ' । "ବରୁଣ ଏବ ବାରୁଣଃ, ବରୁଣେନ ଶତ-ଭିଷା ନକ୍ଷତ୍ରେଣ ସମାଯୁକ୍ତା ତିଥିଃ" = ବାରୁଣୀ (ବରୁଣ + ଙୀପ୍ = )

୧-ବାରୁଣୀ-"ବରୁଣେନ ସମାଯୁକ୍ତା ମଧୌ କୃଷ୍ଣତ୍ରୟୋଦଶୀ ।
ଗଙ୍ଗାୟାଂ ଯଦି ଲଭ୍ୟେତ ସୂର୍ଯ୍ୟ ଗ୍ରହଣଶତୈଃ ସମା ॥" ପଣ୍ଡିତସର୍ବସ୍ୱ

ଅର୍ଥାତ୍ ବରୁଣ (ଶତଭିଷା ନକ୍ଷତ୍ର), ମଧୁ-ଅର୍ଥାତ୍ ଚୈତ୍ରମାସ, କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ ଯଦି କୌଣସି ବ୍ୟକ୍ତି ଗଙ୍ଗାରେ ବା ଗଙ୍ଗା-ରୂପିଣୀ ବୈତରଣୀରେ ସ୍ନାନ କରିବାର ସୁଯୋଗ ପାଏ, ତେବେ ସେ ଶତ ସୂର୍ଯ୍ୟ ଗ୍ରହଣ ସ୍ନାନର ଫଳଲାଭ କରେ ।

"ଶତଭିଷଙ୍ ନକ୍ଷତ୍ର ଯୁକ୍ତାୟାଂ ଚୈତ୍ରକୃଷ୍ଣତ୍ରୟୋଦଶ୍ୟାଂ ଗଙ୍ଗା-ସ୍ନାନେ କୃତେ ସୂର୍ଯ୍ୟଗ୍ରହଣ ଶତସ୍ୟ ଫଳଂ ପ୍ରାପ୍ନୋତି ।"

୨-ମହାବାରୁଣୀ—ଇୟମେବ ଶତଭିଷଙ୍ ନକ୍ଷତ୍ରଯୁକ୍ତା ଚୈତ୍ର କୃଷ୍ଣତ୍ରୟୋ-ଦଶୀ ଶନିବାରଯୁକ୍ତା ଚେତ୍ 'ମହାବାରୁଣୀ' ଇତି ଉଚ୍ୟତେ । ତତ୍ର ଗଙ୍ଗାସ୍ନାନେ କୃତେ କୋଟି ସୂର୍ଯ୍ୟ ଗ୍ରହଣ ସ୍ନାନ ଫଳଂ ଭବତି ।

"ଶନିବାରସମାଯୁକ୍ତା ସା 'ମହାବାରୁଣୀ' ସ୍ମୃତା ।
ଗଙ୍ଗାୟାଂ ଯଦି ଲଭ୍ୟେତ କୋଟିସୂର୍ଯ୍ୟ ଗ୍ରହୈଃ ସମା ॥" ପ. ସ.

× × × ×

ଅର୍ଥାତ୍ ପୂର୍ବୋକ୍ତ ଚୈତ୍ର ମାସ କୃଷ୍ଣପକ୍ଷ, ତ୍ରୟୋଦଶୀ ତିଥି, ଶତଭିଷା (ବରୁଣ) ନକ୍ଷତ୍ର, ଏ ସବୁ ଯଦି ଶନିବାର ପଡ଼େ, ତେବେ ସେହି ବାରୁଣୀକୁ ମହାବାରୁଣୀ କୁହାଯାଏ । କେହି ଯଦି ଏହି ଯୋଗରେ ଗଙ୍ଗାରେ

ଅଥବା ଗଙ୍ଗା ରୂପିଣୀ ଏହି ବୈତରଣୀରେ ପୂର୍ବୋକ୍ତ ନିର୍ଦ୍ଦିଷ୍ଟ ସ୍ଥାନରେ ଯୋଗ ସ୍ନାନ କରେ, ତେବେ ସେହି ବ୍ୟକ୍ତି କୋଟି ସୂର୍ଯ୍ୟ ଗ୍ରହଣ ସ୍ନାନର ଫଳ ଲଭ କରେ ।

୩-ମହା ମହା ବାରୁଣୀ—ଅନ ଏବ ଶୁଭନାମଯୋଗେ ଭବତି ଚେତ୍ସା 'ମହାବାରୁଣୀ' ଇତି କଥ୍ୟତେ । ସା ଚ କୋଟି ପୂରୁଷାନ୍ ତାରୟତି ।
ଯଥା—"ଶୁଭଯୋଗସମାଯୁକ୍ତା ଶନୌ ଶତଭିଷା ଯଦି ।
ମହା ମହେତି ବଖ୍ୟାତା ତ୍ରିକୋଟି କୁଳ ମୁଦ୍ଧରେତ୍ ॥" ପ. ସ.

ଅର୍ଥାତ୍ ଚୈତ୍ରମାସ, କୃଷ୍ଣପକ୍ଷ, ତ୍ରୟୋଦଶୀ ତିଥି, ଶତଭିଷା (ବରୁଣ) ନକ୍ଷତ୍ର ଏସବୁ ଶନିବାର ପଡ଼ି ଯଦି 'ଶୁଭ' ଯୋଗ ଓ 'ଗର' କରଣଯୁକ୍ତ ହୁଏ, ତେବେ ତାହାକୁ ମହା ମହା ବାରୁଣୀ କୁହାଯାଏ । ଏହି ଯୋଗରେ ଗଙ୍ଗାରେ ବା ଗଙ୍ଗା ରୂପିଣୀ ବୈତରଣୀର ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ନାନ କଲେ ଲୋକ କୋଟି କୋଟି ପିତୃ ପୁରୁଷଙ୍କୁ ଉଦ୍ଧାର କରେ ।

ଯଥା—ଚୈତ୍ରେଽସିତେ ବାରୁଣୀ ଋକ୍ଷଯୋଗେ
ତ୍ରୟୋଦଶୀ ହ୍ୟର୍କ ସୁତସ୍ୟ ବାରେ ।
ଯୋଗେ ଶୁଭେ ସ୍ୟାତ୍ କରଣେ ଗରେ ଚ
ମହା ମହା ବାରୁଣୀ ଯୋଗ ମାହୁଃ ॥" ବ୍ୟବସ୍ଥା ପ୍ରଦୀପ

ପୂର୍ବୋକ୍ତ ସାତୋଟି ଯୋଗ ଏକତ୍ରିତ ହେଲେ (ଅର୍ଥାତ୍ ଚୈତ୍ର ମାସ, କୃଷ୍ଣପକ୍ଷ, ତ୍ରୟୋଦଶୀ ତିଥି, ଶନିବାର, ବରୁଣ(ଶତଭିଷା) ନକ୍ଷତ୍ର ଶୁଭ ଯୋଗ ଓ ଗର କରଣ 'ମହା ମହା ବାରୁଣୀ' ହୁଏ । ଏହା ପ୍ରତିବର୍ଷ ପଡ଼େନାହିଁ । ଏହି ଯୋଗ ଦିନରେ ପଡୁ ବା ରାତିରେ ପଡୁ, ସବୁବେଳେ ସ୍ନାନ କର୍ତ୍ତବ୍ୟ । ଯୋଗ ସ୍ନାନରେ ରାତ୍ରିଦୋଷ ଧରାଯାଏ ନାହିଁ । ଯଥା—
"ଦିବା ରାତୌ ଚ ସନ୍ଧ୍ୟାୟାଂ ଗଙ୍ଗାୟାଂ ତୁ ପ୍ରସଙ୍ଗତଃ ।
ସ୍ନାତ୍ୱାଶ୍ୱମେଧଜଂ ପୁଣ୍ୟଂ ଗୃହେଽପ୍ୟୁଦ୍ଧୃତ ତଜ୍ଜଲୈଃ ॥" ପ. ସ.

ଯୋଗ ସ୍ନାନ ଯଦି ରାତିରେ ପଡୁଥିବ ତେବେ ଗଙ୍ଗାରେ ବା ଗଙ୍ଗା-ରୂପିଣୀ ବୈତରଣୀରେ ଏହି ବାରୁଣୀ ସ୍ନାନ କରିବା ବିଧେୟ, କାରଣ

ଶାସ୍ତ୍ରରେ ଉଲ୍ଲେଖ ଅଛି ଯେ ତିଥି, ବାର, ନକ୍ଷତ୍ର ପ୍ରଭୃତିର ଯୋଗ ମିଳି-ଥିଲେ ଦିନରେ, ସନ୍ଧ୍ୟାରେ ବା ରାତ୍ରିରେ ମଧ୍ୟ ଗଙ୍ଗା, ବୈତରଣୀରେ ଯୋଗସ୍ନାନ କରାଯାଏ । ଅଶକ୍ତ, ବୃଦ୍ଧ, ରୋଗୀ ଯଦି ନଦୀକୁ ଯାଇ ନ ପାରନ୍ତି ତେବେ ଗଙ୍ଗାରୁ, ବୈତରଣୀରୁ ବା ଅନ୍ୟାନ୍ୟ ତୀର୍ଥରୁ ଜଳ ଆଣି ଗୃହ ମଧ୍ୟରେ ସ୍ନାନ କଲେ ଶତ ଅଶ୍ୱମେଧର ଫଳ ଲାଭ କରନ୍ତି ।

ରାତ୍ରି ଅଧରେ ଯଦି ଏହି ବାରୁଣୀ ସ୍ନାନ ଯୋଗ ପଡ଼େ, ତେବେ ସ୍ନାନ କରିବା ବିଧେୟ କି ନା ? ଏ ବିଷୟରେ ପ୍ରଶ୍ନ ହୋଇ ପାରେ, କାରଣ ମହାନିଶାରେ କେତେକ ବିଷୟରେ ସ୍ନାନ କରିବା ନିଷେଧ କରା-ଯାଇଅଛି ।

ପ୍ରଥମେ ମହାନିଶା କାହାକୁ କହନ୍ତି ତାହା ବିଚାର କରାଯାଉ —

"ମହାନିଶା ତୁ ବିଜ୍ଞେୟା ମଧ୍ୟମଂ ପ୍ରହରଦ୍ୱୟମ୍ ।
ତସ୍ୟାଂ ସ୍ନାନଂ ନ କର୍ତ୍ତବ୍ୟଂ କାମ୍ୟଂ ନୈମିତ୍ତିକାଦୃତେ ॥"
(ପଣ୍ଡିତ ସର୍ବସ୍ୱ)

+ + + +

ଇତି ବଚନାତ୍ ମହାନିଶାୟାଂ ମଧ୍ୟମ ପ୍ରହର ଦ୍ୱୟେଽପି 'ବାରୁଣୀ-ସ୍ନାନଂ' ଗ୍ରହଣସ୍ନାନଂ ଚ କର୍ତ୍ତବ୍ୟମ୍ । ନୈମିତ୍ତିକତ୍ୱାତ୍ ।

ରାତ୍ରିର ପ୍ରଥମ ପ୍ରହର ଓ ଶେଷ ପ୍ରହରକୁ ଛାଡ଼ି ମଧ୍ୟମ ପ୍ରହର ଦ୍ୱୟ ଅର୍ଥାତ୍ ୩ୟ ଓ ୪ର୍ଥ ପ୍ରହରକୁ 'ମହାନିଶା' କୁହାଯାଏ । ନୈମିତ୍ତିକ ସ୍ନାନ ବ୍ୟତୀତ ସେ ସମୟରେ ଅନ୍ୟ କାମ୍ୟସ୍ନାନ କରାଯାଏ ନାହିଁ । କିନ୍ତୁ ବାରୁଣୀ ସ୍ନାନ, ଗ୍ରହଣ ସ୍ନାନ ଓ ଅନ୍ୟାନ୍ୟ ଯୋଗସ୍ନାନ ନୈମିତ୍ତିକ, ତେଣୁ ମହା-ନିଶାରେ ଏହା କରଣୀୟ । ଏହି ଯୋଗସ୍ନାନ ଯେଉଁମାନଙ୍କ ଭାଗ୍ୟରେ ଘଟେ ସେମାନେ ଭାଗ୍ୟବାନ୍ ।

ଏହାକୁ କେତେକ 'ମଧୁବାରୁଣୀ' ବୋଲି କହିଥାନ୍ତି । କାରଣ ମଧୁବାରୁଣୀର କୌଣସି ପ୍ରମାଣ ମିଳେ ନାହିଁ । ଏହା କହିବାର ତାତ୍ପର୍ଯ୍ୟ

'ମଧୁ' ଶବ୍ଦର ଅର୍ଥ ଚୈତ୍ରମାସ । ଏହି ଚୈତ୍ର ମାସରେ ବରୁଣ ଅର୍ଥାତ୍ ଶତଭିଷା ନକ୍ଷତ୍ର ଯୁକ୍ତ ସ୍ନାନଯୋଗ ପଡୁଥିବାରୁ ଏହାକୁ 'ମଧୁବାରୁଣୀ' କହିବା ସମୀଚୀନ ଅଟେ । ସମୟେ ସମୟେ ତ୍ରୟୋଦଶୀ ତିଥିରେ ଶତଭିଷା ନକ୍ଷତ୍ର ଯୋଗ ହୁଏ ନାହିଁ ।

ଏହି ଆମ୍ଭର ସଂସ୍କୃତି ହିଁ ଭାରତର ସର୍ବଶ୍ରେଷ୍ଠ ସମ୍ପଦ । ଏହି ଆଧ୍ୟାତ୍ମିକ ସମ୍ପଦ ଉପରେ ଭାରତର ମାନବିକତା, ସଭ୍ୟତା ତିଷ୍ଠି ରହିଛି ଓ ଯୁଗେ ଯୁଗେ ରହିଥିବ ।

ଏହି ବାରୁଣୀ ମେଳାଟି ପ୍ରାୟ ଆଠ ନଅ ଦିନ ରହେ । ବିଭିନ୍ନ ସ୍ଥାନରୁ ବିଭିନ୍ନ ବ୍ୟବସାୟୀ ଲୁଗାପଟା, ବାସନ କୁସନ, ଆୟୁର୍ବେଦୀୟ ଚେରମୂଳ, ଲୁହାଲଡା, ସପ ମନୋହରୀ ପ୍ରଭୃତି ଜିନିଷପତ୍ର ଆଣି ବ୍ୟବସାୟ କରନ୍ତି । ବାରୁଣୀ ଦିନକୁ ଗୁଡ଼ି ପ୍ରତିଦିନ ଯାତ୍ରାରେ ଲୋକ ଗହଳି ଥାଏ । ବିଶେଷତଃ ଦିନ ୪ଟା ବେଳୁ ରାତି ୧୦ଟା ପର୍ଯ୍ୟନ୍ତ ସ୍ଥାନୀୟ ଯାତ୍ରୀ ପୁରୁଷ ସ୍ତ୍ରୀ ଲୋକମାନଙ୍କ ଦ୍ୱାରା ଯାତ୍ରା ସରଗରମ ହୁଏ । ଖରାଦିନ ଯୋଗୁ ବାରୁଣୀ ପଡ଼ିଆରେ ଭ୍ରମଣ ବଡ଼ ଆରାମଦାୟକ ହୋଇଥାଏ । ସରକାରଙ୍କ ତରଫରୁ ଆଲୋକ, ପାନୀୟ ଜଳର ସୁବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ନିରାପତ୍ତା ରକ୍ଷା କରାଯାଇଥାଏ । ମିଠା ଦୋକାନ, ଯୋତା ଦୋକାନ ପ୍ରଭୃତି ସାଜସଜ୍ଜା ଅତି ଚିତ୍ତାକର୍ଷକ ହୋଇଥାଏ । ଯାଜପୁର ବାରୁଣୀ ମେଳା ଓଡ଼ିଶା ବିଖ୍ୟାତ । ବାରୁଣୀ ଯାତ୍ରାପରେ ବ୍ୟବସାୟୀମାନେ ସିଦ୍ଧେଶ୍ୱରଙ୍କ ନିକଟରେ ହେଉଥିବା 'ଅଶୋକାଷ୍ଟମୀ' ଯାତ୍ରାକୁ ଯା'ନ୍ତି ।

**ଅଶୋକାଷ୍ଟମୀ**—ବୈତରଣୀ ନଦୀ କୂଳରେ ଶେଷ ହୋଇ ଲିଙ୍ଗ ହର-ହର ଏକାମ୍ର ସିଦ୍ଧେଶ୍ୱର ବିଦ୍ୟମାନ । ଏହା ଯାଜପୁର ଟାଉନ୍ ଠାରୁ ପ୍ରାୟ ଚାରି ମାଇଲ ଦୂରରେ ଅବସ୍ଥିତ । ଏଠାରେ ପ୍ରତିବର୍ଷ ଚୈତ୍ରମାସ, ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ 'ଅଶୋକାଷ୍ଟମୀ' ନାମରେ ଗୋଟିଏ ବଡ଼ ମେଳା ହୁଏ । ବୈତରଣୀ ଏଠାରେ ଉତ୍ତରବାହିନୀ ହୋଇ ସିଦ୍ଧବନକୁ ପବିତ୍ରିତ କରିଅଛି । ଏହି ସ୍ଥାନଟି ପ୍ରଦ୍ୟୁମ୍ନଙ୍କର ତପଃସ୍ଥାନ ବୋଲି ପୁରାଣ ପ୍ରସିଦ୍ଧ । ଅଶୋକାଷ୍ଟମୀ ଦିନ ଉତ୍ତରବାହିନୀ ବୈତରଣୀରେ ସ୍ନାନ ସନ୍ଧ୍ୟା ତର୍ପଣାଦି

କର ଆଠୋଟି ଅଶୋକ କଳିକା (କଢି) ପାନକଲେ ଲୋକ ସର୍ବପାପରୁ ମୁକ୍ତ ହୁଏ ବୋଲି ଶାସ୍ତ୍ରସମ୍ମତ । ଅଶୋକ କଳିକା ପାନ ବିଷୟରେ କୁହାଯାଇଛି—

"ଅଶୋକ କଳିକା ଶ୍ଚାଷ୍ଟୌ ଯେ ପିବନ୍ତି ପୁନର୍ବସୌ ।
ଚୈତ୍ରେ ମାସି ସିତାଷ୍ଟମ୍ୟାଂ ନ ତେ ଶୋକମବାପ୍ନୁୟୁଃ ॥" ପ. ସ.

\+ \+ \+ \+

ଅର୍ଥାତ୍ ପୁନର୍ବସୁ ନକ୍ଷତ୍ରଯୁକ୍ତ ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଯେଉଁମାନେ ଆଠୋଟି ଅଶୋକ କଳିକା ପାନକରନ୍ତି, ସେମାନେ ଶୋକ ବା ଦୁଃଖରେ ଅଭିଭୂତ ହୁଅନ୍ତି ନାହିଁ ।

କେବେ କେବେ ପୁନର୍ବସୁ ନକ୍ଷତ୍ର ଯୁକ୍ତ ନ ହୋଇ କେବଳ ଚୈତ୍ର ଶୁକ୍ଳାଷ୍ଟମୀ ହୋଇଥାଏ ।

ସେ ବିଷୟରେ କୁହାଯାଉଛି—

"ମୀନେ ମଧୌଶୁକ୍ଳପକ୍ଷେ ଅଶୋକାଖ୍ୟା ତଥାଷ୍ଟମୀ ।
ପିବେଦଶୋକ କଳିକାଃ ସ୍ନାୟାତ୍ ଲୋହିତ ବାରିଣି ॥" ପ. ସ.

ଅର୍ଥାତ୍ ସୂର୍ଯ୍ୟ ମୀନ ରାଶିରେ ଥିବାବେଳେ ଚୈତ୍ରଶୁକ୍ଳ ଅଷ୍ଟମୀରେ ଅଶୋକ କଳିକା ଆଠୋଟି ପାନ କରି ଶୋଣ ନଦୀରେ ସ୍ନାନ କରିବା ବିଧେୟ ।

ଆଠୋଟି ଅଶୋକ କଳିକା ନିମ୍ନୋକ୍ତ ମନ୍ତ୍ରପାଠ କରି ପାନ କରାଯାଏ ।

"ତ୍ୱାମଶୋକ ହରାଭୀଷ୍ଟ ମଧୁମାସ ସମୁଦ୍ଭବ ।
ପିବାମି ଶୋକ ସନ୍ତପ୍ତୋ ମାମଶୋକଂ ସଦା କୁରୁ ॥" ପ: ସ:

ଏହି ଅଶୋକାଷ୍ଟମୀକୁ ଲୋକେ 'ଭସିକାକଢି' ବା 'ଅଶୋକାକଢି' ଯାତ୍ରା ବୋଲି କହନ୍ତି । ଏହି ଯାତ୍ରା ପ୍ରାୟ ମାସାବଧି ବସେ । ଏହାପରେ ବ୍ୟବସାୟୀମାନେ 'କୁଆଁସ ମଙ୍ଗଳା'କୁ ଯା'ନ୍ତି । ଯେଉଁ ମଙ୍ଗଳାଙ୍କୁ ଲୋକେ 'ମହାକାଳୀ' ବୋଲି କହନ୍ତି ।

## ସଙ୍ଗତ ବା ମୁକ୍ତି ମଣ୍ଡପ—

"ବରାହସ୍ୟ ପୃଷ୍ଠଭାଗେ ବାରାହେ। ମୁକ୍ତିମଣ୍ଡପଃ ।
ତତ୍ର ସ୍ଥିତ୍ୱା କ୍ଷଣଂ ଲୋକଃ ବୈକୁଣ୍ଠଂ ଲଭତେ ଧ୍ରୁବମ୍ ।
ଆସ୍ତେ ତତ୍ର ସିଦ୍ଧବଟଃ ସିଦ୍ଧିଦୋ ମୁକ୍ତିଦାୟକଃ ॥" କ. ସଂ.

ବରାହଙ୍କ ପୃଷ୍ଠ ଭାଗରେ ଅର୍ଥାତ୍ କଛୁ ଦକ୍ଷିଣକୁ ଗୋଟିଏ ଉଚ୍ଚ ପ୍ରଶସ୍ତ ଗୃହଟିଏ ଅଛି । ଏହାକୁ ମୁକ୍ତି ମଣ୍ଡପ କୁହାଯାଏ । ଯେଉଁଠାରେ କେହିକେ କିଛି ସମୟ ଅବସ୍ଥାନ କଲେ ପାପମୁକ୍ତ ହୋଇ ବୈକୁଣ୍ଠ ଲାଭ କରନ୍ତି । ଏଠାରେ ଗୋଟିଏ ବିଶାଳ ଅତି ପୁରାତନ ବଟବୃକ୍ଷ ଅଛି । ଏହାକୁ 'ସିଦ୍ଧ ବଟ' କୁହାଯାଏ । ଏଠାରେ 'ବିଷ୍ଣୁମନ୍ତ୍ର' ଜପକଲେ ତିନି ମାସରେ ମନ୍ତ୍ର ସିଦ୍ଧ ହୁଏ ।

ବାରୁଣୀ ସମୟରେ ବିଦେଶାଗତ ଯାତ୍ରୀମାନେ ଏଠାରେ କିଛି ସମୟ ପାଇଁ ବିଶ୍ରାମ ନିଅନ୍ତି । ଏହିଠାରେ କେତେକଙ୍କର ବନ୍ଧୁବାନ୍ଧବ ତଥା ପ୍ରିୟ ଲୋକଙ୍କ ସହିତ ପ୍ରାୟ ଦେଖା ସାକ୍ଷାତ ହୁଏ ବୋଲି ଏହାକୁ ଲୋକେ 'ସଙ୍ଗତ' ବୋଲି କହିଥାନ୍ତି । ଏହି ମଣ୍ଡପ ଉପରେ ଦୁଇଟି କୋଠରୀ-ବିଶିଷ୍ଟ ବିଶ୍ରାମାଗାରଟିଏ ଅଛି । କେତେକ ସାଧୁ ଏବଂ ସନ୍ନ୍ୟାସୀ ଏଠାରେ ରହି ସଂକୀର୍ତ୍ତନ କରନ୍ତି । ଏହା ଉପରେ ବର୍ତ୍ତମାନ ସୂର୍ଯ୍ୟ ମନ୍ଦିର ବିଦ୍ୟମାନ ।

## ବିରଜାଙ୍କର ପର୍ବପର୍ବାଣୀ—

ଆଶ୍ୱିନ ମାସର ଶାରଦୀୟ ଦୁର୍ଗୋତ୍ସବ ଯାଜପୁରର ବିଶେଷତଃ ବିରଜା ମନ୍ଦିରର ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା । ପୁରୀରେ ବିମଳା-ଦେବୀଙ୍କର ଷୋଡ଼ଶ ଦିନ ପୂଜାଭଳି ଏଠାରେ କ୍ଷେତ୍ରାଧୀଶ୍ୱରୀ ବିରଜା ଦେବୀଙ୍କର ମଧ୍ୟ 'ଜିତାଷ୍ଟମୀ (ଦ୍ୱିତୀୟାଷ୍ଟମୀ ବା ଜୀମୂତବାହନ ପୂଜା) ଠାରୁ ଦଶହରା ପର୍ବ ମହାନବମୀ ପର୍ଯ୍ୟନ୍ତ ଷୋଡ଼ଶାହ ବ୍ୟାପିନୀ ପୂଜା ସ୍ୱକଳ୍ପୋକ୍ତ ମତରେ ସୁସମ୍ପନ୍ନ ହୁଏ ।

ବିରଜାଙ୍କ ପୂଜାରେ ନିଯୋଗୀ ବ୍ରାହ୍ମଣମାନଙ୍କର କାର୍ଯ୍ୟ :

କର, ପାଣି ଓ ପାଣିଗ୍ରାହୀ ଉପାଧିଧାରୀ ତିନି ଗୋଷ୍ଠୀୟ ବ୍ରାହ୍ମଣ ଦେବୀଙ୍କ ଷୋଡ଼ଶରାତ୍ରି ପୂଜା କାର୍ଯ୍ୟରେ ନିଯୁକ୍ତ ରହନ୍ତି । ଏହି ଷୋଡ଼ଶ ରାତ୍ରି ପୂଜା କର ଉପାଧିଧାରୀ ବ୍ରାହ୍ମଣମାନେ ପାଳି କ୍ରମରେ ସମ୍ପାଦନ କରନ୍ତି । ପାଣିମାନେ ପୂଜାସାମଗ୍ରୀ, ଚନ୍ଦନ, ପୁଷ୍ପ, ବିଲ୍ୱପତ୍ରାଦି ପୂଜା ସ୍ଥାନରେ ଯୋଗାଇ ଦେଇ ଉତ୍ତର ସାଧକ କାର୍ଯ୍ୟ କରନ୍ତି । ପାଣିଗ୍ରାହୀମାନେ ନୈବେଦ୍ୟ-ପାଇଁ ଅନ୍ନବ୍ୟଞ୍ଜନାଦି ସୁସିଦ୍ଧ କରିବା କାର୍ଯ୍ୟରେ ନିଯୁକ୍ତ ରହନ୍ତି । ବିରଜା-ଙ୍କର ପଣ୍ଡା ପୁରୋଧା ସନ୍ତ ମାଧବ ନିବାସୀ 'ପତିମିଶ୍ର' ଉପାଧିଧାରୀ କୁଳୀନ ବ୍ରାହ୍ମଣ ପଣ୍ଡିତ ତଥା ନରହରିପୁର ଶାସନରେ ବାସ କରୁଥିବା ଏହି ବଂଶର କେତେକ କର୍ମଠ ବ୍ରାହ୍ମଣ ବଂଶାନୁକ୍ରମେ ତନ୍ତ୍ରଧାରୀ (ପୁସ୍ତକାଗୃର୍ଯ୍ୟ ରୂପରେ ପୂଜା ନିର୍ଦ୍ଦେଶକ ଭାବରେ ନିଯୁକ୍ତ ରହି ସୁଗୁରୁରୂପେ ପୂଜାକାର୍ଯ୍ୟ ସମ୍ପାଦନ କରନ୍ତି । ପାଣିମାନେ ମଧ୍ୟ ହୋମ କାର୍ଯ୍ୟରେ 'ଚରୁହୋତା' ଓ 'ସମିଧୋତା' ରୂପରେ ଅଂଶ ଗ୍ରହଣ କରନ୍ତି । ଏହାଙ୍କ ଛଡ଼ା ନାପିତ, ମାଳାକାର, ଜ୍ୟୋତିଷ ବନ୍ଦିଦନ୍ତା ପ୍ରଭୃତି ନିଯୋଗିମାନେ ଯଥାଯଥ ଖଟଣି କାର୍ଯ୍ୟ ସମ୍ପାଦନକରି ପୂଜାର ନିର୍ବିଘ୍ନତା ପ୍ରତିପାଦନ କରନ୍ତି ।

ଏହିପରି ଭାବରେ ଦେବୀଙ୍କର ଷୋଡ଼ଶ ରାତ୍ରି ପୂଜା ନିୟମିତ ଭାବେ ସୁଗୃଢ଼ ରୂପେ ନିର୍ବାହିତ ହୁଏ । ଏତଦ୍‌ଭିନ୍ନ ବାରମାସରେ ପାଣିମାନେ ପାଳି କ୍ରମରେ ପୂଜାକାର୍ଯ୍ୟ ଚଳାନ୍ତି ।

ଷୋଡ଼ଶ ଦିବସ ପୂଜା ପ୍ରସଙ୍ଗରେ କୁହାଯାଇଛି—

"ଆର୍ଦ୍ରାୟାଂ ତୁ ଯଜେଦ୍ଦେବୀଂ ମୂଳାୟାଂ ନବପତ୍ରିକା ।
ପୂର୍ବାଷାଢ଼େବଳିଂ ଦଦ୍ୟାତ୍ ଶ୍ରବଣାୟାଂ ବିସର୍ଜୟେତ୍ ॥" (ଶକ୍ତିପଲ୍ଲବ)

ଅର୍ଥାତ୍ ଯେଉଁଠାରେ ଷୋଡ଼ଶରାତ୍ରି ପୂଜାର ବିଧାନ ଅଛି ସେଠାରେ ଆର୍ଦ୍ରାନକ୍ଷତ୍ରଯୁକ୍ତା କୃଷ୍ଣପକ୍ଷ ଅଷ୍ଟମୀ (ଜିତାଷ୍ଟମୀ) ଠାରୁ ଦେବୀଙ୍କୁ ଆବାହନ କରାଯାଏ । ଏହିପରି ଉତ୍ତରାଷାଢ଼ା ନକ୍ଷତ୍ରଯୁକ୍ତା ଶୁକ୍ଳପକ୍ଷ ମହା—ନବମୀ ପର୍ଯ୍ୟନ୍ତ ଷୋଳଦିନ ପୂଜାକରି ଶ୍ରବଣା ନକ୍ଷତ୍ରଯୁକ୍ତା ଶୁକ୍ଳ ଦଶମୀ ଦିନ ବିଜୟା ଦଶମୀ ବା ଦଶହରା ଦିନ ଦେବୀଙ୍କର ବିଜୟୋତ୍ସବ ସମ୍ପାଦନ

କରାଯାଏ । ପୂର୍ବାଷାଢ଼ା ନକ୍ଷତ୍ରଯୁକ୍ତା ଶୁକ୍ଳାଷ୍ଟମୀ ଅର୍ଥାତ୍ ମହାଷ୍ଟମୀ ରାତ୍ରିରେ ଛାଗ କୁଷ୍ମାଣ୍ଡାଦି ବଳି ଅର୍ପଣ କରାଯାଏ । ଏହା ବିରଜାଙ୍କ ଷୋଡ଼ଶ ଦିନ ପୂଜାପାଇଁ ଉଦ୍ଦିଷ୍ଟ, କିନ୍ତୁ ମୃଣ୍ମୟୀ ଦେବୀ ପୂଜା ବିଷୟରେ 'ମୂଳାୟାଂ ନବ ପତ୍ରିକା' ଅର୍ଥାତ୍ ମୂଳା ନକ୍ଷତ୍ରଯୁକ୍ତା ଶୁକ୍ଳପକ୍ଷ ସପ୍ତମୀ ଦିନ ନବ ପତ୍ରିକାରେ ରମ୍ଭା, କଚୁ, ହରିଦ୍ରା, ଜୟନ୍ତୀ, ବିଲ୍ୱ, ଦାଡ଼ିମ, ଅଶୋକ, ମାଣକ ଓ ଧାନ୍ୟ ଏହିପରି ନଅ ପ୍ରକାର ଗଛକୁ ଏକତ୍ରିତ କରି ରମ୍ଭା (କଦଳୀ) ଗଛରେ ଶ୍ୱେତ ଅପରାଜିତା ଲତାରେ ବାନ୍ଧି ବନ ଦୁର୍ଗାଙ୍କୁ ଆବାହନ କରାଯାଏ । ଏହି ନବ ପତ୍ରିକାକୁ ଶାଢ଼ୀ ପିନ୍ଧାଇ ବଧୂଟି ଭଳି କରି ନଦୀ ବା ପୁଷ୍କରିଣୀକୁ ନେଇ ସ୍ନାନ ବିଧିରେ ସ୍ନାନ ସମ୍ପାଦନ କରାନ୍ତି । ତତ୍ପରେ ଏହାଙ୍କୁ ସ୍ନାନ-ଘାଟରୁ ଆଣି ମୃଣ୍ମୟୀ ଦେବୀଙ୍କର ଦକ୍ଷିଣ ପାର୍ଶ୍ୱରେ ସ୍ୱତନ୍ତ୍ର ପୀଠରେ ସ୍ଥାପନ କରନ୍ତି । ଏହାଙ୍କୁ ବେଙ୍ଗଲୀମାନେ 'କଲାବୁ' ବୋଲି କହନ୍ତି । ତାହାପରେ ଦେବୀଙ୍କର ସପ୍ତମ୍ୟାଦି ପୂଜା ପୁରାଣୋକ୍ତ ବା ତନ୍ତ୍ରୋ ବିଧିରେ କରାଯାଏ । ପୂର୍ବପରି ଶ୍ରବଣାଯୁକ୍ତା ଦଶମୀ ଦିନ ଦେବୀଙ୍କର ବିଜୟୋତ୍ସବ ସମ୍ପାଦିତ ହୁଏ । ଏଣୁ କୁହାଯାଇଛି –

"ମୂଳାୟାଂ ତୁ ଯଜେଦ୍ଦେବୀଂ ଶ୍ରବଣାୟାଂ ବିସର୍ଜୟେତ୍ ॥" (କାଳିକା ପୁରାଣ)

ଆହୁରି ମଧ୍ୟ ପୁଂଦେବତାମାନଙ୍କର ଶୟନ ଉତ୍ଥାପନାଦି ବିଧି ଯେପରି ଶାସ୍ତ୍ର ମତରେ ପାଳିତ ହୁଏ, ସେହିପରି ଦେବୀଙ୍କର ଷୋଡ଼ଶାହ-ବ୍ୟାପିନୀ ପୂଜା ବିଷୟରେ ଦେବୀଙ୍କୁ ଜାଗ୍ରତ କରାଇ ପୂଜା କରିବାର ବିଧି ଉଲ୍ଲେଖ କରାଯାଇଛି ।

"ଉତ୍ତିଷ୍ଠନ୍ତ୍ୟର୍ଚ୍ଚିତା ଦେବୀ ଷୋଡ଼ଶେଽହ୍ନି ନ ରାତ୍ରିତଃ ।
ନ ବର୍ଦ୍ଧୟେତ୍ ସ୍ୱାପଦିନଂ ତିଥିବୃଦ୍ଧୌ କଦାଚନ ॥" ପ. ସ.

ଅର୍ଥାତ୍ ଜିତାଷ୍ଟମୀଠାରୁ ମହାନବମୀ ପର୍ଯ୍ୟନ୍ତ ଷୋଳଦିନ ହେଉ-ଥିବା ଅଷ୍ଟମୀ ଦିନ ଦେବୀଙ୍କୁ ପୂଜାକରି ଜାଗ୍ରତ କରାଇବା ବା ଶଯ୍ୟାରୁ ଉଠାଇବା ଉଚିତ । କିନ୍ତୁ ରାତ୍ରିରେ କେବେହେଲେ ଜାଗ୍ରତ କରାଇବା ବିଧି ନୁହେଁ । ତିଥିବୃଦ୍ଧି ହେଉଥିଲେ ମଧ୍ୟ ସ୍ୱାପଦିନ ଅର୍ଥାତ୍ ଶୋଇବାଦିନ ବଢ଼ାଇବା ଉଚିତ ନୁହେଁ । "ତିଥିବୃଦ୍ଧୌ ଷୋଡ଼ଶଦିନ ସ୍ୱପନ ନିଷେଧାତ୍ ।
ପଞ୍ଚଦଶ ଦିବସମାତ୍ର ସ୍ୱପନମ୍, ଉତ୍ଥାନେ ନୈବାଷ୍ଟମୀ ନିୟମଃ ॥"

"ଯଦାଷ୍ଟମୀଂ ତୁ ସଂପ୍ରାପ୍ୟ ଅସ୍ତଂ ଯାତି ଦିବାକରଃ ।
ତସ୍ମ ଦୁର୍ଗୋତ୍ସବଂ କୁର୍ଯ୍ୟାତ୍ ନ କୁର୍ଯ୍ୟାଦପରେଽହନି ॥" ପଃ ସଃ

+ + + +

ଏହି ବିଗ୍ରହଙ୍କର ତଥା ପ୍ରତିଷ୍ଠିତ ସ୍ଥାୟୀ ଦେବୀଙ୍କର ପୂଜା ବିଧିରେ ପ୍ରସିଦ୍ଧ, କିନ୍ତୁ ମୃଣ୍ମୟୀ ଦେବୀଙ୍କର ବିଧାପୂଜା ପ୍ରସିଦ୍ଧ । ତେଣୁ କୁହାଯାଇଛି ଯେଉଁଦିନ ଦିନସାରା ସପ୍ତମୀ ଥାଇ ସୂର୍ଯ୍ୟାସ୍ତ ବେଳକୁ ଅଷ୍ଟମୀ ପାଉଥାଏ, ସେହିଦିନ ଅର୍ଥାତ୍ ସେହି ଜିତାଷ୍ଟମୀ ଦିନ ଦୁର୍ଗୋତ୍ସବ କରାଯାଏ, କିନ୍ତୁ ପର ଦିବସରେ କରାଯାଏ ନାହିଁ । ମୃଣ୍ମୟୀ ଦେବୀ ପୂଜା ବିଷୟରେ ଯେଉଁ ତିଥିରେ ସୂର୍ଯ୍ୟ ଉଦୟ ହୁଅନ୍ତି ସେହି ତିଥିରେ ପୂଜା କରାଯାଏ । ଯଥା —

"ସପ୍ତମ୍ୟା ମୁଦିତେ ସୂର୍ଯ୍ୟେ ପରତଶ୍ଚାଷ୍ଟମୀ ଯଦି ।
ତସ୍ମ ଦୁର୍ଗୋତ୍ସବଂ କୁର୍ଯ୍ୟାତ୍ ନ କୁର୍ଯ୍ୟାଦପରେଽହନି ॥"

(ନିର୍ଣ୍ଣୟସିନ୍ଧୁ)

ତନ୍ତ୍ରରେ କୁହାଯାଇଛି — 'ସଫଳା ଉଦୟାପୂଜା'

ଅର୍ଥାତ୍ ଯଦି ସୂର୍ଯ୍ୟ ସପ୍ତମୀ ତିଥିରେ ଉଦୟ ହୋଇ ଅଷ୍ଟମୀ ତିଥିରେ ଅସ୍ତ ହୁଅନ୍ତି ତେବେ ସେହିଦିନ ଦୁର୍ଗାପୂଜା କରାଯାଏ, ତାପର-ଦିନ କରାଯାଏ ନାହିଁ । ଏହି ପୂଜାକୁ ପ୍ରତିପଦାଦି କଳ୍ପ (ପୂଜା) ଷଷ୍ଠ୍ୟାଦି କଳ୍ପ (ପୂଜା) ଇତ୍ୟାଦି କୁହାଯାଏ । ମହାଶବ୍ଦ କେଉଁ ତିଥି ପୂର୍ବରେ ଦିଆଯାଏ ?

"ପ୍ରାବୃଟ୍‌କାଲେ ବିଶେଷେ ଆଶ୍ୱିନେୟାଷ୍ଟମୀଷୁ ଚ ।
ମହାଶବ୍ଦୋ ନବମ୍ୟାଂ ଚ ଲୋକେ ଖ୍ୟାତିଂ ଗମିଷ୍ୟତି ॥"

ଅର୍ଥାତ୍ ବର୍ଷା ଋତୁର ଶେଷରେ ଆଶ୍ୱିନମାସରେ ଯେଉଁ ଶୁକ୍ଳା-ଷ୍ଟମୀ ଓ ଶୁକ୍ଳ ନବମୀ ପଡ଼େ, ତାହାର ପୂର୍ବରେ ହିଁ ମହାଶବ୍ଦ ପ୍ରଯୁକ୍ତ ହୋଇ 'ମହାଷ୍ଟମୀ', 'ମହାନବମୀ' ହୁଏ । ଏତଦ୍‌ଭିନ୍ନ ଅନ୍ୟ ତିଥିରେ ମହାଶବ୍ଦ ଦିଆଯାଏ ନାହିଁ । ଅର୍ଥାତ୍ ମହାସପ୍ତମୀ ବା ମହାଦଶମୀ କହିବା ସମ୍ପୂର୍ଣ୍ଣ ଭୁଲ । ତେଣୁ ଚୈତ୍ର, ଆଷାଢ଼, ପୌଷ ମାସରେ ଏହି ପୂଜା ଉପଲକ୍ଷେ ଅଷ୍ଟମୀ, ନବମୀ ତିଥି ପୂର୍ବରେ ମହତ୍ ଶବ୍ଦ ଦିଆଯାଏ ନାହିଁ ।

ତ୍ରୁଷ୍ଟିପ୍ନରେ ଏହି ପୂଜା ଯେଉଁ ତିଥି, ନକ୍ଷତ୍ରାଦିରେ ହୁଏ, ତାହାର ସମୟାନୁବର୍ତ୍ତିତା ପ୍ରତି ଯେପରି ଧ୍ୟାନ ଦିଆଯାଏ ଏବଂ ଯଥା ସମୟରେ ଯେପରି ବଳି, ହୋମ, ସାପୋତ୍ସର୍ଗାଦିର ବ୍ୟବସ୍ଥା ଅଛି, ସେପରି ଅନ୍ୟାନ୍ୟ ଦେବଦେବୀଙ୍କ ପୂଜାରେ ଦେଖିବାକୁ ମିଳେନାହିଁ । ଆହୁରି ମଧ୍ୟ ବିଷ୍ଣୁ, ଶିବଙ୍କ ପରି ଦୁର୍ଗାଦେବୀ ସର୍ବତ୍ର ପୂଜିତା ହୁଅନ୍ତି । ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଶକ୍ତି ତାଙ୍କର ରୂପରେ ପ୍ରକାଶ ପାଇଥାନ୍ତି । ଦେବୀ ଭାଗବତରୁ ଜଣାଯାଏ– ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାଦି ସବୁ ଦେବତା ଏହାଙ୍କୁ ଆରାଧନା କରନ୍ତି । ଉମା, ଗୌରୀ, ସତୀ, ଚଣ୍ଡୀ, ଚାମୁଣ୍ଡା, କାଳୀ, ଅମ୍ବିକାଦି ଚତୁଃଷଷ୍ଟି ଯୋଗିନୀ ରୂପରେ ଏହି ଦୁର୍ଗା ପୂଜା ପା'ନ୍ତି ।

ଭାରତରେ ଆଜକୁ ପ୍ରାୟ ୪୦୦୦ ବର୍ଷ ଧରି ଦୁର୍ଗାପୂଜାର ପ୍ରଚଳନ ଦେଖାଯାଏ । ତୈତ୍ତିରୀୟ, ଆରଣ୍ୟକ, କେନୋପନିଷଦ୍‌ରେ ଦୁର୍ଗାଙ୍କୁ ଉମା ଓ ପାର୍ବତୀ ରୂପରେ ବର୍ଣ୍ଣନା କରାଯାଇଅଛି । ପଣ୍ଡିତ-ମାନଙ୍କ ମତରେ ଖ୍ରୀ: ପୂ: ୫ରୁ ଖ୍ରୀଷ୍ଟାବ୍ଦ ୩୦ ପର୍ଯ୍ୟନ୍ତ ଶକମାନଙ୍କ ରାଜତ୍ୱ କାଳରେ ପ୍ରଚଳିତ ମୁଦ୍ରାରେ ସିଂହବାହିନୀ ଦୁର୍ଗା ବା ଅମ୍ବିକାଙ୍କ ମୂର୍ତ୍ତି ଦେଖାଯାଏ ।

ଭାରତର ପ୍ରତ୍ୟେକ ପୁରପଲ୍ଲୀରେ ଏହି ଦୁର୍ଗାମୂର୍ତ୍ତି ଗ୍ରାମଦେବତା ହୋଇ ମଙ୍ଗଳା, ହିଙ୍ଗୁଳା ପ୍ରଭୃତି ବିଭିନ୍ନ ରୂପରେ ପୂଜା ପାଇଆସୁଛନ୍ତି ।

## ବିରଜାଙ୍କର ଷୋଡ଼ଶ ଦିବସ ପୂଜାକ୍ରମ—

ଜିତାଷ୍ଟମୀ ବା ଜିମୂତବାହନ ପୂଜାଦିନ ରାତ୍ରିରେ ଗଣପତି ଘଟ ସହିତ ଦଶୋଟି ଘଟ ବା କଳଶ ହୋମକୁଣ୍ଡର ଦକ୍ଷିଣ ଭାଗରେ ସ୍ଥାପନ କରାଯାଇ ନଅଟି ଘଟରେ ପୂର୍ବ ବର୍ଣ୍ଣିତ ଶୈଳପୁତ୍ରୀ ପ୍ରଭୃତି ନବ ଦୁର୍ଗାଙ୍କୁ ଶକ୍ତିପଲ୍ଲବ ନାମକ ତନ୍ତ୍ରୋକ୍ତ ବିଧିରେ ଷୋଡ଼ଶୋପଚାରରେ ପୂଜା କରା-ଯାଏ । ଏହିପରି ଭାବରେ ଅଷ୍ଟମୀଠାରୁ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ଦୈନିକ ସକାଳେ ଓ ରାତ୍ରିରେ ଦେବୀଙ୍କ ପୀଠରେ ତଥା ଘାଟପାଖରେ ଦୁଇଥର କରି ଷୋଡଶୋପଚାର ପୂଜା ହୁଏ ।

## ରଥଭ୍ରମଣ—

ମହାପାର୍ବଣରେ ବିରଜାଦେବୀଙ୍କର ରଥାରୋହଣ ତଥା ରଥଭ୍ରମଣ ଯେପରି ହୁଏ ସେପରି ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ଅଦ୍ଭୁତ ରଥଟିଏ ପ୍ରାୟ ପୁରୀ ସୁଭଦ୍ରାଙ୍କ 'ବିଜୟା' ନାମକ ରଥପରି ନିର୍ମିତ ହୁଏ । ଅମାବାସ୍ୟା ଦିନ ରଥାଧିବାସ ହୋଇ ପ୍ରତିପଦ ଦିନ ରଥ ପ୍ରତିଷ୍ଠା କରାଯାଏ ଓ ସେହିଦିନ ବିରଜାଦେବୀଙ୍କର ବିଜେ ପ୍ରତିମା (ପ୍ରତିନିଧି)ଙ୍କୁ ମହାସମାରୋହରେ ରଥାରୋହଣ କରାନ୍ତି । ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ ଏହି ରଥ ମନ୍ଦିରଚତୁଷ୍ପାର୍ଶ୍ୱରେ ନଅଥର ଭ୍ରମଣ ବା ପରିକ୍ରମା କରେ । ରଥାରୋହଣ କରିଥିବା ଦେବୀଙ୍କୁ ଦର୍ଶନ ବିଷୟରେ କୁହାଯାଇଛି —

"ଯେ ପଶ୍ୟନ୍ତି ରଥାରୂଢ଼ାଂ ଭ୍ରମନ୍ତୀ ମନ୍ଦିକାଂ ପୁନଃ ।
ତେ ପଞ୍ଚପାତକୈର୍ମୁକ୍ତା ଯାନ୍ତି ତସ୍ୟାଃ ସ୍ୱରୂପତାମ୍ ॥" କଃ ସଂ

\+ + + +

ରଥାରୂଢ଼ା ଦେବୀଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ପଞ୍ଚଶୂନା ପାତକରୁ ମୁକ୍ତହୋଇ ଦେବୀସାଯୁଜ୍ୟ ଲାଭକରନ୍ତି । ଦେବୀଙ୍କର ରଥାରୋହଣ ଦିନଠାରୁ ପ୍ରତ୍ୟହ ଦିନରେ ଓ ରାତିରେ ବିରଜାଦେବୀଙ୍କ ପୀଠରେ, ଘଟରେ ଓ ରଥରେ ଦେବୀଙ୍କର ଷୋଡ଼ଶୋପଚାର ପୂଜା ତିନି ଯାଗାରେ ହୁଏ ।

## ମହାହୋମ—

ଶୁକ୍ଳ ପଞ୍ଚମୀଠାରୁ ସ୍ୱକଳ୍ପୋକ୍ତ ବିଧିରେ ଅଗ୍ନିସଂସ୍କାରାଦି କର୍ମ କରାଯାଇ ହୋମ ଆରମ୍ଭ ହୁଏ । ଏଠାରେ ଅଗ୍ନି ସଂସ୍କାର ବିଧାନରେ ପାଞ୍ଚୋଟି କଳଶ ସ୍ଥାପନ କରାଯାଏ । ପୂର୍ବ କଳଶରେ ଗଣପତି, ଅଗ୍ନି କୋଣରେ ବ୍ରହ୍ମା, ନୈର୍‌ଋତ କୋଣରେ ଶିବ, ବାୟୁ କୋଣରେ ବିଷ୍ଣୁ ତଥା ଈଶାନ କୋଣରେ ଅନନ୍ତଙ୍କୁ (ବାସୁକିଙ୍କୁ) ପୂଜା କରାଯାଏ । ଏହିପରି ମହାଷ୍ଟମୀ ପର୍ଯ୍ୟନ୍ତ ଯଥାବିଧି ଏକ ହଜାର ସଂଖ୍ୟକ ହୋମ କରାଯାଇ ମହାଷ୍ଟମୀ ନିଶାର୍ଦ୍ଧ ପୂଜା ଶେଷରେ ପୀଠରେ ଗୋଟିଏ ଘଟ ସ୍ଥାପିତ ହୋଇ ତହିଁରେ ଚାମୁଣ୍ଡାଙ୍କୁ ପୂଜା କରାଯାଏ ଓ ଗୋଟିଏ ଛାଗ ବଳି ଦିଆଯାଏ । ଏହିପରି

ଭାବରେ ଷୋଳ କଳଶ ସ୍ଥାପନ କରାଯାଇ ପୂଜା ସାଙ୍ଗ କରାଯାଏ । ସର୍ବ ଶେଷରେ ପୂର୍ଣ୍ଣାହୁତି ଦିଆଯାଏ । ଏହାକୁ ମହାହୋମ କୁହାଯାଏ । ଏହି ହୋମଧୂମ (ଧୂଆଁ)ର ଗୋଟିଏ ବିଶେଷତ୍ୱ ଅଛି । ଲୋକମାନଙ୍କର ଅଟଳ ବିଶ୍ୱାସ—ବନ୍ଧ୍ୟା, କାଳବନ୍ଧ୍ୟା (ଯାହାର ଗୋଟିଏ ସନ୍ତାନ ହୋଇ ଆଉ ହୁଅନ୍ତି ନାହିଁ) ଓ ମୃତବତ୍ସା (ଯେଉଁମାନଙ୍କର ସନ୍ତାନ ଜନ୍ମ ହୋଇ ବଞ୍ଚନ୍ତି ନାହିଁ) ଏହି ପ୍ରକାର ନାରୀମାନେ ଏହି ମହାଷ୍ଟମୀ ଦିନ ଉପବାସ ରହି ମହାହୋମ ସମୟରେ ନଡ଼ିଆ କମ୍ବା ଗୁଆ ହାତରେ ଧରି ହୋମକୁଣ୍ଡ ନିକଟରେ ବସି ଏକାଗ୍ରଚିତ୍ତରେ ଅନ୍ୟମନସ୍କ ନ ହୋଇ ଦେବୀଙ୍କୁ ନିଜର ମନକଥା ଜଣାନ୍ତି, ସେମାନେ ସନ୍ତାନ ଲାଭ କରନ୍ତି । ଏହାର ପ୍ରମାଣ ବହୁଳଭାବରେ ମିଳିଥାଏ ।

ଆହୁରି ମଧ୍ୟ ଏଠାରେ କେତେକ କର୍ମଠ, ଅଭିଜ୍ଞ ବ୍ରାହ୍ମଣ ପଣ୍ଡିତ ଶୁକ୍ଳ ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ ଚଣ୍ଡୀ ମଣ୍ଡପରେ ଚଣ୍ଡୀପାଠ କରୁଥିବାର ଦେଖାଯାଏ । ଏହାକୁ 'ନବରାତ୍ର ଚଣ୍ଡୀପାଠ' କହନ୍ତି । କେହି କେହି ପଞ୍ଚମୀଠାରୁ ବା କେହି ସପ୍ତମୀରେ ବା ମହାଷ୍ଟମୀରେ ଗୋଟିଏ ଦିନ ମାତ୍ର ଚଣ୍ଡୀ ପାଠ କରନ୍ତି । ଚଣ୍ଡୀପାଠ ସମୟର ଦୃଶ୍ୟଟି ଅତି ରମଣୀୟ ହୋଇଥାଏ ।

**ମହିଷବଳି**—ମହାନବମୀ ଦିନ ରଥଭ୍ରମଣପରେ ମହାନିଶାରେ ବିଜେ-ପ୍ରତିମାଙ୍କୁ ରଥରୁ ଅବତରଣ କରାଇ ସୁସଜ୍ଜିତ ବିମାନରେ ସମାରୋହରେ 'ଲକ୍ଷବିନ୍ଧା' ପଡ଼ିଆକୁ ନିଅନ୍ତି । ସମ୍ଭବତଃ ଏଠାରେ ରାଜା ଯଯାତିକେଶରୀଙ୍କର ସୈନ୍ୟ ସାମନ୍ତମାନଙ୍କର ଲକ୍ଷ୍ୟବେଧ ପରୀକ୍ଷା କରାଯାଉଥିଲା । ସେହି ଆଚାର ଅନୁସାରେ ସ୍ମୃତିର ସ୍ମାରକ ସ୍ୱରୂପ ପୂଜକ ବ୍ରାହ୍ମଣ ଗୃହ ଦିଗକୁ ଗୋଟିଏ ଶର ନିକ୍ଷେପ କରେ ।

ଆହୁରି ମଧ୍ୟ ପୂର୍ବେ ରାଜା ମହାରାଜାମାନଙ୍କର ବର୍ଷାଋତୁ ଆରମ୍ଭରୁ ଶରତ କାଳ ପର୍ଯ୍ୟନ୍ତ ଗମନାଗମନର ବାଧାବିଘ୍ନ ହେତୁ ବିଜୟଯାତ୍ରା ସ୍ଥଗିତ ରହୁଥିଲା । ଶରତ କାଳରେ ନିଜ ନିଜର ଖଡ଼ଗଚଣ୍ଡୀଙ୍କୁ ଯଥାବିଧି ପୂଜାକରି ମହାନବମୀ ପୂଜା ଶେଷରେ ବିଜୟୋତ୍ସବ ବିଧି ପାଳନ କରାଯାଉଥିଲା । ଯାହା ପୂର୍ବରୁ ପାଇକମାନଙ୍କର ଲକ୍ଷ୍ୟବେଧ ପରୀକ୍ଷା

କରାଇବା ପାଇଁ ଗୋଟିଏ ପ୍ରତିଯୋଗିତା ମୂଳକ କ୍ରୀଡ଼ା ଆରମ୍ଭ କରି ଯାଉ-ଥିଲି । ଏହାକୁ ପ୍ରଚଳିତ ଭାଷାରେ 'ଲଖବନ୍ଧା' କହନ୍ତି । 'ଯଥା ଦେହେ ତଥା ଦେବେ' ମତ ଅନୁସାରେ ଏଠାରେ ଲଖବନ୍ଧା ଉତ୍ସବ ପାଳିତ ହୁଏ ।

ଲଖବନ୍ଧା ପର୍ବଆର ଉତ୍ସବ ଶେଷ ହେବାପରେ ଦେବୀଙ୍କୁ ଏକ ମୂହାଁକ କନା ବାଦ୍ୟରେ ଘେନି ଆସି ମନ୍ଦିର ମଧ୍ୟରେ ପ୍ରବେଶ କରାନ୍ତି ଓ ଦ୍ୱାରରୁଦ୍ଧ କରନ୍ତି । କାରଣ—"କପାଟଂ ବଦ୍ଧଯେତ୍ ତାବତ୍ ଯାବଦ୍ ବଳିର୍ଭବେତ୍" ଅର୍ଥାତ୍ ଏହି ସମୟରେ ପ୍ରୋକ୍ଷିତ ମହିଷକୁ ବଳି ମଣ୍ଡପରେ ଘାତକ ଗୋଟିଏ ଶାଣିତ 'ଭୈରବୀ' (ମହାଅସିରେ) ଛେଦନ କରେ । ଏହି ବଳି ଶେଷହେବା ପର୍ଯ୍ୟନ୍ତ ଦେବୀଙ୍କ ଦ୍ୱାର ବନ୍ଦ ରହିଥାଏ । ବଳି ଶେଷରେ ସୁମିଷ୍ଟ, ସୁବାସିତ ପ୍ରଧାନକ (ପଣା) ଦେବୀଙ୍କୁ ଅର୍ପଣ କରାଯାଏ । ଏହି ମହିଷବଳି ସମ୍ବନ୍ଧରେ ଅନୁମିତ ହୁଏ ଯେ ମହିଷରୂପୀ ମହାଦାନବ ମହିଷାସୁରକୁ ଆଦ୍ୟାଶକ୍ତି ଦୁର୍ଗା ଶୂଳ ଦ୍ୱାରା ନିହତ କରିଥିବାରୁ ତାହାର ସ୍ମାରକ ସ୍ୱରୂପ ଏହା କରା ଯାଉଅଛି ।

ଏହି ମହିଷବଳି ଦେଖିବାକୁ ହଜାର ହଜାର ଯାତ୍ରୀ ସମବେତ ହୁଅନ୍ତି । ସ୍ଥାନାଭାବରୁ ଲୋକେ ମନ୍ଦିରରେ କେତେକ ବେଢ଼ା ଉପରେ ଚଢି ବଳି ଦେଖନ୍ତି । ଗୋଡ଼ ତଳପାରେ ଯେଉଁମାନଙ୍କର ଗୁଲୁଣିଆ ବା ମାଛୁଆ-ଖିଆ ରୋଗ ହୋଇଥାଏ, ସେମାନେ ଏହି ମହିଷ ରକ୍ତକୁ ମାଡ଼ିଲେ ବା ଲଗାଇଲେ ରୋଗ ଉପଶମ ହେଉଥିବାର ଦେଖାଯାଏ । ଏହାମଧ୍ୟ ଲୋକ-ଙ୍କର ବିଶ୍ୱାସ । ଆହୁରି ମଧ୍ୟ ଏହି ରକ୍ତ ଦ୍ୱାରା ଭୂତ ପ୍ରେତାଦି ପୈଶାଚିକ ଜ୍ୱର ଉପଶମ ହେଉଥିବା ବିଶ୍ୱାସରେ ଲୋକେ ଭକ୍ତିର ସହିତ ଏହି ରକ୍ତକୁ ପତ୍ରରେ ବା ପାତ୍ରରେ ତୋଳି ନଅନ୍ତି ।

ବିଜୟା ଦଶମୀ ଦିନ ଦେବୀଙ୍କର ବିଜୟୋତ୍ସବ ଯଥାଶାସ୍ତ୍ର ପାଳନ କରାଯାଏ । ଏଠାକାର ପ୍ରଥାନୁସାରେ ବ୍ରାହ୍ମଣମାନେ ଦେବୀଙ୍କ ପାଦ ପଦ୍ମରେ ଯବାଙ୍କୁର ଓ ଶମୀପତ୍ର (ଯଅଶମୀ) ନିମ୍ନୋକ୍ତ ମନ୍ତ୍ରପାଠ କରି ଅର୍ପଣ କରନ୍ତି ।

"ଶମୀ ଶମୟତେ ପାପଂ ଶମୀ ଶତ୍ରୁ ବିନାଶିନୀ ।
ଅର୍ଜ୍ଜୁନସ୍ୟ ଧନୁର୍ଦ୍ଧାରୀ ରାମସ୍ୟ ପ୍ରିୟଦର୍ଶିନୀ ॥"

× × × ×

ଏହି ମହାପାବନ ଉପଲକ୍ଷେ ସପ୍ତମୀ ଦିନ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟାଦି ପ୍ରତ୍ୟେକ ଜାତି ସ୍ୱ ସ୍ୱ ବ୍ୟବସାୟ ଗତ ଅସ୍ତ୍ର, ଶସ୍ତ୍ର, ପୋଥିପତ୍ର, ତାଳପତ୍ର, ଖଣ୍ଡା, ତରବାରି ପ୍ରଭୃତିକୁ ସୁସଜ୍ଜିତ ମଣ୍ଡପରେ ପୂଜାକରି ଦଶହରା (ବିଜୟା ଦଶମୀ) ଦିନ ନିଜ ନିଜ ବ୍ୟବସାୟର ଅଭିବୃଦ୍ଧି କଳ୍ପେ ଅସ୍ତ୍ର ଶସ୍ତ୍ର ପ୍ରଭୃତିକୁ ଉଠାଇ କାର୍ଯ୍ୟରେ ଅନୁକୂଳ କରନ୍ତି । ନାପିତମାନେ ପ୍ରତ୍ୟେକ ମାଙ୍ଗଳିକ ଦର୍ପଣ ଦର୍ଶନ କରାନ୍ତି ।

## ବାରମାସ କୃତ୍ୟ—

ମାଘମାସ ମକର ସଂକ୍ରାନ୍ତି ଦିନ ବିରଜାଙ୍କର 'ମକରୋତ୍ସବ' ପାଳିତ ହୁଏ । ବିଧିବଦ୍ଧ ଭାବରେ 'ମକର ଚାଉଳ' ପ୍ରସ୍ତୁତ ଭାଣ୍ଡକୁ ପୂଜକ ବ୍ରାହ୍ମଣ ମୁଣ୍ଡାଇ ମୁଣ୍ଡାଇ ଅନ୍ୟାନ୍ୟ ବ୍ରାହ୍ମଣ, ପୁରୋହିତ ତଥା ମନ୍ଦିର ପରିଚାଳନା ସମିତିର ସମ୍ପାଦକଙ୍କ ଗହଣରେ ବେଦମନ୍ତ୍ର ମଙ୍ଗଳାଷ୍ଟକ ପାଠ ପୂର୍ବକ ମନ୍ଦିର ପରିକ୍ରମା କରି ଦେବୀଙ୍କୁ ଅର୍ପଣ କରାଯାଏ । ତତ୍ପରେ ନୈବେଦ୍ୟ ସେବକ ତଥା ଦର୍ଶକମାନଙ୍କ ମଧ୍ୟରେ ବଣ୍ଟାଯାଏ ।

## ବିରଜା ଜନ୍ମୋତ୍ସବ—

ଏହି ମାଘମାସରେ ତ୍ରିବେଣୀ ଅମାବାସ୍ୟା ଦିନ, ଶ୍ରବଣା ନକ୍ଷତ୍ର-ଯୁକ୍ତ ମକରଚନ୍ଦ୍ରରେ ବିରଜାଙ୍କ ଜନ୍ମୋତ୍ସବ ପାଳିତ ହୁଏ । ନିମ୍ନୋକ୍ତ ଧ୍ୟାନ ଅନୁସାରେ ଦେବୀଙ୍କୁ ସାବିତ୍ରୀ ରୂପରେ ଆବାହନ କରାଯାଏ ।

"ମୁକ୍ତା ବିଦ୍ରୁମ ହେମନୀଳ ଧବଳ ଚ୍ଛାୟୈର୍ମୁଖୈସ୍ତ୍ର୍ୟକ୍ଷଣୈ
ର୍ଯୁକ୍ତାମିନ୍ଦୁ ନିବଦ୍ଧ ରତ୍ନମୁକୁଟାଂ ତତ୍ତ୍ୱାତ୍ମବର୍ଣ୍ଣାତ୍ମିକାମ୍ ।
ସାବିତ୍ରୀଂ ବରଦାଭୟାଙ୍କୁଶ କଶାନ୍ ଶୂଳଂ କପାଳଂ ଗୁଣଂ
ଶଙ୍ଖଂ ଚକ୍ର ମଥାରବିନ୍ଦ ଯୁଗଳଂ ହସ୍ତୈର୍ବହନ୍ତୀଂ ଭଜେ ॥"

(ବ୍ରହ୍ମତନ୍ତ୍ର)

ଅର୍ଥାତ୍ ଦେବୀ ବିରଜାଙ୍କୁ ବ୍ରହ୍ମାଙ୍କର ଶକ୍ତି ସ୍ୱରୂପା 'ସାବିତ୍ରୀ' ବେଶରେ ସଜ୍ଜିତ କରିବା ପାଇଁ ଶୁଭ୍ରବର୍ଣ୍ଣ ସୋଲରେ ବ୍ରହ୍ମାଙ୍କର ମୁଖ ଅନୁସାରେ ଚତୁର୍ମୁଖ ବିଶିଷ୍ଟ ମୂର୍ତ୍ତିଟିଏ ନିର୍ମାଣ କରାଯାଏ । ଚତୁର୍ମୁଖ ମଧ୍ୟରୁ ଗୋଟିଏ ମୁଖ ମୁକ୍ତା ସଦୃଶ ଶୁଭ୍ରବର୍ଣ୍ଣ, ଦ୍ୱିତୀୟ ମୁଖଟି ବିଦ୍ରୁମ ଅର୍ଥାତ୍ ପୋହଳା ପରି ରକ୍ତବର୍ଣ୍ଣ, ତୃତୀୟ ମୁଖଟି ହେମ ଅର୍ଥାତ୍ ସୁବର୍ଣ୍ଣ ସଦୃଶ ପୀତବର୍ଣ୍ଣ, ଚତୁର୍ଥ ମୁଖଟି ନୀଳଧବଳ ଅର୍ଥାତ୍ ଶ୍ୟାମବର୍ଣ୍ଣ କରାଯାଏ । ପ୍ରତ୍ୟେକ ମୁଖରେ ତିନୋଟି ଲେଖାଏଁ ନେତ୍ର । ମସ୍ତକରେ ଅର୍ଦ୍ଧଚନ୍ଦ୍ରଯୁକ୍ତ ରତ୍ନ ମୁକୁଟ ଶୋଭାପାଏ । ପଞ୍ଚାଶତ୍ ବର୍ଣ୍ଣମୟୀ ଏହି ସାବିତ୍ରୀଙ୍କର ଦଶ-ଭୁଜରେ ବର, ଅଭୟ, ଅଙ୍କୁଶ, ଶରଗୁଚ୍ଛ, ତ୍ରିଶୂଳ, କପାଳ, ଗୁଣଯୁକ୍ତ ଧନୁ, ଶଙ୍ଖ, ଚକ୍ର ଓ ପଦ୍ମ ଦିବ୍ୟ ଆୟୁଧ ରୂପରେ ଶୋଭାପାଏ । ଜନ୍ମୋତ୍ସବ ଉପଲକ୍ଷେ ଦେବୀ ହରିଦ୍ରାକ୍ତ ବସ୍ତ୍ର ପରିଧାନ କରନ୍ତି । ସାବିତ୍ରୀ ମନ୍ତ୍ରରେ ଦେବୀଙ୍କୁ ଉପଚାରାଦି ଦ୍ୱାରା ପୂଜା କରାଯାଏ ।

ଜନ୍ମୋତ୍ସବ ଦିନ ବିରଜାଙ୍କୁ କାହିଁକି ସାବିତ୍ରୀ ବେଶରେ ତଥା ସାବିତ୍ରୀ ମନ୍ତ୍ରରେ ପୂଜା କରାଯାଏ, ଏହାର ପ୍ରକୃତ ତତ୍ତ୍ୱ ତାହାଙ୍କ ଜନ୍ମ ରହସ୍ୟରୁ ତଥା ବ୍ରହ୍ମତନ୍ତ୍ରୋକ୍ତ ପ୍ରମାଣରୁ ସ୍ପଷ୍ଟ ପ୍ରତୀତ ହୁଏ । ଯଥା :—

"ମାଘଦର୍ଶେ ସମୁଦ୍‌ଭୂତା ରବିକୋଟି ସମପ୍ରଭା ।
ମାଧବର୍କ୍ଷେ ଚ ମଧ୍ୟାହ୍ନେ ବିରଜା ସା ସନାତନୀ ॥
ଗାୟତ୍ରୀମନ୍ତ୍ରବୀଜେନ ତସ୍ୟାଃ ପୂଜାଂ ସମାଚରେତ୍ ॥"

ଅର୍ଥାତ୍ ବ୍ରହ୍ମକୃତ ଯଜ୍ଞାନଳରୁ ବ୍ରହ୍ମାଙ୍କ ଶକ୍ତି ବ୍ରହ୍ମାଣୀ ବା ସାବିତ୍ରୀ କୋଟି ସୂର୍ଯ୍ୟସମ ପ୍ରଭାମଣ୍ଡଳରେ ସମୁଦ୍‌ଭାସିତ ହୋଇ ମାଘମାସ ଅମାବାସ୍ୟା ତିଥିରେ ମାଧବର୍କ୍ଷ ଅର୍ଥାତ୍ ଶ୍ରବଣାନକ୍ଷତ୍ରଯୁକ୍ତ ମକର ଚନ୍ଦ୍ରରେ ମଧ୍ୟାହ୍ନ ସମୟରେ ଆବିର୍ଭୂତା ହୋଇ ଥିବାରୁ ଏହି ଦିନଟି ଦେବୀଙ୍କର ସ୍ୱନକ୍ଷତ୍ର ଉତ୍ସବ ବା ଜନ୍ମୋତ୍ସବ ପ୍ରତିବର୍ଷ ପାଳିତ ହୋଇ ଆସୁଅଛି । ମନ୍ତ୍ରରାଜ ଗାୟତ୍ରୀ ଦ୍ୱାରା ଏହାଙ୍କର ପୂଜା ସମ୍ପାଦନ କରାଯାଏ ।

ଏହି ଜନ୍ମୋତ୍ସବ ଉପଲକ୍ଷେ ଏଠାରେ ଗୋଟିଏ ମେଳା ମଧ୍ୟ ହୁଏ । ବହୁ ସଂଖ୍ୟକ ସ୍ଥାନୀୟ ଯାତ୍ରୀ ଦେବୀଙ୍କର ସାବିତ୍ରୀ ବେଶ ଦର୍ଶନ କରିବାକୁ ଆସନ୍ତି । ଲୋକ ଗହଳିରେ କଣା ବଜାରେ ସ୍ଥାନଟି ମୁଖରିତ ହୁଏ ।

ଫାଲଗୁନ ମାସ—ଦୋଳ ପୂର୍ଣ୍ଣିମା ଦିନ ଚର୍ଚ୍ଚିକାଙ୍କର ଚଳନ୍ତି ପ୍ରତିମାଙ୍କୁ ସୁସଜ୍ଜିତ ବିମାନରେ ଦୋଳମଣ୍ଡପକୁ ଆଣି ସେଠାରେ ଗୃହଚର୍ଚ୍ଚା ଓ ଅବିର ଖେଳ ସମାହିତ ହେବାପରେ ବ୍ରାହ୍ମଣ, ପୁରୋହିତ ତଥା ଅନ୍ୟାନ୍ୟ ଦର୍ଶକ-ମାନଙ୍କ ଉପସ୍ଥିତିରେ ଦେବୀଙ୍କ ସମ୍ମୁଖରେ ଜ୍ୟୋତିଷ (ଖଡ଼ିରନ୍) ଦଣ୍ଡାପୃ-ମାନ ହୋଇ ଏହି କ୍ଷେତ୍ରରୁ ଚର୍ଚ୍ଚିକାମଣ୍ଡଳ ପଣ୍ଡିତ ସଭାଦ୍ୱାରା ଅନୁମୋଦିତ ହୋଇ ପ୍ରକାଶିତ ହେଉଥିବା 'ଚର୍ଚ୍ଚିକା ପଞ୍ଜିକା' ପାଠକରି ନୂତନ ବର୍ଷର ବାର ମାସର ତିଥିଚକ୍ର ବିବାହ, ବ୍ରତ ପର୍ବପର୍ବାଣି, ପାଳକ ବାର ଗଣିତ ଆୟବ୍ୟୟ, ଯୋଗସ୍ନାନ ଗ୍ରହଣାଦି ଶୁଣାଏ । ଏହି ଉତ୍ସବ ଶେଷରେ ଦେବୀଙ୍କୁ ମନ୍ଦିରକୁ ବିଜେ କରାନ୍ତି ।

ଚୈତ୍ରମାସ—ଚୈତ୍ର ପୂର୍ଣ୍ଣିମା ଦିନ ହୟଗ୍ରୀବ ପୂଜା ଉପଲକ୍ଷେ ରତି, କେଉଟ (କୈବର୍ତ୍ତ)ମାନେ ନିଜ ନିଜ କୌଳିକ ପ୍ରଥା ଅନୁସାରେ ବାଉଁଶ ପାତିଆରେ ତିଆରି କରିଯାଇ ଥିବା 'ଘୋଡ଼ା' ପିଞ୍ଜରାକୁ ରଙ୍ଗିନ ବସ୍ତ୍ରାଳଙ୍କାର ଦ୍ୱାରା ପରିମଣ୍ଡିତ କରି ତହିଁରେ କାଠ ତିଆରି ଘୋଡ଼ାମୁହଁ ଲଗାଇ ଡାକନାମ 'ଚୈତ୍ରଘୋଡ଼ା' ପୂଜା କରି ପୂର୍ଣ୍ଣିମା ବାସିଦିନ ମନ୍ଦିର ସମ୍ମୁଖକୁ ଆଣି ନାଚ କରାନ୍ତି ଓ ଠାକୁରାଣୀଙ୍କ ମାଳାପ୍ରସାଦ ନେଇ ଗାଁ ଗାଁ ବୁଲନ୍ତି ।

ବୈଶାଖ ମାସ—ମହାବିଷୁବ ସଂକ୍ରାନ୍ତି ଦିନ 'ଅଧରପଣା' ନୈବେଦ୍ୟ ଦିଆଯାଏ । ବହୁଲୋକ ଏହି ଦିନ ମାନସିକ ଭୋଗ କରନ୍ତି । ଚନ୍ଦନପୂର୍ଣ୍ଣିମା ଦିନ ଦେବୀଙ୍କୁ ଚନ୍ଦନଚର୍ଚ୍ଚିତ କରାଯାଏ ।

ଜ୍ୟେଷ୍ଠ ମାସ—ସାବିତ୍ରୀ ଅମାବାସ୍ୟା ଦିନ ସ୍ଥାନୀୟ ସାଧ୍ୱୀ ସ୍ତ୍ରୀମାନେ ନିଜ ନିଜ ସ୍ୱାମୀମାନଙ୍କର ଦୀର୍ଘାୟୁ କାମନା କରି ସାବିତ୍ରୀବ୍ରତ ପାଳନ ପୂର୍ବକ ବସ୍ତ୍ରାଳଙ୍କାରାଦି ସହିତ ଦେବୀଙ୍କ ଦର୍ଶନକୁ ଆସନ୍ତି ଏବଂ ସେହି ସାମଗ୍ରୀଗୁଡ଼ିକୁ ଦେବୀଙ୍କ ପାଦ ପଦ୍ମରେ ନିବେଦନ କରି ପରିଧାନ କରନ୍ତି । ଏହି ଦିନ ଦେବୀଙ୍କ ବଡ଼ସିଂହାର ବେଶ ଅଧିକ ଚମତ୍କାରପ୍ରଦ ହୁଏ । ଶଙ୍ଖ, ହୁଳହୁଳି, ବାଦ୍ୟ ଶବ୍ଦରେ ମନ୍ଦିର ବିକମ୍ପିତ ହୁଏ ।

ଆଷାଢ଼ ମାସ—ହରିଶୟନ—ଶ୍ରୀକ୍ଷେତ୍ର ପୁରୀରେ ଶ୍ରୀଜଗନ୍ନାଥ ରଥାରୋହଣ କରି ଗୁଣ୍ଡିଚା ମନ୍ଦିରକୁ ଯାଇ ସେଠାରେ ବାହୁଡ଼ା ଦଶମୀ ପର୍ଯ୍ୟନ୍ତ ରହଣି

କାଳ ମଧ୍ୟରେ ଯେଉଁ ମଙ୍ଗଳବାର ପଡ଼େ, ତାହା 'ତାରଣୀ ମଙ୍ଗଳବାର' ରୂପେ ସମଗ୍ର ଉତ୍କଳର ପୂର୍ବପଲ୍ଲୀରେ ପାଳିତ ହୁଏ । ବିଶେଷତଃ ଏହି ଯାଜପୁରର ନରସିଂହପୁର ଗ୍ରାମରେ ୭ ନଂଶାକର ଚଣ୍ଡୀଙ୍କ ଗୃହ ନିକଟରେ ଦେବୀ ତାରଣୀଙ୍କ ଅଶ୍ମବିଗ୍ରହ ବିଦ୍ୟମାନ । ଏହି ମଙ୍ଗଳବାର ଦିନ ଏହି ଦେବୀଙ୍କ ଉପଲକ୍ଷେ ପୂଜା, ହୋମ, ଚଣ୍ଡୀପାଠ ପ୍ରଭୃତି କାର୍ଯ୍ୟ ଅନୁଷ୍ଠିତ ହୁଏ । ଏହି ଉତ୍ସବାଦି ବଂଶୀ ଉକ୍ତ ପଣ୍ଡା ମହାଶୟଙ୍କ ବଂଶଧରମାନେ ପରମ୍ପରା କ୍ରମେ ବହନ କରନ୍ତି । ଏହି ଉତ୍ସବରେ ସ୍ଥାନୀୟ ବହୁ ନରନାରୀ ସମବେତ ହୁଅନ୍ତି ।

ଏହି ରଥଯାତ୍ରା ସମୟରେ ବହୁତ ବିଦେଶାଗତ ଯାତ୍ରୀ ପୁରୀ ଶ୍ରୀଜଗନ୍ନାଥଙ୍କ ଦର୍ଶନରୁ ଫେରି ଏଠାରେ ଗୟାନାଭିରେ ଶ୍ରାଦ୍ଧ କରନ୍ତି ଏବଂ ଦେବୀଙ୍କ ଦର୍ଶନ ଓ ବୈତରଣୀରେ ସ୍ନାନ, ଗୋଦାନ ମଧ୍ୟ କରନ୍ତି । ମନ୍ଦିରରେ ଦର୍ଶକମାନଙ୍କର ଗହଳି ହୁଏ ।

ଶ୍ରାବଣ — ଚିତାଲାଗି (ଚିତୋଉ) ଅମାବାସ୍ୟା ଦିନ ଚିତୋଉ ପିଠା ଓ ଅନ୍ୟାନ୍ୟ ପିଷ୍ଟକ ନୈବେଦ୍ୟ ଦେବୀଙ୍କୁ ଅର୍ପଣ କରାଯାଏ ।

ଭାଦ୍ର — ଏହି ମାସର ଶୁଭସୁନିଆଁ ବା ସ୍ୱର୍ଣ୍ଣଚ୍ଛେଦନୀ ଦିନ ଦେବୀଙ୍କର ଷୋଡ଼ଶୋପଚାର ହୁଏ ଓ ସ୍ୱର୍ଣ୍ଣଚ୍ଛେଦନୀ ପର୍ବ ପାଳିତ ହୁଏ । ପୁରୀ ଠାକୁର-ରାଜାଙ୍କର ରାଜତ୍ୱକାଳର ପରିଗଣକ 'ଅଙ୍କ' ବା ସାଲ ପରିବର୍ତ୍ତିତ ହୁଏ । ଆଗାମୀ ଶାରଦୀୟ ଦୁର୍ଗୋତ୍ସବ ପାଇଁ 'ବିଲ୍ୱବରଣ' ବା ବିଲ୍ୱାଧିବାସ (ବେଲ-ବରଣୀ) ଉତ୍ସବ ପାଳନ କରାଯାଏ ଓ ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ ।

ଆଶ୍ୱିନ — ଏହି ମାସରେ ଦେବୀଙ୍କର ଷୋଡ଼ଶଦିନ ପୂଜା ବ୍ୟତୀତ କୁମାର-ପୂର୍ଣ୍ଣିମା ଦିନ କୋଜାଗରୀ ଲକ୍ଷ୍ମୀପୂଜା ଉପଲକ୍ଷେ ଖଇ, ନଡ଼ିଆ ନୈବେଦ୍ୟ ଦିଆଯାଏ ଏବଂ ଦେବୀଙ୍କ ସମ୍ମୁଖରେ କୌଡ଼ିଖେଳ (ଦ୍ୟୁତକ୍ରୀଡ଼ା) ହୁଏ । ଏହା ଦେଖିବାକୁ ସ୍ଥାନୀୟ ସ୍ତ୍ରୀଲୋକମାନେ ଓ କୁମାରୀମାନେ ବହୁସଂଖ୍ୟାରେ ଆସନ୍ତି । ଏହି ମାସ ପିତୃ ପକ୍ଷରେ ଇନ୍ଦ୍ରପୂର୍ଣ୍ଣିମା ପରଠାରୁ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ଦୈନିକ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଗୟାନାଭିରେ ଲୋକେ ଶ୍ରାଦ୍ଧ କରନ୍ତି ।

ଏହି ମାସରେ ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା—

ଷୋଡ଼ଶ ରାତି ପୂଜା ଆରମ୍ଭ ଦିନରୁ ମହାନବମୀ ପର୍ଯ୍ୟନ୍ତ ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ଦେବୀଙ୍କର ସ୍ନାନପାଇଁ ସ୍ୱାମୀପୁର କେତେକ ବ୍ରାହ୍ମଣୀ ବୈତରଣୀରୁ ତଥା ସୋମତୀର୍ଥ ପ୍ରଭୃତି ତୀର୍ଥରୁ ଆଣିଥିବା ଜଳଦ୍ୱାରା ଦେବୀଙ୍କର ସ୍ନାନ ସମ୍ପାଦିତ ହୁଏ । ମହାଷ୍ଟମୀ ଦିନ ରାତିରେ ଏହି ସ୍ନାନକୁ ମହାସ୍ନାନ କୁହାଯାଏ । ଏହି ସ୍ନାନସମୟରେ ପୂଜକ ତଥା ସ୍ତ୍ରୀଲୋକମାନଙ୍କ ବ୍ୟତୀତ ଅନ୍ୟ ଲୋକମାନେ ରହନ୍ତି ନାହିଁ । ପ୍ରଥମେ ତେଲ, ହଳଦୀ ପ୍ରଭୃତି ସୁବାସିତ ଅନୁଲେପନ ଦ୍ରବ୍ୟଦ୍ୱାରା ଦେବୀଙ୍କର ଶରୀର ମାର୍ଜନ କରାଯାଇ ସ୍ନାନ ସମ୍ପାଦିତ ହୁଏ । ସ୍ନାନପରେ ଦେବୀଙ୍କୁ ଦିବ୍ୟବସନ ଭୂଷଣରେ ସୁସଜ୍ଜିତ କରି ପୂଜା କରାଯାଏ । ସ୍ନାନକାଳୀନ ଢୋଲ, ମହୁରୀ, ତୁରୀ, ଚେଙ୍ଗୀ ବାଦ୍ୟର ଶ୍ରୁତି ମଧୁର ଧ୍ୱନି ଅତି ମନୋମୁଗ୍‌ଧକର ହୋଇଥାଏ ।

କାର୍ତ୍ତିକ—ଏହିମାସ ଶୁକ୍ଳ ପ୍ରତିପଦ ଠାରୁ ରାସ ପୂର୍ଣ୍ଣିମା ବା କାର୍ତ୍ତିକୀ ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରେ ଦେବୀଙ୍କର ମାଙ୍ଗଳିକ (ମଙ୍ଗଳା) ଆଳତି ହୁଏ, ପୂର୍ଣ୍ଣିମାଦିନ ବହୁଯାତ୍ରୀ ଦର୍ଶନକୁ ଆସନ୍ତି ।

ମାର୍ଗଶିର—ଏହିମାସ ପ୍ରଥମାଷ୍ଟମୀଦିନ ଦେବୀଙ୍କୁ ନୂତନ ବସ୍ତ୍ର ପରିଧାନ କରନ୍ତି ।

ପୌଷ—ଧନୁ ସଂକ୍ରାନ୍ତି ଦିନ 'ଧନୁମୁଆଁ' ଦେବୀଙ୍କୁ ଅର୍ପଣ କରାଯାଏ । ପ୍ରତିଦିନ ଦୁଇଓଳି ଦେବୀଙ୍କୁ ଅନ୍ନବ୍ୟଞ୍ଜନାଦି ନୈବେଦ୍ୟ ଦିଆଯାଏ ।

## କେଉଁ କେଉଁ ଦିନ ବିରଜାଙ୍କ ଦର୍ଶନ ବିଶେଷ ଫଳପ୍ରଦ—

"ଅଷ୍ଟମ୍ୟାଂ ଚ ଚତୁର୍ଦ୍ଦଶ୍ୟାଂ ରାକାୟାଂ ସଂକ୍ରମେ କୁହୌ ।
ମନ୍ତ୍ରମୂର୍ତ୍ତିଂ ପଶ୍ୟତେ ଯସ୍ତୁ ସ୍ନାତ୍ୱା ଚ ବିଧିନା ନରଃ ॥
ତାବତ୍‌କାଳଂ ଚ ମନ୍ତ୍ରମୂର୍ତ୍ତିର୍ମୋଦତେ ନାତ୍ର ସଂଶୟଃ ॥" କ. ସଂ.

+ + + +

"ରଥସ୍ଥାଂ ତାଂ ପ୍ରପଶ୍ୟନ୍ତି ନ ତେ ନରକଗାମିନଃ ।"

+ + + +

"ଭୌମବାରେ ଚତୁର୍ଦ୍ଦଶ୍ୟାଂ ବାରେ ବାଥ ବୃହସ୍ପତୌ ।
ଯଃ ପଶ୍ୟେତ୍ ବିରଜାଂ ଭକ୍ତ୍ୟା ସ ବିଷ୍ଣୁଭକ୍ତିମାପ୍ନୁୟାତ୍ ॥" କଃ ସଂ:

ଅର୍ଥାତ୍ ପ୍ରତି ଅଷ୍ଟମୀରେ, ଚତୁର୍ଦ୍ଦଶୀରେ, ପୂର୍ଣ୍ଣିମାରେ, ସଂକ୍ରାନ୍ତିରେ ଅମାବାସ୍ୟାରେ, ମଙ୍ଗଳବାର ଓ ଗୁରୁବାରରେ ଯେଉଁ ଲୋକମାନେ ଯଥା-ବିଧି ସ୍ନାନକରି ବିରଜାଙ୍କୁ ଦର୍ଶନ କରନ୍ତି ସେମାନେ ଅଭୀଷ୍ଟ ଫଳ ଲାଭ କରନ୍ତି । ଆହୁରି ମଧ୍ୟ ମହାପାର୍ବଣରେ ରଥାରୂଢ଼ା ହୋଇ ଭ୍ରମଣ କରୁଥିବା ବିରଜାଦେବୀଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ପଞ୍ଚଶୂନା ମହାପାତକରୁ ମୁକ୍ତ ହୁଅନ୍ତି ଓ ନରକରୁ ଉଦ୍ଧାର ପାଇ ବ୍ରହ୍ମ ଲୋକ ଲାଭ କରନ୍ତି ।

ପ୍ରତିଦିନ ସନ୍ଧ୍ୟାରେ ବିଶେଷତଃ ଗୁରୁବାରରେ ଦେବୀଙ୍କର ଆଳତି ଦର୍ଶନ ଅତି ଚିତ୍ତାକର୍ଷକ ହୋଇଥାଏ । ବହୁଲୋକ ଏହି ଆଳତି ଦର୍ଶନକୁ ଆସନ୍ତି ।

**ବାଲିଯାତ୍ରା**—କାର୍ତ୍ତିକ ମାସ ବଡ଼ ଏକାଦଶୀ (ଉତ୍ଥାପନ ଏକାଦଶୀ) ଠାରୁ କାର୍ତ୍ତିକପୂର୍ଣ୍ଣିମା ବା ରାସପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚଦିନ ସ୍ଥାନୀୟ ବିଧବା ସଧବା ବ୍ରାହ୍ମଣୀମାନେ କାର୍ତ୍ତିକବ୍ରତ ପାଳନ ପୂର୍ବକ ପ୍ରତିଦିନ ପ୍ରାତଃରେ ଏହି ଦଶାଶ୍ୱମେଧ ଘାଟରେ ଅର୍ଥାତ୍ ବାରୁଣୀ ପଡ଼ିଆରେ 'ରାଧାଦାମୋଦର' 'ଲକ୍ଷ୍ମୀନାରାୟଣ' ତଥା ରାଧାକୃଷ୍ଣ ମୂର୍ତ୍ତିକୁ ବାଲୁକା, (ବାଲିହୁଙ୍କା) ରୂପରେ ନିର୍ମାଣ କରି ପୁଷ୍ପ, ଚନ୍ଦନ, ତୁଳସୀ, ଧୂପ, ଦୀପ, ନୈବେଦ୍ୟାଦିରେ ଆରାଧନା କରନ୍ତି । ପୂର୍ଣ୍ଣିମାଦିନ ବଡ଼ ଆକାରରେ ମେଳାଟିଏ ହୁଏ । ଏହାକୁ ବାଲିମେଳା କହନ୍ତି । ବହୁ ବୈଷ୍ଣବ ସମ୍ପ୍ରଦାୟର ଭକ୍ତବୃନ୍ଦ ସଂକୀର୍ତ୍ତନସହ ଏଠାକୁ ଆସନ୍ତି । ଯାହାରେ ପୁରୁଷଙ୍କ ଅପେକ୍ଷା ସ୍ତ୍ରୀ ଲୋକ-ମାନଙ୍କର ସମାଗମ ବିଶେଷ ଦେଖାଯାଏ । ତତ୍ପର ଦିନ ପ୍ରତିପଦରେ 'ଗୁଡ଼ଖାଇ' କରିବା ପାଇଁ ଅର୍ଥାତ୍ କାର୍ତ୍ତିକବ୍ରତ ପାଇଁ ବର୍ଜନ କରିଥିବା କେତେକ ଖାଦ୍ୟର ପୁନରାବୃତ୍ତି ପାଇଁ ଏଠାରେ ମଧ୍ୟ ଗ୍ରେଟ କାଠର ସମାବେଶ ହୁଏ ।

**ବାଲିଯାତ୍ରା ଇତିବୃତ୍ତ—**

ଆମ ଦେଶରେ ଯେତେ ପ୍ରକାର ପର୍ବପର୍ବାଣୀ, ବ୍ରତ, ଉପବାସ, ମେଳା ମହୋତ୍ସବ ପ୍ରଭୃତି ପାଳିତ ହୋଇ ଆସୁଅଛି, ଏହାର ମୌଳିକ ତତ୍ତ୍ୱ

କରୁନାହିଁ କରୁ ଅନୁଷ୍ଠିତ । ଆଜ କାର୍ତ୍ତିକମାସରେ ନଦୀ, ସରୋବର କୂଳ-ମାନଙ୍କରେ ରମଣୀଗଣ ଏକତ୍ରିତ ହୋଇ ଯେଉଁ ବାଲୁକା ପୂଜା କରୁଅଛନ୍ତି, ଏଥିପାଇଁ ଯାଜପୁର, କଟକ, ପୁରୀ ପ୍ରଭୃତି ସ୍ଥାନମାନଙ୍କରେ ଯେଉଁ ବାଲି-ଯାତ୍ରା ବା ବାଲିମେଳା ଅନୁଷ୍ଠିତ ହେଉଅଛି, ତାହାର ତଥ୍ୟ ନିରୂପଣ କଲେ ଦେଖାଯାଏ, ଏହି ଦେଶର ଦିନେ ଉତ୍କଳୀୟ ସାଧବ ଯୁବକ ବ୍ୟବସାୟୀଗଣ ପାଲଟଣା ନୌକାମାନଙ୍କରେ ସ୍ୱଦେଶଜାତ ଦ୍ରବ୍ୟ ପରିପୂର୍ଣ୍ଣ କରି ବାୟୁର ଅନୁକୂଳ ଗତିରେ ଯାଇ ଦେଶ ବିଦେଶରେ ଅର୍ଥାତ୍ ଜାଭା ବା ଯବଦ୍ୱୀପ, ତାମ୍ରଲିପ୍ତି ବା ତମଲୁକ (ଆଧୁନିକ ନାମ ସିଂହଳ), ସୁବର୍ଣ୍ଣଭୂମି (ଆଧୁନିକ ନାମ ବର୍ମା), କମ୍ବୋଜ (ଆଧୁନିକ ନାମ କାମ୍ବୋଡ଼ିଆ), ସୁମାତ୍ରା, ମଧ୍ୟଦ୍ୱୀପ (ଆଧୁନିକ ନାମ ମୋଲୁକାସ), ବୋର୍ଣ୍ଣିଓ ବା ବାଲିଦ୍ୱୀପ ପ୍ରଭୃତି ଦ୍ୱୀପପୁଞ୍ଜ ମାନଙ୍କରେ ବ୍ୟବସାୟ କରି ସେହି ସେହି ଦେଶଜାତ ଦ୍ରବ୍ୟ ଆମ ଦେଶକୁ ଆଣି ସ୍ୱଦେଶକୁ ସମୃଦ୍ଧିଶାଳୀ କରୁଥିଲେ । ବାଲିଦ୍ୱୀପ ଏହି ଦେଶମାନଙ୍କର ବାଣିଜ୍ୟର କେନ୍ଦ୍ରସ୍ଥଳ ଥିଲା । ସେହି ଦେଶମାନଙ୍କରେ ଅନ୍ୟାନ୍ୟ ଦ୍ରବ୍ୟ ମଧ୍ୟରେ ଦୁର୍ଲଭ 'ପାନ' ଆମ ଦେଶରୁ ନେଇ ମହାର୍ଘମୂଲ୍ୟରେ ସେଠାରେ ବିକ୍ରୟ କରି ସେହି ଦେଶରେ ପ୍ରଚୁର ଭାବରେ ମିଳୁଥିବା 'ଗୁଆ' ସୁଲଭ ମୂଲ୍ୟରେ କିଣି ଆମ ଦେଶକୁ ଆଣୁଥିଲେ । ଏହି ବ୍ୟବସାୟୀମାନେ ପ୍ରତିବର୍ଷ ଆଷାଢ଼ମାସରେ ବିଦେଶକୁ ଯାଇ କାର୍ତ୍ତିକମାସରେ ଫେରୁଥିଲେ । ଏହାର ପ୍ରମାଣ ଏହି 'ଆକାମାଭୈଃ' ପରମ୍ପରାଗତ ଉକ୍ତିରୁ ଜଣାପଡ଼େ । ଅଥାତ୍ ଆ–ଆଷାଢ଼, କା–କାର୍ତ୍ତିକ, ମା ଭୈଃ–ଭୟକର ନାହିଁ । ବ୍ୟବସାୟୀମାନେ ବିଦେଶକୁ ବାଣିଜ୍ୟ କରିବା ପାଇଁ ଯାଉଥିବା ବେଳେ ପରିଜନ ତଥା ଆତ୍ମୀୟସ୍ୱଜନଙ୍କୁ ସାନ୍ତ୍ୱନାବାଣୀ ଶୁଣାଇ କହୁଥିଲେ ଆମ୍ଭେମାନେ ଆଷାଢ଼ରେ ଯାଉଅଛୁ, କାର୍ତ୍ତିକ ମାସରେ ଫେରିବୁ ; ଭୟକର ନାହିଁ । ଏହାପରେ ବାର-ମାସର ଉତାରଣ କରି ବିଦେଶକୁ ଯାଇ ସାଧବମାନେ କାର୍ତ୍ତିକ ପୂର୍ଣ୍ଣିମା ପୂର୍ବରୁ ସହର ଫେରୁଥିଲେ, ତଥାପି କାର୍ତ୍ତିକ ପୂର୍ଣ୍ଣିମା ଦିନଟିକୁ ଅତି ପବିତ୍ର ଦିବସ ବୋଲି ମନେକରି କାର୍ତ୍ତିକ ପୂର୍ଣ୍ଣିମା ପୂର୍ବରାତ୍ର ବ୍ରାହ୍ମ ମୁହୂର୍ତ୍ତରେ ଆମ ଦେଶର ସାଧବ ବୋହୂମାନେ ବିଦେଶରୁ ଫେରୁଥିବା ଧନପୂର୍ଣ୍ଣ ବୋଇତକୁ ଶଙ୍ଖ, ହୁଳହୁଳି ପ୍ରଭୃତି ମାଙ୍ଗଳିକ ଧ୍ୱନିସହ ଦୀପମାଳାରେ ବନ୍ଦାଣ କରି ଧନଗୁଡ଼ିକୁ ବୋଇତରୁ ଅବତାରଣ କରାଉଥିଲେ । ତଦାମାନ୍ତନ

ଦେଶର ପାରିପାର୍ଶ୍ୱିକ ଅବସ୍ଥା ତଥା କାର୍ଯ୍ୟାବଳୀର ସ୍ମାରକ ସ୍ୱରୂପ ଆଜି କଦଳୀବାସୁଙ୍ଗାରେ, ସୋଲ ବା କାଗଜରେ ନୌକା, ଭେଳାମାନ ପ୍ରସ୍ତୁତ କରି ତହିଁରେ ଦୀପମାଳା (ଘିଅବତୀ) ଖଞ୍ଜି ଆମ ଦେଶର 'ପାନ' ସେ ଦେଶର 'ଗୁଆ' ନମୁନା ସ୍ୱରୂପ ରଖି 'ଆକାମାବୈଃ' ଏହି ପୂର୍ବସ୍ମୃତିକୁ ସ୍ମରଣ ପୂର୍ବକ ନୌକାମାନଙ୍କୁ ନଦୀ, ସମୁଦ୍ରରେ ଭସାଇ ଦିଆ ଯାଉଅଛି । ଆହୁରି ମଧ୍ୟ କହନ୍ତି—'ମାସକ ଧର୍ମ ତୋର, ଦିନକ ଧର୍ମ ମୋର' । ଅର୍ଥାତ୍ ହେ ନାବିକଗଣ ! ମାସକ ଧର୍ମ ଅର୍ଥାତ୍ ମାସ ମାସର ବ୍ୟବସାୟ ଗତ କାର୍ଯ୍ୟକଳାପ ତୁମ୍ଭମାନଙ୍କ ଅଧୀନ, କେବଳ ଆଜି ଦିନକର ଧର୍ମ ମୋର ଅର୍ଥାତ୍ ଯାହାକି ଧର୍ମ ମାର୍ଗରେ ନ୍ୟାୟ ଉପାୟରେ ଉପାର୍ଜନ କରି ଧନ ଆଣିଅଛ, ତାହା ମୋର ବା ମୋ ଦେଶର । ଏଠାରେ ଧର୍ମ ଶବ୍ଦର ଅର୍ଥ କାର୍ଯ୍ୟ । ଆଜି ତାହା ପୁଣ୍ୟକର୍ମ ରୂପରେ ପରିଣତ ହୋଇ ଦେଶକୁ ଧର୍ମାଭିମୁଖୀ କରିଲ ଅଛି । ଏହା ଅତି ଗୌରବାବହ କଥା ।

ଆହୁରି ମଧ୍ୟ ସେକାଳରେ ସଂସ୍କୃତ ଭାଷା ମଧ୍ୟ ସାର୍ବଜନୀନ ଭାଷା ରୂପେ ପ୍ରଚଳିତ ଭାଷା ଥିବାର ଏଥିରୁ ଅନୁମିତ ହୁଏ ।

ଆଜି ଏହି ବାଲିଦ୍ୱୀପର ସ୍ମାରକ ଶବ୍ଦ 'ବାଲି' ସହିତ 'ଯାତ୍ରା'କୁ ଏକତ୍ରିତ କରି 'ବାଲିଯାତ୍ରା' ବା ଯାତ୍ରାର ଅପର ନାମ 'ମେଳା' ଶବ୍ଦ ଯୋଗକରି 'ବାଲିମେଳା' ମହୋତ୍ସବ କାର୍ତ୍ତିକ ପୂର୍ଣ୍ଣିମା ଦିନ ମହାସମାରୋହରେ ପାଳିତ ହୋଇ ଆସୁଅଛି ।

ବାଲୁକା ବା ବାଲୁଙ୍କା ପୂଜା—

"ଶୈଳୀ ଦାରୁମୟୀ ଲୌହୀ ଲେଖ୍ୟା ଲେପ୍ୟା ଚ ସୈକତୀ ।
ମନୋମୟୀ ମଣିମୟୀ ମୂର୍ତ୍ତିଃ ସାଷ୍ଟବିଧା ସ୍ମୃତା ॥"

ଏହି କାର୍ତ୍ତିକ ମାସରେ ନଦୀ ପୁଳିନରେ ବାଲିକୁ ଗୋଟିଏ କରି ହୁଙ୍କାପର ଖଞ୍ଜି ସ୍ତ୍ରୀଲୋକମାନେ ଶୁଦ୍ଧପୂତ ମନରେ ହବିଷ୍ୟାନ୍ନ ଭୋଜନପୂର୍ବକ ଅଷ୍ଟବିଧମୂର୍ତ୍ତି ମଧ୍ୟରୁ ଶାସ୍ତ୍ରୀୟ ପ୍ରମାଣାନୁସାରେ ରାଧାଗୋବିନ୍ଦଙ୍କର ସୈକତୀ, ଅର୍ଥାତ୍ ବାଲୁକାମୟୀ ମୂର୍ତ୍ତି ନିର୍ମାଣ କରି ପୂଜା ଆରାଧନା କରନ୍ତି ।

କାରଣ ଏକଦା–"ଭଗବାନପି ତା ରାତ୍ରୀଃ ଶାରଦୋତ୍‌ଫୁଲ୍ଲମଲ୍ଲିକାଃ ।
ବୀକ୍ଷ୍ୟ ରନ୍ତୁଂ ମନଶ୍ଚକ୍ରେ ଯୋଗମାୟା ମୁପାଶ୍ରିତଃ ॥"
(ଶ୍ରୀମଦ୍‌ଭାଗବତ ୧୦, ୩୧, ୧)

\+ \+ \+ \+

ମାୟାମୟ ଭଗବାନ ଶ୍ରୀକୃଷ୍ଣ ଶରତ୍‌କାଳୀନ ପ୍ରଫୁଲ୍ଲ ମଲ୍ଲୀକୁସୁମ-ସଦୃଶ ଶୁଭ୍ର ଜ୍ୟୋସ୍ନାମାଳାର କାର୍ତ୍ତିକପୂର୍ଣ୍ଣିମାର ରାତ୍ରିକୁ ଦେଖି ଯୋଗ–ମାୟାଙ୍କର ଆଶ୍ରୟ ନେଇକରି ଗୋପୀମାନଙ୍କ ସହିତ ରାସକ୍ରୀଡ଼ା ପ୍ରସଙ୍ଗରେ ରମଣ କରିବାକୁ ଇଚ୍ଛୁକ ହୋଇ ଗୋପୀମାନଙ୍କ ସହ ରମଣ କରୁ କରୁ ମାୟାମୟ ମାୟାଚଳରେ ଅନ୍ତର୍ହିତ ହେଲେ । କୃଷ୍ଣୈକାନ୍ତମାନସା ଗୋପୀ-ଗଣ ଶ୍ରୀକୃଷ୍ଣଙ୍କ ବିରହରେ ମି୍ରୟମାଣ ହୋଇ କରୁଣ ରୋଦନ ପୂର୍ବକ ବୃନ୍ଦାବନ ବନ ମଧ୍ୟରେ ଇତସ୍ତତଃ ଅନ୍ୱେଷଣ କରି ହତାଶ ପ୍ରାଣରେ ଯମୁନାନଦୀ ତୀରରେ ଗୋବିନ୍ଦଙ୍କୁ ଡାକି ଡାକି କର୍ପୂର ଧୂଳି ସଦୃଶ ଶୁଭ୍ର ବାଲୁକା ପିଣ୍ଡରେ ଭଗବନ୍ମୂର୍ତ୍ତି ନିର୍ମାଣ କରିଥିଲେ । ସେହି ବାଲୁକାମୟ ମୂର୍ତ୍ତି ନିକ-ଟରେ ଆତ୍ମନିବେଦନ କରି ଗୋପୀମାନଙ୍କୁ ମୂର୍ଚ୍ଛିତ ହେବାର ଦେଖି ଶ୍ରୀକୃଷ୍ଣ ସେମାନଙ୍କ ମଧ୍ୟରେ ଆବିର୍ଭୂତ ହେଲେ । ତତ୍ପରେ ସେହି ରାତ୍ରିକୁ ବ୍ରହ୍ମ-ରାତ୍ରିରେ ପରିଣତ କରି ଶାରଦୀୟ ରାସକ୍ରୀଡାରେ ରାତ୍ରି ଯାପନ କଲେ ।

ଏବେ ଏହାର ନିଦର୍ଶନ ସ୍ୱରୂପ ଭଗବତ୍ ସାନ୍ନିଧ୍ୟ ଲାଭପାଇଁ ଗୋପୀଭାବ ଅବଲମ୍ବନ ପୂର୍ବକ ରମଣୀମାନେ କାର୍ତ୍ତିକ ବ୍ରତ ତଥା ହବିଷାନ୍ନ ଭୋଜନ କରି 'ବାଲୁକା' ପୂଜା କରୁଅଛନ୍ତି । ଏହି ହିଁ ଏହାର ମୌଳିକ ତତ୍ତ୍ୱପରି ଅନୁମିତ ହୁଏ ।

## ରୋହିଣୀ ପ୍ରତିପତ୍ ସ୍ନାନଯୋଗ –

"ରୋହିଣ୍ୟାଂ ପ୍ରତିପଦ୍‌ଯୁକ୍ତା ମାର୍ଗେ ମାସି ସିତେତରା ।
ଗଙ୍ଗାୟାଂ ଯଦି ଲଭ୍ୟେତ ସୂର୍ଯ୍ୟ ଗ୍ରହଶତୈଃ ସମା ॥
ମୁହୂର୍ତ୍ତମପ୍ୟହୋରାତ୍ରେ ଯସ୍ମିନ୍ ଯୁକ୍ତେଽପି ଲଭ୍ୟତେ ।
ରୋହିଣୀ ପ୍ରତିପଜ୍ଜନ୍ୟେ ଅର୍ଘ୍ୟଦାନଂ ମହାଫଳମ୍ ॥

ବୃଶ୍ଚିକସ୍ଥୋ ଯଦା ଭାନୁଃ ପକ୍ଷାନ୍ତୌ ଚ ପ୍ରଜାପତିଃ ।
ଷଷ୍ଠୀ ସନ୍ନିହିତଂ ପୁଣ୍ୟଂ...... ॥" (ପଣ୍ଡିତ ସର୍ବସ୍ୱ)

+ + + +

ମାର୍ଗଶିର ମାସ କୃଷ୍ଣପକ୍ଷ ରେବତୀ ନକ୍ଷତ୍ରଯୁକ୍ତ ପ୍ରତିପଦ ତିଥିରେ ଗଙ୍ଗା ଓ ବୈତରଣୀରେ ସ୍ନାନଯୋଗ ପଡ଼େ । ଏହି ଯୋଗରେ ସ୍ନାନକରି ରେବତୀ ସହିତ ଚନ୍ଦ୍ରଙ୍କୁ ଅର୍ଘ୍ୟଦାନ କଲେ ମହାଫଳ ମିଳେ ତଥା ଶତ-ସୂର୍ଯ୍ୟ ଗ୍ରହଣ ସ୍ନାନର ଫଳ ମଧ୍ୟ ଲଭ ହୁଏ ।

ଚନ୍ଦ୍ରଙ୍କୁ ଅର୍ଘ୍ୟଦେବା ମନ୍ତ୍ର—

"ନମସ୍ତେ ମଣ୍ଡଳ ଧାରାୟ ଶିରେଭରଣାୟ ଧୂର୍ଜଟେଃ ।
ରେବତୀସହିତ ଚନ୍ଦ୍ର ଗୃହାଣାର୍ଘ୍ୟଂ ନମୋଽସ୍ତୁତେ ॥"

## ଜୀମୂତବାହନ ପୂଜା ବା ଜିତାଷ୍ଟମୀ ଓଷା—

ଆଶ୍ୱିନମାସ କୃଷ୍ଣପକ୍ଷ ଅଷ୍ଟମୀ ରାତିରେ ଚତୁଷ୍କୋଣ ବେଦୀର ଚାରିପାଖରେ ପରିଖା ସଦୃଶ ନାଳ ଖୋଳି ବେଦୀ ମଧ୍ୟରେ ଦୀପଦଣ୍ଡୀ ସଦୃଶ କଦଳୀ ବୃକ୍ଷରୋପଣ କରି ଚାରିପାଖରେ ଖୋଳା ହୋଇଥିବା ନାଳରେ ପାଣି ଭର୍ତ୍ତି କରାଯାଏ । ତତ୍ପରେ ସେହି ନାଳରେ ଜୀବନ୍ତ ମାଛ ଛାଡ଼ି ରମ୍ଭା-ବୃକ୍ଷରେ ଉମା ମହେଶ୍ୱରଙ୍କୁ ପୂଜା କରାଯାଏ । ନୈବେଦ୍ୟ ରୂପରେ ଖଜା-ମୁଗ, ବୁଟ, ମଟର, ନଡ଼ିଆ, କଦଳୀ, ମିଠା ପ୍ରଭୃତି ଦିଆଯାଇ ଗୋଟିଏ ବୋଝରେ ଅକଟା (ଅକ୍ଷୁଣ୍ଣ) ଗୋଟା ବୋଇତାଳୁ, କଖାରୁ, କାକୁଡ଼ି, କରମଙ୍ଗା, ନଡ଼ିଆ, ଓଉ, ସାରୁ, କନ୍ଦମୂଳ, କଞ୍ଚାକଦଳୀ, ଆଖୁ ଅଦା ପ୍ରଭୃତି ଫଳ ଫୁଲର ପରିପୂର୍ଣ୍ଣ କରି ନୈବେଦ୍ୟ ଭାବରେ ଅର୍ପଣ କରାଯାଏ । ଏହି ଅକ୍ଷୁଣ୍ଣ ଫଳମୂଳଗୁଡ଼ିକୁ ଅର୍ପଣ କରାଯାଉଥିବାରୁ ଜଣାଯାଏ, ପ୍ରକୃତରେ ଏହା ହର ଗୌରୀଙ୍କ ମାଧ୍ୟମରେ ଜୀମୂତବାହନ ଅର୍ଥାତ୍ ଇନ୍ଦ୍ରଙ୍କୁ ଉପହାର ଦିଆଯାଉ ଅଛି । ଏହା ଲୋକମାନଙ୍କର କୃତଜ୍ଞତାର ପରିଚୟକ । କାରଣ ଯେଉଁ ଇନ୍ଦ୍ରଙ୍କ ପ୍ରସାଦରେ ଯଥାକାଳରେ ସୁବୃଷ୍ଟି ହୋଇ ବୃକ୍ଷଲତା-ମାନଙ୍କରେ ପ୍ରଚୁର ଫଳ ମିଳିଲା, ତାହା ତାଙ୍କୁ ଅର୍ପଣ କରି ଉପଭୋଗ କରିବା ବିଧେୟ ।

ଦୁଗ୍ଧାୟୁ ଓଷା ବା ଜୀମୂତବାହନ ପୂଜା ବିଷୟରେ ଗୋଟିଏ କିମ୍ବଦନ୍ତୀ ଶୁଣାଯାଏ—ଜୀମୂତ ଅର୍ଥ–ମେଘ, ମେଘ ବାହନ ଯାହାର ସେ ଜୀମୂତବାହନ – ଅର୍ଥାତ୍ ଇନ୍ଦ୍ର । ସେଦିନ ରମ୍ଭା, କଚୁ, ହରିଦ୍ରାଦି ନବ ପତ୍ରିକାବାସିନୀ ଦୁର୍ଗାଙ୍କର ଷୋଡ଼ଶବର୍ଷି ପୂଜା ପାଇଁ ରମ୍ଭା ବୃକ୍ଷରେ ଦେବୀଙ୍କୁ ଆବାହନ କରାଯାଏ । ନୈବେଦ୍ୟ ରୂପରେ ବୋଇତାଳୁ, କଖାରୁ ପ୍ରଭୃତି ଅଷ୍ଟନ୍ତି ଫଳ ଗୋଟିଏ ଚଙ୍ଗୁଡ଼ିରେ ଭର୍ତ୍ତି କରି, ପ୍ରଜାମାନେ ରାଜାଙ୍କୁ ଉପହାର ବା ଭେଟି ଦେବାଭଳି ଇନ୍ଦ୍ରଙ୍କୁ ଭେଟି ଦିଅନ୍ତି । କାରଣ, ତାଙ୍କରି କୃପାରୁ ଯଥାକାଳରେ ସୁବୃଷ୍ଟି ହୋଇ ଏହି ସବୁ ଫଳ ଉତ୍ପନ୍ନ ହୋଇଥିବାରୁ ସେହି ଫଳଦାତା ଇନ୍ଦ୍ରଙ୍କୁ ତାହା ଶାସ୍ତ୍ରୀୟମତେ ଅର୍ପଣ କରି ତତ୍ପରଦିନ ସେହି ସମସ୍ତ ଫଳକୁ ଏକତ୍ର ରନ୍ଧନ କରି ଦେବତାଙ୍କୁ ନିବେଦନ କରାଯାଏ । ଏହାକୁ 'ଘାଣ୍ଟ' ତରକାରି କହନ୍ତି । ଦେବଦତ୍ତ ଦ୍ରବ୍ୟ ଦେବତାଙ୍କୁ ଅର୍ପଣ ନକରି ନିଜେ ଉପଭୋଗ କଲେ, ଗୀତା ମତରେ ତାହାକୁ ସ୍ତେନ ବା ଚୋର ବୋଲି କହନ୍ତି ।

ଆହୁରି ମଧ୍ୟ କେତେକ ବୃଦ୍ଧା କହନ୍ତି—ଇନ୍ଦ୍ର ପୂର୍ଣ୍ଣିମାଦିନ ଇନ୍ଦ୍ରଙ୍କୁ ଧର୍ମଦେବତା ଡାକିନେଇ ରାଜ୍ୟପାଳନ ବିଷୟରେ ପଚାରି ବୁଝି ଦିଅନ୍ତି । ଏହି ପୂର୍ଣ୍ଣିମାର ଆଠଦିନ ପରେ ଜୀମୂତା ପଡ଼େ । ତେଣୁ ଲୋକେ ସେହିଦିନ ଏହି ଅଷ୍ଟନ୍ତି ଫଳମାନ ଇନ୍ଦ୍ରଙ୍କୁ ଅର୍ପଣ କରନ୍ତି ଓ ପ୍ରସାଦ ରୂପରେ ତାହା ସାହିପଡ଼ିଶାରେ ବାଣ୍ଟି ନିଜେ ଉପଭୋଗ କରନ୍ତି ।

ଜୀମୂତବାହନ—ଏହା କାଳକ୍ରମେ ଶବ୍ଦର ଅପଭ୍ରଂଶ ହୋଇ 'ଦୂଟ୍‌ବାହନ' ହେବା ଅସମ୍ଭବ ନୁହେଁ । ଏହାକୁ ଦୁଗ୍ଧାୟୁ ବା ଦୀର୍ଘାୟୁ ଓଷା କହିବାର ତାତ୍ପର୍ଯ୍ୟ -'ଉପବାଟ' ଶବ୍ଦର ଅପଭ୍ରଂଶ 'ଓଷା' । ଦୁଗ୍ଧାୟୁ ଓଷା-ଏହି ଓଷା ବା ଉପବାସଠାରୁ ବଳି ଅନ୍ୟ କୌଣସି ଦୀର୍ଘାୟୁ ନିର୍ଜଳା କାଷ୍ଠ ଉପବାସ ନ ଥିବାରୁ ଏହାକୁ ଦୁଗ୍ଧାୟୁ (ଦୀର୍ଘାୟୁ) ଓଷା କହିବା କେତେକ-ଙ୍କର ମତ । ଅନ୍ୟାନ୍ୟ ଉପବାସରେ ଜଳ ଫଳାଦି ପାରଣା କରାଯିବାର ବିଧିବିଧାନ ଅଛି, କିନ୍ତୁ ଏହି ଉପବାସର ପୂର୍ବଦିନ ଏକ ଭକ୍ତ (ଏକାନ୍ନ ବା ଏକବଖତ) ହବିଷାନ୍ନ କରାଯାଏ, ଏହାକୁ ଏଥିପାଇଁ 'ଏକବାଡ଼ି'

ବୋଲି କହନ୍ତି । ଉପବାସ ଦିନ ବୃକ୍ଷ ଜଳ ଫଳାଦି କିଛି ନ ଖାଇ ସମ୍ପୂର୍ଣ୍ଣ ଶୁଷ୍କ ଉପବାସ କରନ୍ତି । ଉଷା ଶେଷରେ ମଧ୍ୟ ଜଳାହାର କରନ୍ତି ନାହିଁ, ଏଣୁ ଏହା କଷ୍ଟସାଧ୍ୟ ଉପବାସ ।

ଏହାକୁ କେତେକ 'ମୂଳାଷ୍ଟମୀ' ବୋଲି କହିଥାନ୍ତି– ଏହାର ତାତ୍ପର୍ଯ୍ୟ ଏହି ଅଷ୍ଟମୀ ହିଁ ଶାରଦୀୟ ଦୁର୍ଗାଦେବୀଙ୍କର ଷୋଡ଼ଶଦିବସ ପୂଜାର ମୂଳ ବା ପ୍ରଥମ ଦିବସ । ଏହା ଅଷ୍ଟମୀ ତିଥିଠାରୁ ଆରମ୍ଭ ହୋଇ ମହା-ନବମୀ ପର୍ଯ୍ୟନ୍ତ ପ୍ରତିଷ୍ଠିତ ଦେବୀଙ୍କର ଷୋଡ଼ଶଦିବସ ପୂଜା (ଷୋଳପୂଜା) ତନ୍ତ୍ରୋକ୍ତ ବା ପୁରାଣୋକ୍ତ ବିଧିରେ କରାଯାଏ । ଏଣୁ ଏହାକୁ 'ମୂଳାଷ୍ଟମୀ' କୁହାଯାଏ । ଆହୁରି ମଧ୍ୟ ଏହାକୁ ଜିତାଷ୍ଟମୀ କହିବାର ତାତ୍ପର୍ଯ୍ୟ—

ସ୍ଥୂଳତଃ ବିଚାର କଲେ ଜଣାଯାଏ–ପୂର୍ବକାଳରେ ରାଜା ସୁରଥ, ସମାଧି ନାମକ ବୈଶ୍ୟ ତଥା ରଘୁପତି ରାମଚନ୍ଦ୍ର ଏହି ଅଷ୍ଟମୀ ତିଥିରେ ଆଦିଶକ୍ତି ଦୁର୍ଗାଙ୍କୁ ଯଥାବିଧି ଆରାଧନା କରି ବିଜୟା ଦଶମୀଦିନ ଜୈତ୍ରଯାତ୍ରା କରି ସ୍ୱ ସ୍ୱ କାର୍ଯ୍ୟରେ ଜୟଯୁକ୍ତ ହୋଇଥିଲେ । ଏଣୁ ଯେ କୌଣସି କାର୍ଯ୍ୟରେ ଏହି ଦେବୀଙ୍କୁ ଆରାଧନା କରି କାର୍ଯ୍ୟ ଆରମ୍ଭ କଲେ କାର୍ଯ୍ୟରେ ବ୍ୟକ୍ତି ଜୟଯୁକ୍ତ ହୁଏ । ଏଣୁ ଏହାକୁ 'ଜିତାଷ୍ଟମୀ' କହିବା ସମୀଚୀନ ।

**ସାତଶାସନ—**

କାନ୍ୟକୁବ୍ଜାଗତ ବ୍ରାହ୍ମଣମାନଙ୍କ ମଧ୍ୟରୁ କେତେକ ଏହି କ୍ଷେତ୍ର ଛାଡ଼ି ଅନ୍ୟତ୍ର ବସତି ସ୍ଥାପନ କରି ରହି ଅଛନ୍ତି । ଯେଉଁମାନେ ଏଠାରେ ଅବସ୍ଥାନ କରି ଅଛନ୍ତି, ସେମାନେ ଗୋଟିଏ ଗୋଟିଏ ପ୍ରତିଷ୍ଠିତ ଶାସନରେ ବାସକରନ୍ତି । ଏଠାରେ ଏହି ପ୍ରତିଷ୍ଠିତ ଶାସନ ସଂଖ୍ୟା ସାତୋଟି, ଯଥା— ୧-ଶ୍ରୀରାମପୁର, ଏଠାରେ ଶ୍ରୀରାମେଶ୍ୱର ଓ ବାମେଶ୍ୱର ନାମରେ ଦୁଇଟି ଶିବମନ୍ଦିର ବିଦ୍ୟମାନ । ୨-ଶୁକପୁର (ସୁଖପୁର) । ୩-ସନ୍ଥମାଧବ । ଏଠାରେ ସନ୍ଥେଶ୍ୱର ଶିବଲିଙ୍ଗ ବିଦ୍ୟମାନ । ୪-ସ୍ୱପ୍ନପୁର, ଏଠାରେ ସ୍ୱପ୍ନେଶ୍ୱର ଶିବ ଅବସ୍ଥିତ । ୫-ନରହରିପୁର, ଏହାର ସାମିଲ ଲକ୍ଷ୍ମୀଧରପୁର ଶାସନ । ୬-ଶିରଆପୁର । ୭-ଅନିରୁଦ୍ଧପୁର । ଏହି ଶାସନୀ ବ୍ରାହ୍ମଣମାନେ ନିତ୍ୟ ଯଜନ ଯାଜନାଦି ଷଟ୍‌କର୍ମ ସମ୍ପାଦନ କରି ବିଦେଶାଗତ ପିତଠିଷ୍ଟ ଶିଷ୍ୟମାନଙ୍କୁ

ବ୍ୟାକରଣ, କାବ୍ୟନାଟକ, ବେଦ ବେଦାନ୍ତ, ନ୍ୟାୟ ମୀମାଂସା ପ୍ରଭୃତି ଶାସ୍ତ୍ର ଅଧ୍ୟୟନ କରାଉଥିଲେ । ଏମାନଙ୍କ ମଧ୍ୟରେ ସ୍ୱପ୍ନପୁର ନିବାସୀ ସ୍ୱନାମ-ଧନ୍ୟ ୬ ଦାମୋଦର ବିଦ୍ୟାବାଗୀଶ, ତଥା ସନ୍ଧମାଧବ ନିବାସୀ ୬ ସଦା-ଶିବ ବିଦ୍ୟାରତ୍ନଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ପୁଣ୍ୟାତ୍ମାମାନେ କାଶୀରୁ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରି ଗଭୀର ଜ୍ଞାନ ଅର୍ଜନ କରିଥିଲେ । କେତେକ ଶାସନୀ ବିଦ୍ୱାନ୍‌ବ୍ରାହ୍ମଣ ନିଜ ଗୃହରେ ଅଗ୍ନିହୋତ୍ର ବିଧି ଅନୁସାରେ ଅଗ୍ନି ଆସାଦନ କରି ନିତ୍ୟ ହୋମ ବଳି ବୈଶ୍ୱଦେବ ପ୍ରଭୃତି ବୈଦିକ କର୍ମ କରୁ-ଥିଲେ । ଏମାନଙ୍କୁ ଅଗ୍ନିହୋତ୍ରୀ ବୋଲାଯାଉଥିଲା । ଏହାଙ୍କ ମଧ୍ୟରେ ନରହରପୁର ଶାସନ ନିବାସୀ ପ୍ରଖ୍ୟାତ ପଣ୍ଡିତ ୬ ଜନାର୍ଦ୍ଦନ ଦାଶ କାବ୍ୟତୀର୍ଥଙ୍କ ପିତାମହ ୬ ଲମ୍ବୋଦର ଅଗ୍ନିହୋତ୍ରୀ, ଏହାଙ୍କର ପୁତ୍ର ୬ ରଘୁନାଥ ଅଗ୍ନିହୋତ୍ରୀ ତଥା ଶୁକପୁର ଶାସନ ନିବାସୀ ୬ କୃଷ୍ଣଚନ୍ଦ୍ର ଅଗ୍ନିହୋତ୍ରୀ, ଏହାଙ୍କ ପୁତ୍ର ୬ ଯୋଗୀନ୍ଦ୍ର ଅଗ୍ନିହୋତ୍ରୀ ସୁପ୍ରସିଦ୍ଧ । ସନ୍ଧ-ମାଧବ ନିବାସୀ ୬ ନୀଳମଣି ଶାସ୍ତ୍ରୀଙ୍କ ନାମ ତଥା ସ୍ୱପ୍ନପୁର ନିବାସୀ ୬ ଦାମୋଦର ବିଦ୍ୟା ବାଗୀଶଙ୍କ ନାମ ତଥା ଚତୁର୍ଭୁଜ ସ୍ୱନାମଧନ୍ୟ ସମଦର୍ଶୀ ପଣ୍ଡିତ ୬ ନୀଳମଣି ମିଶ୍ର ତର୍କାଳଙ୍କାରଙ୍କ ନାମ ସର୍ବଜନ ସୁବିଦିତ । ଏହି ସମଗ୍ର ଶାସନର ବ୍ରାହ୍ମଣମାନେ ଧର୍ମଶାସ୍ତ୍ର ବ୍ୟବସ୍ଥାପକ ରୂପେ ତଥା ବରିହ, ବିରଜାଙ୍କର ପୁରୋଧା ରୂପେ ସନ୍ଧମାଧବ ନିବାସୀ ପଣ୍ଡିତ ୬ ଗୋପୀନାଥ ପତି ମହୋଦୟଙ୍କୁ 'ପତିମିଶ୍ର' ଉପାଧିରେ ଭୂଷିତ କରିଥିଲେ । ଅଦ୍ୟାପି ସେମାନଙ୍କର ବଂଶଧର ପଣ୍ଡିତ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ପତିମିଶ୍ର ସାହିତ୍ୟା-ଚାର୍ଯ୍ୟ ପରମ୍ପରା କ୍ରମେ ଏହି କାର୍ଯ୍ୟ ସୁଚାରୁ ରୂପେ ପାଳନ କରି ଖ୍ୟାତି ଅର୍ଜନ କରୁଅଛନ୍ତି । ଚିରାଚରିତ ପ୍ରଥା ଅନୁସାରେ ପ୍ରତ୍ୟେକ ପତିମିଶ୍ରଙ୍କର ବିୟୋଗର ଏକାଦଶ ଦିବସରେ ସେମାନଙ୍କର ଜ୍ୟେଷ୍ଠ ପୁତ୍ରକୁ 'ପତିମିଶ୍ର' ପଦବୀରେ ବିରଜାଙ୍କର ମାଳା ପ୍ରସାଦ ସହିତ ମସ୍ତକରେ ଶିରୋପା ବନ୍ଧନ ପୂର୍ବକ ଅଭିଷିକ୍ତ କରାଯାଏ । ଏମାନେ ଶ୍ରୁତିସ୍ମୃତି ଶାସ୍ତ୍ର ଅନୁସାରେ ବ୍ୟବସ୍ଥା ଦ୍ୱାରା ସମାଜକୁ ନିୟନ୍ତ୍ରିତ କରନ୍ତି ।

ଏହି ପୂର୍ବୋକ୍ତ ସାତଶାସନ ବ୍ୟତୀତ ବରାହଙ୍କ ସେବକ ବ୍ରାହ୍ମଣ-ମାନେ ବରାହଙ୍କ ନିକଟରେ, ବିରଜାଙ୍କ ସେବକ ବ୍ରାହ୍ମଣମାନେ

କଳଶପୁରରେ ବାସ କରନ୍ତି । ଆହୁରି ମଧ୍ୟ ତିନିଶହଷାଠିଏ ଘର ବୈତରଣୀ ବ୍ରାହ୍ମଣ ବଡ ଶାସନରେ, ପ୍ରଭାକରପୁରରେ, କରଣ ବା ନାରାୟଣପୁରରେ ଜାଗେଶ୍ୱରପୁର, ଗଡ଼ଆପୁର, ଶୀତଳେଶ୍ୱର ପ୍ରଭୃତି ଗ୍ରାମମାନଙ୍କରେ ବାସ କରନ୍ତି । ଏମାନେ ସମଗ୍ର ଭାରତବର୍ଷରୁ ସମାଗତ ଯାତ୍ରୀମାନଙ୍କୁ ବୈତ-ରଣୀରେ ସ୍ନାନ, ତର୍ପଣ, ଦଶାଶ୍ୱମେଧ ଘାଟରେ ଗୋଦାନ କରାଇ ସେମା-ନଙ୍କଠାରୁ ସେହି ଗୋଦାନ ଗ୍ରହଣ କରନ୍ତି ତଥା ଗୟାନାଭିରେ ପିଣ୍ଡଦାନ କରାନ୍ତି । ଏହା ଥିଲା ଏମାନଙ୍କର ଜୀବିକା ଓ ନିତ୍ୟକର୍ମ । ଏଣୁ ଏମାନଙ୍କୁ 'ବୈତରଣୀ' ବ୍ରାହ୍ମଣ କୁହାଯାଏ । ଏହାଙ୍କ ନିକଟରେ ବିଦେଶାଗତ ଯାତ୍ରୀ-ମାନଙ୍କର ନାମ, ଧାମ ତଥା ସେମାନଙ୍କର ପିତୃପୁରୁଷଙ୍କ ନାମ, ଧାମ ଲିଖିତ ଆକାରରେ ତାଳପତ୍ର ପୋଥିରୁ ଓ କାଗଜବନ୍ଧା ବହିମାନଙ୍କରୁ ଦେଖିବାକୁ ମିଳେ । ଏମାନଙ୍କର ଏହି କାଗଜ ବର୍ତ୍ତମାନର ବହି ଆଜିକାଲିକା ବର୍ତ୍ତମାନର ବହିରୁ ସ୍ୱତନ୍ତ୍ର । ସେ କାଗଜ ସ୍ୱତନ୍ତ୍ର ଉପାଦାନରେ ତିଆରି ଓ କାଳି ମଧ୍ୟ ସେମାନେ ସ୍ୱତନ୍ତ୍ର ଭାବେ ତିଆରି କରୁଥିଲେ । ଯଦ୍ଦ୍ୱାରା ବହି ଓ କାଳି ଶହ ଶହ ବର୍ଷ ବିତି ଯାଇଥିଲେ ମଧ୍ୟ ଅକ୍ଷୁଣ୍ଣ ରହିଛି । ଏ ବହି ଦର୍ଶମାପୂ, ଏହା ହେଁସ ଗୁଡ଼ାଭଳି ଗୁଡ଼ାହୋଇ ବନ୍ଧା ହୁଏ । ଗୋଟିଏ ଗୋଟିଏ ବହି ଦୁଇ-କିଲୋ ତିନିକିଲୋ ଓଜନ । ଯାହାହେଉ, ଆଜି ସେହି ବ୍ରାହ୍ମଣମାନଙ୍କର ଘରସଂଖ୍ୟା ଓ ବ୍ୟକ୍ତିସଂଖ୍ୟା ବହୁ ଅଂଶରେ କମିଯାଇ ତିନିଶହ ଷାଠିଏରୁ ପ୍ରାୟ ଶହେ ଘରରୁ କମ୍ ଥିବାର ଅନୁମାନ କରାଯାଏ । ଏହି ବ୍ରାହ୍ମଣମାନେ ବିଦେଶାଗତ ଯାତ୍ରୀମାନଙ୍କୁ କପିଳସଂହିତା ବର୍ଣ୍ଣିତ ବୈତରଣୀ ମାହାତ୍ମ୍ୟ, 'ଗୋଦାନ ମାହାତ୍ମ୍ୟ' ତର୍ପଣ ତଥା ଗୟାନାଭି ଶ୍ରାଦ୍ଧ ମାହାତ୍ମ୍ୟ ପ୍ରଭୃତି ଶୁଣାଇ ଧର୍ମକାର୍ଯ୍ୟ ପ୍ରତି ଅନୁପ୍ରାଣିତ କରାନ୍ତି ।

ବୈତରଣୀ ବ୍ରାହ୍ମଣମାନଙ୍କର କାର୍ଯ୍ୟକଳାପ—

ଏମାନଙ୍କ ମଧ୍ୟରୁ କେତେକ ପଣ୍ଡା ବଙ୍ଗ, ବିହାର, ଡାକା, ପାବନା, ନେପାଳ ପ୍ରଭୃତି ଯାତ୍ରୀମାନଙ୍କ ଦେଶକୁ ଯାଇ ସେମାନଙ୍କୁ ବିରଜାକ୍ଷେତ୍ର ମାହାତ୍ମ୍ୟ, ଗୋଦାନ, ବୈତରଣୀ ସ୍ନାନ ସମ୍ବନ୍ଧରେ କପିଳ ସଂହିତାରୁ ବୁଝାଇ ସେମାନଙ୍କୁ ଧର୍ମ ପ୍ରତି ଅନୁପ୍ରାଣିତ କରି ନେଇଆସନ୍ତି ଅର୍ଥାତ୍ ଦଳେ ଦଳେ ଯାତ୍ରୀଙ୍କୁ ସାଙ୍ଗରେ

ଏମାନଙ୍କର ନବପତ୍ର ଉଷାକର ଆଶନ୍ତି । ଏହି ପଣ୍ଡାଙ୍କୁ 'ସାଥୁଆ' କହନ୍ତି । କୌଣସି ପଣ୍ଡା ଯଦି ଏହାଙ୍କ ସହିତ ମିଶନ୍ତି, ସେମାନଙ୍କୁ 'ମିଳା' କହନ୍ତି । ଯାତ୍ରୀମାନଙ୍କୁ ବୈତରଣୀ ରୋଡ୍‌ରେ ଟ୍ରେନରୁ ଅବତରଣ କରନ୍ତି । କାରଣ ବୈତରଣୀରୋଡ୍ ଠାରୁ ବରଜାକ୍ଷେତ୍ର ୧୪ ମାଇଲ । ଯାଜପୁରରୋଡ୍ ଠାରୁ ୧୮ ମାଇଲ । ସେତେବେଳେ କୌଣସି ଯାନବାହନର ସୁବିଧା ନ ଥିବାରୁ ଶଗଡ଼ରେ, କେତେଙ୍କକୁ ପଦବ୍ରଜରେ ଅଣାନ୍ତି । ଯଦି କେହି ଏତେବାଟ ଆସିବାକୁ ଅନିଚ୍ଛୁକ ହୁଅନ୍ତି, ସେମାନଙ୍କୁ ୩ ମାଇଲ ଦୂରରେ ଥିବା ଆମ ଗ୍ରାମ ନିକଟରେ ବହିଯାଉଥିବା ବୈତରଣୀ ନଦୀରେ ସ୍ନାନ, ଗୋଦାନ ପ୍ରଭୃତି କରନ୍ତି । ଏହି ଘାଟକୁ 'ରାମଘାଟ' କହି ଗାଁ ମୁଣ୍ଡରେ ଥିବା ଠାକୁରାଣୀଙ୍କୁ 'ରାମଚଣ୍ଡୀ', ଗାଁରେ ଥିବା ଶିବଙ୍କୁ ରାମେଶ୍ୱର କହି ଦର୍ଶନ କରନ୍ତି । ଆମ ଗ୍ରାମରୁ ଗାଈ ବା ବାଛୁରୀ ଟ. ୫ ରୁ ଟ ୧୦ ( ପର୍ଯ୍ୟନ୍ତ କିଣି ଯାତ୍ରୀଙ୍କ ଦ୍ୱାରା ତାହାକୁ ଦାନରୂପରେ ଗ୍ରହଣ କରନ୍ତି । ଅନ୍ୟ ପଣ୍ଡା ଯାତ୍ରୀଙ୍କୁ ଫେରାଇ ଆଣିବାପରେ ଜଣେ ଦୁଇଜଣ ପଣ୍ଡା ରହି ଗୋବିକ୍ରେତାଙ୍କୁ ଟଙ୍କା ମୁଣ୍ଡରେ ଗୁରଣା ଦେଇ ଅବଶିଷ୍ଟ ଟଙ୍କା ନେଇଯା'ନ୍ତି । ଯେଉଁମାନେ ବିରଜାକ୍ଷେତ୍ରକୁ ଆସନ୍ତି, ସେମାନଙ୍କୁ ଏଠାରେ ବାସ କରୁଥିବା ପଣ୍ଡାମାନେ ନିଜ ନିଜ ବହିରୁ ଯାତ୍ରୀମାନଙ୍କ ପୂର୍ବପୁରୁଷଙ୍କ ନାମ, ଧାମ ଦସ୍ତଖତ ଦେଖାଇ ନିଜର ଯଜମାନ ବୋଲି ସ୍ୱୀକାର କରାନ୍ତି ଓ ସେମାନଙ୍କୁ ସ୍ନାନ, ଦାନ, ତର୍ପଣ କରାଇ ନାଭିଗୟାରେ ଶ୍ରାଦ୍ଧ କରାନ୍ତି । ଯେଉଁମାନେ ସାଙ୍ଗରେ ଆସିଥାନ୍ତି ସେମାନଙ୍କୁ ଓ ସାଥୁଆମାନଙ୍କୁ କିଛି କିଛି ପଣି ଦିଅନ୍ତି । ନେପାଳୀ ଯାତ୍ରୀଙ୍କ ପାଇଁ ସ୍ୱତନ୍ତ୍ର ପଣ୍ଡା ଥା'ନ୍ତି । ତାହାଙ୍କୁ 'ଲାଲମୋହରିଆ' କହନ୍ତି । ଏମାନେ ନେପାଳ ରାଜାଙ୍କଠାରୁ ଗୋଟିଏ 'ସନନ୍ଦ' ପାଇଥାନ୍ତି । ଏହି ସନନ୍ଦ ଦେଖି ନେପାଳୀମାନେ ନିଜ ପଣ୍ଡାବୋଲି ସ୍ୱୀକାର କରନ୍ତି । ସ୍ନାନପୂର୍ଣ୍ଣିମାଠାରୁ ଶ୍ରାବଣପୂର୍ଣ୍ଣିମା ପର୍ଯ୍ୟନ୍ତ ଏଠାରେ ଯାତ୍ରୀ ଭିଡ଼ ହୁଏ ।

ଆଜି ସେ ପଣ୍ଡା ଆଉ ଯାତ୍ରୀଙ୍କ ଦେଶକୁ ଯାଉ ନାହାନ୍ତି କି ଯାତ୍ରୀଙ୍କର ବିଶେଷ ସମାଗମ ହେଉନାହିଁ । ୧୯୩୪ ମସିହାରେ ମହାତ୍ମା ଗାନ୍ଧୀ ପଦବ୍ରଜରେ ଏଠାକୁ ଆସି ପଣ୍ଡାଙ୍କ ବହିରୁ ନିଜ ପୂର୍ବପୁରୁଷଙ୍କ ଦସ୍ତଖତ ଦେଖି ପଣ୍ଡାଙ୍କୁ ସସମ୍ମାନରେ ଦକ୍ଷିଣା ଦେଇଥିଲେ ।

ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମଧ୍ୟ ଏଠାକୁ ଗସ୍ତ ସମୟରେ ପଣ୍ଡାଙ୍କ ବହିରୁ ପିତାମହଙ୍କ ଦସ୍ତଖତ ଦେଖି ଦକ୍ଷିଣା ଦାନ କଲେ । ସମଗ୍ର ଭାରତରୁ ସମାଗତ ଯାତ୍ରୀମାନଙ୍କର ନାମ ଧାମ ମଧ୍ୟ ଏହାଙ୍କ ବହିରେ ଅଛି । ଏମାନେ ବଙ୍ଗଳା, ହିନ୍ଦୀ, ତେଲୁଗୁ, ନେପାଳୀ, ଗୁଜୁରାଟୀ ଭାଷା ମଧ୍ୟ ଜାଣି ଥିଲେ । ଏହି କ୍ଷେତ୍ରକୁ ଗୋଟିଏ ରେଲ ପଥ ଆସିବା ପାଇଁ ବୈତରଣୀ ନାଭିଗୟା ତୀର୍ଥ ଉନ୍ନୟନ କମିଟି ବହୁଯତ୍ନ କରି ଉଚ୍ଚସ୍ତରୀୟ କର୍ମକର୍ତ୍ତାମାନଙ୍କ ଶୁଭ ଦୃଷ୍ଟି ଆକର୍ଷଣ କରୁଥିଲେ ମଧ୍ୟ ତାହା ଏଯାଏଁ କାର୍ଯ୍ୟକାରୀ ହୋଇପାରି ନାହିଁ ।

## ବୈତରଣୀ ମାହାତ୍ମ୍ୟ—

### ସ୍ନାନ କରିବା ପୂର୍ବରୁ ପ୍ରଣାମ ମନ୍ତ୍ର—

"ବୈତରଣୀ ପାପହନ୍ତ୍ରୀ ଗଙ୍ଗାସ୍ୱଃ ପ୍ରତିରୂପିଣୀ ।
ସ୍ନାନେ ପାପହନ୍ତ୍ରୀ ଦେବୀ ବୈତରଣୀ ନମୋଽସ୍ତୁତେ ॥"
ଅଥ ବୈତରଣୀ ଦେବୀ ନଦୀ ମୁକ୍ତି ପ୍ରଦାୟିନୀ ।
ଗଙ୍ଗା ଦେବୀ ଭୂପୌ ବିପ୍ରାଃ ସତ୍ୟଂ ସତ୍ୟଂ ନସଂଶୟଃ । ୩୦
ବୈତରଣୀ ମହାପୁଣ୍ୟା ଭୁକ୍ତିଦା ମୁକ୍ତିଦା ନୃଣାମ୍ ।
ମହାପାତକକୋଟିଘ୍ନୀ ସକୃଦ୍ଦର୍ଶନମାତ୍ରତଃ ॥ ୩୧ କ. ସଂ.

ଶିବ ପାର୍ବତୀଙ୍କୁ କହିଲେ—ହେ ଦେବି ! ଏହି ବିରଜଃ କ୍ଷେତ୍ରରେ ପ୍ରବାହିତା ବୈତରଣୀ ନଦୀକୁ ବ୍ରାହ୍ମଣମାନେ ସାକ୍ଷାତ୍ ଗଙ୍ଗା ବୋଲି କହି- ଅଛନ୍ତି । ଏହି ନଦୀକୁ ଥରେ ଦର୍ଶନ କଲେ ଭୋଗ, ମୋକ୍ଷ, ଓ ପୁଣ୍ୟ ଫଳ ମିଳିଥାଏ, ତଥା କୋଟି କୋଟି ମହାପାତକ ବିନଷ୍ଟ ହୋଇଥାଏ । ଆହୁରି ମଧ୍ୟ—

'ପ୍ରୟାଗାତ୍ ସାଗରାତ୍ କାଶ୍ୟାଃ ଗଙ୍ଗାୟାଃ ପୁରୁଷୋତ୍ତମାତ୍ ।
ଦୁଃଟଂବୈ ତାରୟେଦ୍ ଯସ୍ମାତ୍ ନାମ୍ନା ବୈତରଣୀ ସ୍ମୃତା ॥"
କ.ସଂ.୬୪ ରେ ଏ ବିଷୟ ବିଶଦ ଭାବରେ ଲୁହାଯାଇଛି ।

**ବୈତରଣୀ ସ୍ନାନ ବିଷୟରେ କପିଳ ସଂହିତା—**

ତତ୍ର ସଙ୍କଳ୍ପମୁଚ୍ଚାର୍ଯ୍ୟ ସକୃତ୍ ସ୍ନାତୋ ନରୋ ଯଦି ।
କୁଳକୋଟି ସମାଯୁକ୍ତୋ ବ୍ରଜେଦ୍ ବିଷ୍ଣୁପୁରଂ ଦ୍ୱିଜଃ ॥ କ.ସଂ.୭୫

ବାୟୁ ପୁରାଣ-ଅ ୪୨—

ଆସ୍ତେ ବୈତରଣୀ ତତ୍ର ସର୍ବପାପହରା ନଦୀ ।
ଯସ୍ୟାଂ ସ୍ନାତ୍ୱା ନରଶ୍ରେଷ୍ଠ ସର୍ବପାପୈଃ ପ୍ରମୁଚ୍ୟତେ ॥

ଏହି ନଦୀରେ ବୈଦିକ ରୀତିରେ ସଂକଳ୍ପ କରି ଲୋକ ଯଦି ଥରେ ସ୍ନାନ କରେ, ତେବେ ସ୍ୱକୀୟ ବଂଶର କୋଟି ସଂଖ୍ୟକ ପିତୃ ପୁରୁଷଙ୍କ ସହିତ ବିଷ୍ଣୁ ଲୋକରେ ବୈକୁଣ୍ଠରେ ଅବସ୍ଥାନ କରେ ।

ଦଶଧା ମଜ୍ଜନଂ କୃତ୍ୱା ନାରାୟଣ ମନୁସ୍ମରନ୍ ।
ତସ୍ମାଦବଶ୍ୟଂ ଲଭତେ ଦଶାଶ୍ୱମେଧଜଂ ଫଳମ୍ ॥ କ: ସଂ: ୭୯

କେହି ଯଦି 'ନାରାୟଣ' ନାମ ସ୍ମରଣ କରି ଦଶବାର ଏହି ନଦୀରେ ବୁଡ଼ ଦିଏ, ତେବେ ସେ ଦଶୋଟି ଅଶ୍ୱମେଧ ଯଜ୍ଞର ଫଳ ଲାଭ କରେ ।

**ମୁଣ୍ଡନ ବିଷୟରେ ବାୟୁ ପୁରାଣ—**

"ମୁଣ୍ଡନଂ ଚୋପବାସଶ୍ଚ ସର୍ବତୀର୍ଥେଷ୍ୱୟଂ ବିଧିଃ ।
ବର୍ଜୟିତ୍ୱା କୁରୁକ୍ଷେତ୍ରଂ ବିଶାଳାଂ ବିରଜାଂ ଗୟାମ୍ ॥"

ଅର୍ଥାତ୍—କୁରୁକ୍ଷେତ୍ର, ବିଶାଳା ( ଉଜ୍ଜୟିନୀ ) ବିରଜାକ୍ଷେତ୍ର ଓ ଗୟାକ୍ଷେତ୍ର ଭିନ୍ନ ଅନ୍ୟାନ୍ୟ ତୀର୍ଥମାନଙ୍କରେ ମୁଣ୍ଡନ (ଲଣ୍ଡା) ହେବା ଓ ଉପବାସ କରିବାର ବିଧି ଅଛି ।

**ତର୍ପଣ ବିଷୟରେ—**

"ତତ୍ର ସ୍ନାତ୍ୱା ଚ ଦେବର୍ଷୀନ୍ ସନ୍ଧ୍ୟୋପାସନପୂର୍ବକମ୍ ।
ସନ୍ତର୍ପ୍ୟ ସୁବିଧାନେନ ତୁଳସୀ କୁଶ ତିଳୋଦକୈଃ ॥
ଅକ୍ଷୟାଂ କୁରୁତେ ତୃପ୍ତିଂ ପିତୃଣାଂ ତୋୟମିଚ୍ଛତାମ୍ ।"

ଏହି ନଦୀରେ ସ୍ନାନ ସନ୍ଧ୍ୟା ସାରି ଯେଉଁ ବ୍ୟକ୍ତି କୁଶ ତୁଳସୀ ତିଳ ସହିତ ଦେବ, ଋଷି ପିତୃଲୋକଙ୍କ ଉଦ୍ଦେଶ୍ୟରେ ତର୍ପଣ କରେ, ସେହି ଜଳ ପାଇବାକୁ ଇଚ୍ଛା କରୁଥିବା ପିତୃଲୋକମାନେ ଅକ୍ଷୟ ତୃପ୍ତି ଲାଭ କରନ୍ତି ।

## ସୁବର୍ଣ୍ଣ ଦାନ ବିଷୟରେ--

"ସ୍ନାତ୍ୱା ପାପବିନାଶାୟ କୁର୍ଯ୍ୟାତ୍ କନକାର୍ପଣମ୍ ।
+ + + + + +
ଅଶକ୍ତୌ ମାଷକଂ କୁର୍ଯ୍ୟାତ୍ ସ୍ୱସ୍ୟ ଶକ୍ତ୍ୟନୁସାରତଃ ॥":

ବୈତରଣୀ ସ୍ନାନପରେ ପାପ ବିନାଶ ପାଇଁ ବ୍ରାହ୍ମଣଙ୍କୁ ପ୍ରଚୁର ହେଉ, ମଷାଏ ବା ଧାନେ ହେଉ, ସୁବର୍ଣ୍ଣ ଦାନ କରିବା ଉଚିତ ।

## ଗୋଦାନ ମାହାତ୍ମ୍ୟ--

"କନବ୍ରିତ ତତ୍ର ଯୋ ଭକ୍ତ୍ୟା ଗୋଦାନଂ ବିଧିପୂର୍ବକମ୍ ।
ଦଶାଶ୍ୱମେଧିକେ ବିପ୍ରାଃ ବୈତରଣ୍ୟାଂ ପ୍ରଯତ୍ନତଃ ॥"

ଯେଉଁ ବ୍ୟକ୍ତି ଭକ୍ତି, ଶ୍ରଦ୍ଧାରେ ସହିତ ଶାସ୍ତ୍ର ବିଧି ଅନୁସାରେ ଏହି ବୈତରଣୀର ଦଶାଶ୍ୱମେଧ ଘାଟରେ ଯତ୍ନ ସହକାରେ ଧେନୁ ଦାନ କରେ, ତେବେ ସେହି ବ୍ୟକ୍ତି-"ତପ୍ତାଂ ବୈତରଣୀଂ ଘୋରଽପି ଯମଦ୍ୱାରେ ନପଶ୍ୟନ୍ତି" ଯମାଳୟରେ ଥିବା ତପ୍ତତୋୟା ବୈତରଣୀ ନଦୀକୁ ଦର୍ଶନ କରେ ନାହିଁ । ଏହି ଗୋଦାନକୁ ବୈତରଣୀ ଦାନ କୁହାଯାଏ । ବାୟୁ ପୁରାଣ ବର୍ଣ୍ଣିତ-- ଯାଽସ୍ମେ ବୈତରଣୀ ନାମ ନଦୀ ତ୍ରୈଲୋକ୍ୟବିଶ୍ରୁତା । ସାଽବତୀର୍ଣ୍ଣା ଗୟାକ୍ଷେତ୍ରେ ପିତୃଣାଂ ତାରଣାୟ ବୈ । ସ୍ନାତୋ ଗୋଦୋ ବୈତରଣ୍ୟାଂ ତ୍ରିଃସପ୍ତ କୁଳମୁଦ୍ଧରେତ୍ । (ବାୟୁ ପୁରାଣ) ଅର୍ଥାତ୍ ତ୍ରିଲୋକ ବିଖ୍ୟାତ ଯେଉଁ ବୈତରଣୀ ଅଛି, ସେହିନଦୀ ଗୟା କ୍ଷେତ୍ରରେ ପିତୃ ପୁରୁଷମାନଙ୍କୁ ଉଦ୍ଧାର କରିବା ପାଇଁ ଅବତୀର୍ଣ୍ଣ ହୋଇ ଅଛି । ସେହି ନଦୀରେ ଯେଉଁମାନେ ସ୍ନାନ କରି ଗୋଦାନ କରନ୍ତି, ସେମାନେ ଏକୋଇଶ ପୁରୁଷଙ୍କୁ ଉଦ୍ଧାର କରନ୍ତି । ଦଶବର୍ଣ୍ଣ ଗୋଦାନ ବିଷୟରେ କୁହାଯାଇଛି-

ଦଶବର୍ଣ୍ଣାସ୍ତୁ ଗାସ୍ତତ୍ର ପ୍ରଦଦ୍ୟାତ୍ ଭକ୍ତି ସଂଯୁତଃ
ଶ୍ୱେତା ଚ ଧୂମ୍ରା କାଳାକ୍ଷୀ କୃଷ୍ଣାଙ୍ଗପାଟଳୀ ତଥା ।
ଧବଳୀ ଚୈବ ରକ୍ତା ଚ ପୀତବର୍ଣ୍ଣା ଚ ଶ୍ୟାମଳା ।
ଝଳକା କପିଳା ଚୈବ ଦଶବର୍ଣ୍ଣାଃ ପ୍ରକୀର୍ତ୍ତିତାଃ ॥" କ:ଖ: ୩୯-୪୦

ଅର୍ଥାତ୍ ଶ୍ୱେତ, ଧୂମ୍ରବର୍ଣ୍ଣା, କୃଷ୍ଣାକ୍ଷୀ, କୃଷ୍ଣବର୍ଣ୍ଣା, ପାଟଳବର୍ଣ୍ଣା, ଧବଳବର୍ଣ୍ଣା, ରକ୍ତବର୍ଣ୍ଣା, ପୀତବର୍ଣ୍ଣା, ଶ୍ୟାମଳବର୍ଣ୍ଣା, ନୀଳବର୍ଣ୍ଣା, କପିଳ ବର୍ଣ୍ଣା, (ତାମ୍ର ବର୍ଣ୍ଣା) ଏହି ଦଶ ପ୍ରକାର ଧେନୁ ମଧ୍ୟରୁ କୌଣସି ଗୋଟିଏ ପ୍ରକାର ଧେନୁ ଦାନ କରିବା ବିଧେୟ ।

## କେଉଁ ଧେନୁ ଦାନରେ କେଉଁ ଫଳ ମିଳେ—

"ଶ୍ୱେତାୟାଂ ଚୈବ ଦତ୍ତାୟାଂ ଭଗବଦ୍ ଭକ୍ତିମାନ୍ ଭବେତ୍ ।
କୃଷ୍ଣାଂ ଦତ୍ତ୍ୱା ଲଭେଦ୍ଭୋଗାନ୍ ପରତ୍ରେହ ଚ ମାନବଃ ।
ପାଟଲ୍ୟା ଦୁର୍ଲ୍ଲଭାନ୍ ଲୋକାନ୍ ଧବଳୀ କୁଳବର୍ଦ୍ଧିନୀ ।
ଶ୍ୟାମଳା ପୁତ୍ରଦା ପ୍ରୋକ୍ତା ନୀଳା ଧର୍ମପ୍ରଦା ମତା ॥
ଦତ୍ତ୍ୱା ବିପ୍ରାୟ କପିଳାଂ ସର୍ବପାପୈଃ ପ୍ରମୁଚ୍ୟତେ ।" କ: ସଂ: ୪୧-୪୨

\+ \+ \+ \+ \+ \+

ବୈତରଣୀରେ ଗୋଦାନ ଓ ଗୟାନାଭିରେ ପିଣ୍ଡଦାନ ବିଷୟରେ ବର୍ଣ୍ଣିତ—

"ବୈତରଣ୍ୟାଂ ଚ ଗୋଦାନଂ ଗୟାୟାଂ ପିଣ୍ଡପାତନମ୍ ।
ବାରାଣସ୍ୟାଂ ତନୁଂତ୍ୟକ୍ତ୍ୱା ନ ଭୂୟୋ ଭୁବି ଜାୟତେ ॥" କ.ସ.୭୦

ଯେଉଁ ବ୍ୟକ୍ତି ବୈତରଣୀରେ ସ୍ନାନ କରି ଦଶାଶ୍ୱମେଧ ଘାଟରେ ଗୋଦାନ କରେ, ଗୟାନାଭିରେ ପିତୃପୁରୁଷଙ୍କୁ ତିଳ ମିଶ୍ରିତ ସକ୍ତୁ (ଛତୁଆ) ପିଣ୍ଡ ଦାନ କରେ, ତଥା ବାରାଣସୀ (କାଶୀ)ରେ ଦେହ ତ୍ୟାଗ କରେ, ସେହି ବ୍ୟକ୍ତି ସଂସାରରେ ପୁନର୍ଜନ୍ମ ଲାଭ ନ କରି ମୁକ୍ତି ଲାଭ କରେ ।

ଅଳଂକୃତା ଧେନୁ ଦାନ ବିଷୟରେ କୁହାଯାଇଛି—

"ସ୍ୱର୍ଣ୍ଣଶୃଙ୍ଗୀଂ ରୌପ୍ୟଖୁରାଂ ତାମ୍ର ପୃଷ୍ଠାଂ ପୟସ୍ୱିନୀମ୍ ।
ଘଣ୍ଟା ଚାମର ବସ୍ତ୍ରାଦ୍ୟଳଂକୃତାଂ· ରୌପ୍ୟଚନ୍ଦ୍ରକାମ୍ ॥
ସାଳଙ୍କାରାଂ ସବତ୍ସାଂ ଚ ସ୍ୱର୍ଣ୍ଣଦୋହନପାର୍ଶ୍ୱିକାମ୍ ।
ସକ୍ଷୀର ପାନପାତ୍ରାଂ ହି ଦଦ୍ୟାଦ୍ ଭକ୍ତ୍ୟା ସଦକ୍ଷିଣାମ୍ ।"

ଏହିପରି ଅଳଙ୍କାର ଦ୍ୱାରା ମଣ୍ଡିତ କରି ଭକ୍ତିର ସହିତ ସବତ୍ସା ଧେନୁ ଦାନ କଲେ ଓ ଉପଯୁକ୍ତ ଦକ୍ଷିଣା ଦେଲେ ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ ।

"ଦାନସ୍ୟ ପୁରୁଷସ୍ୟୈବ ପତ୍ନୀ ରୂପା ହ୍ୟ ଦକ୍ଷିଣା ।
ସୂଯୁକ୍ତେ ସର୍ବ କର୍ମାଣି ପତିଯୁକ୍ତାଃ ସ୍ତ୍ରିୟୋ ଯଥା ॥"

ଦାନ ରୂପକ ପୁରୁଷର ଦକ୍ଷିଣା ରୂପିଣୀ ପତ୍ନୀ ପତିଯୁକ୍ତା ସ୍ତ୍ରୀ ପରି ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରେ ।

## ଦାନର ଅଯୋଗ୍ୟା ଧେନୁ--

"ବନ୍ଧ୍ୟା ସରୋଗା କ୍ଷୀଣାଙ୍ଗୀ ତଥାଽଦୃଶ୍ୟା ମୃତପ୍ରଜା ।
ଅନ୍ୟାୟ୍ୟଧନଲବ୍ଧା ଯା ସା ନ ଦେୟା କଦାଚନ ॥"

ବାଞ୍ଝ, ରୋଗିଣୀ, ବୁଢ଼ି, ଦେଖିବାକୁ ଅସୁନ୍ଦର, ଯାହାର ଛୁଆ ବଞ୍ଚୁ ନଥାନ୍ତି ତଥା ଅନ୍ୟାୟରେ ଆଣିଥିବା ଧେନୁକୁ ଦାନ କରିବା ଉଚିତ ନୁହେଁ । ଏପରି ଧେନୁ ଦାନରେ ପୁଣ୍ୟ ପରିବର୍ତ୍ତେ ଲୋକ ପାପଭାଗୀ ହୋଇଥାଏ ।

## ବିରଜାଙ୍କ ପ୍ରଦକ୍ଷିଣ ବିଧି –

ପ୍ରଦକ୍ଷିଣ ଅର୍ଥାତ୍ ଦେବଦେବୀଙ୍କୁ ନିଜ ଦକ୍ଷିଣ ଭାଗରେ ରଖି ପରିକ୍ରମା ବା ପରିଭ୍ରମଣ କରିବାର ନାମ ପ୍ରଦକ୍ଷିଣ । କେଉଁ ଦେବତାଙ୍କୁ କେତେବାର ପ୍ରଦକ୍ଷିଣ କରଯାଏ—

"ଏକା ଚଣ୍ଡ୍ୟାଂ ରବେଃ ସପ୍ତ ତ୍ରୀଣି କୁର୍ଯ୍ୟାତ୍ ବିନାୟକେ ।
ଚତ୍ୱାରି କେଶବସ୍ୟ ସ୍ୟାତ୍ ଶିବସ୍ୟାର୍ଦ୍ଧଂ ପ୍ରଦକ୍ଷିଣମ୍ ॥"

କାଳୀ, ଦୁର୍ଗା, ବିରଜା ପ୍ରଭୃତି ଦେବୀଙ୍କୁ ଥରେ, ସୂର୍ଯ୍ୟଙ୍କୁ ସାତବାର, ଗଣେଶଙ୍କୁ ତିନବାର, ବିଷ୍ଣୁଙ୍କୁ ଚାରିବାର ଓ ଶିବଙ୍କୁ ଅର୍ଦ୍ଧ ଅର୍ଥାତ୍—ଅଗ୍ନିକୋଣରୁ ବାୟୁକୋଣ ପର୍ଯ୍ୟନ୍ତ ପ୍ରଦକ୍ଷିଣ କରାଯାଏ ।

## ପ୍ରଦକ୍ଷିଣ ମନ୍ତ୍ର—

"ଯାନି କାନି ଚ ପାପାନି ଜନ୍ମାନ୍ତରକୃତାନି ଚ ।
ତାନି ତାନି ପ୍ରଣଶ୍ୟନ୍ତି ପ୍ରଦକ୍ଷିଣ ପଦେ ପଦେ ॥"

ଏହି ମନ୍ତ୍ର ପଢ଼ି ବିରଜାଙ୍କୁ ପ୍ରଦକ୍ଷିଣ କରିବା ବେଳେ ବଳିମଣ୍ଡପର ଦକ୍ଷିଣ ଦ୍ୱାର ବାମରେ ଅଗ୍ନିକୋଣରେ ଥିବା ସିଦ୍ଧେଶ୍ୱରଙ୍କୁ ଦର୍ଶନ କରି ଦକ୍ଷିଣ

ଦ୍ୱାରରେ ଯାଇ ମନ୍ଦିରର ଦକ୍ଷିଣ ଭାଗରେ ଥିବା ଗଣେଶଙ୍କୁ, ମନ୍ଦିରର ହନୁମାନଙ୍କୁ, ପଶ୍ଚିମରେ ଏକପାଦ ଭୈରବଙ୍କୁ, ଉତ୍ତର ଭାଗରେ ଥିବା କାର୍ତ୍ତିକେୟଙ୍କୁ, ତତ୍ ପରେ ଈଶାନେଶ୍ୱରଙ୍କୁ ଦର୍ଶନ କରି ଦକ୍ଷିଣ ମୁଖ ହୋଇ ଆସିବାବେଳେ ନାଭିଗୟା ମନ୍ଦିର ମଧ୍ୟରେ ନାଭି କୁଣ୍ଡ, ଗଦାଧର ଯୂପେଶ୍ୱରଙ୍କୁ ଦର୍ଶନ ପୂର୍ବକ ଉତ୍ତର ଦ୍ୱାର ବାଟରେ ଆସି ସିଂହ ନିକଟରେ ଦେବୀଙ୍କୁ ପ୍ରଣାମ କରି ପ୍ରଦକ୍ଷିଣ ସାଙ୍ଗ କରାଯାଏ ।

**ବ୍ରହ୍ମାକୁଣ୍ଡ—**

" କ୍ରୋଡ଼ କ୍ରୋଶେତ ବରଜା ଦେବୀ ବ୍ରହ୍ମ ପ୍ରତିଷ୍ଠିତା ।
ତତ୍ ସନ୍ନିଧୌ ବ୍ରହ୍ମକୁଣ୍ଡଂ ବ୍ରହ୍ମଣା ସୁପ୍ରତିଷ୍ଠିତମ୍ ॥ କ.ସଂ.

'କ୍ରୋଡ଼' ଅର୍ଥାତ୍ ବରାହଙ୍କ ଠାରୁ ଏକକ୍ରୋଶ ଦୂରରେ ବ୍ରହ୍ମାଙ୍କ ଦ୍ୱାରା ସୁପ୍ରତିଷ୍ଠିତା ବିରଜାଦେବୀ ବିଦ୍ୟମାନା । ଏହାଙ୍କ ପୃଷ୍ଠଭାଗରେ ବ୍ରହ୍ମାଙ୍କ ପ୍ରତିଷ୍ଠିତ ବ୍ରହ୍ମକୁଣ୍ଡ ଦେଖାଯାଏ । କିମ୍ବଦନ୍ତୀରୁ ଜଣାଯାଏ—ବ୍ରହ୍ମା ଏଠାରେ ଯଜ୍ଞ ସମ୍ପାଦନ କରିବା ସମୟରେ ଏହି କୁଣ୍ଡଟି 'ଘୃତକୁଣ୍ଡ' ଥିଲା । କେତେକ କହନ୍ତି, ବ୍ରହ୍ମା ଏଠାରେ ସ୍ନାନ ସନ୍ଧ୍ୟାଦି ନିତ୍ୟକର୍ମ କରୁଥିଲେ । ଏହାର ତଳକୁ ତଳକୁ ପଥର ପାହାଚ ଥାଇ ସର୍ବ ନିମ୍ନରେ ପଥର ଚଟାଣଟିଏ ଅଛି ବୋଲି ଲୋକେ କହନ୍ତି । ଏହା କେତେଦୂର ସତ୍ୟ, ତାହା ଏଯାଏ ସ୍ଥିର ହୋଇନାହିଁ । ଗତ ୧୯୬୩ ମସିହାରେ ଓଡ଼ିଶା ସରକାର ମହୋଦୟ ଏହାର ପଙ୍କୋଦ୍ଧାର ପାଇଁ କୋଡ଼ିଏ ହଜାର ଟଙ୍କା ମଞ୍ଜୁର କରିଥିଲେ । ସେଥିରେ ୩ଫୁଟ ମାତ୍ର ପଙ୍କ ଉଦ୍ଧାର ହୋଇପାରିଲା ଓ ଭଗ୍ନପ୍ରାୟ ପ୍ରାଚୀର କାନ୍ଥଗୁଡିକ ମରାମତି ହୋଇ ପାରିଲା । ବାସ୍ତବିକ ଘଟଣା ଜାଣିବାକୁ ହେଲେ ପ୍ରାୟ ଲକ୍ଷାଧିକ ଟଙ୍କା ବ୍ୟୟ କରିବାକୁ ହେବ ।

ସିଂହଦ୍ୱାରରେ ହାତୀ ଉପରେ ସିଂହ ଥିବାର ପ୍ରମାଣ :—

କୋଣାର୍କ, ଭୁବନେଶ୍ୱର ଓ ଯାଜପୁର ପ୍ରଭୃତି ସ୍ଥାନରେ ମନ୍ଦିର ସମ୍ମୁଖରେ ହାତୀ ଉପରେ ସିଂହ ବଳବିକ୍ରମ ପ୍ରଦର୍ଶନ କରୁଥିବାର ମୂର୍ତ୍ତି ଦେଖାଯାଏ । ବୌଦ୍ଧ ମତରେ ସିଂହ ଉତ୍ତର ଦିଗ ରକ୍ଷକ । ଗଜ ପୂର୍ବଦିଗର

ରକ୍ଷକ । ଯଯାତି କେଶରୀ ଉତ୍ତର ଦେଶ ଅର୍ଥାତ୍ ଛତିଶ ଗଡ଼ର ଉତ୍ତରା-ଞ୍ଚଳରୁ ଆସି ପୂର୍ବଦେଶ ଅର୍ଥାତ୍ ଉତ୍କଳକୁ ଜୟ କରି ସେଠାରେ ଆଧିପତ୍ୟ ବିସ୍ତାର କରିଥିଲେ । ସିଂହ ଯେପରି ଗଜ ପୃଷ୍ଠରେ ବସି ତାର କୁମ୍ଭସ୍ଥଳକୁ ବିଦାରଣ କରେ, ସେହିପରି ଯଯାତିକେଶରୀ ଉତ୍ତରାଞ୍ଚଳ ଗଜକୁ ଜୟ କରି ପୂର୍ବାଞ୍ଚଳ ସିଂହ ଉତ୍କଳ ଜୟର ନିଦର୍ଶନ ସ୍ୱରୂପ ମନ୍ଦିରସମ୍ମୁଖରେ ହାତୀ ଉପରେ ସିଂହ ବିଦ୍ୟମାନ ଥାଇ ଉତ୍କଳୀୟ ରାଜାମାନଙ୍କର ସିଂହ ବିକ୍ରମକୁ ସୂଚିତ କରୁଅଛି । ଏଥିପାଇଁ ଉତ୍କଳ ରାଜାଙ୍କୁ 'ଗଜପତି' ଉପାଧି ଦ୍ୱାରା ଭୂଷିତ କରାଯାଇଅଛି ।

ମନ୍ଦିର ଚୂଡ଼ାରେ 'ଚକ୍ର' ଥିବାର ତାତ୍ପର୍ଯ୍ୟ—

ତତୋଽତିକୋପପୂର୍ଣ୍ଣସ୍ୟ ଚକ୍ରିଣୋ ବଦନାତ୍ ତତଃ ।
ଭ୍ରୂକୁଟି କୁଟିଳାତ୍ତସ୍ୟ ଲଲାଟଫଳକାଦ୍ ଦ୍ରୁତମ୍ ।
ନିଷ୍କ୍ରାନ୍ତାମ ମହତ୍ତେଜୋ.... .... ....( ଚଣ୍ଡି )

ଦେବତାଗଣଙ୍କ କାତର ପ୍ରାର୍ଥନା ଶୁଣି କ୍ଷୀରାର୍ଣ୍ଣବଶାୟୀ ଭଗବାନ୍ ବିଷ୍ଣୁଙ୍କର କ୍ରୋଧଜର୍ଜରିତ ମୁଖମଣ୍ଡଳରୁ ତଥା ଭ୍ରୂକୁଟିକୁଟିଳ ଲଲାଟପଟରୁ ଗୋଟିଏ ଅପ୍ରତିମ ବିଶ୍ୱବ୍ୟାପକ ତେଜ ଆବିର୍ଭୂତ ହେଲା । ତତ୍ ପରେ ଅନ୍ୟ ଦେବତାଙ୍କ ତେଜ ତା' ସହିତ ମିଳିତ ହୋଇ ଗୋଟିଏ ନାରୀ-ମୂର୍ତ୍ତିରେ ପରିଣତ ହେଲା । ଏହି ନାରୀ ମୂର୍ତ୍ତି ବିରଜା, ମଙ୍ଗଳା, ହିଙ୍ଗୁଳା ସାରଳା, ଭଗବତୀ, ଚର୍ଚ୍ଚିକା, ତଥା ଶ୍ୟାମଳେଶ୍ୱରୀ ( ସମଲଈ ) ରୂପରେ ବିଭିନ୍ନ ସ୍ଥାନରେ ପୂଜା ପାଉ ଅଛନ୍ତି । ଏହି ବୈଷ୍ଣବୀ ଶକ୍ତି ଯେଉଁ ମନ୍ଦିରରେ ବିଦ୍ୟମାନ,ସେହି ମନ୍ଦିରର ଚୂଡ଼ାରେ ବିଷ୍ଣୁଙ୍କର ଆୟୁଧ ଶ୍ରେଷ୍ଠ 'ଚକ୍ର' ଚିହ୍ନ ବିଦ୍ୟମାନ । କିନ୍ତୁ ବିରଜାଙ୍କ ଚକ୍ର ମଧ୍ୟରେ ' ଅ, ଉ, ମ୍ ' ମଧ୍ୟରୁ ଅର୍ଦ୍ଧ-ମାତ୍ରା 'ମ୍' ଚନ୍ଦ୍ର ବିନ୍ଦୁ (ଁ) ରୂପରେ ରହିଅଛି, ଯାହାକି "ଅର୍ଦ୍ଧମାତ୍ରା ସ୍ଥିତା ନିତ୍ୟା ଜାନୁଚ୍ଚାର୍ଯ୍ୟା ବିଶେଷତଃ ।" ଅର୍ଥାତ୍ ଏହି ଅର୍ଦ୍ଧମାତ୍ରା ନିତ୍ୟା ଚିର-ନ୍ତନୀ, ସନାତନୀ । ଏହା ପ୍ରଳୟରେ ମଧ୍ୟ ସର୍ବଦା ବିଦ୍ୟମାନ ।

ଏହି ଦେବୀ ବିରଜା ବୈଷ୍ଣବୀ ରୂପରେ, ଜନ୍ମୋତ୍ସବ ଦିନ ସାବିତ୍ରୀ ରୂପରେ, ଷୋଡ଼ଶ ଉପଚାର ପୂଜାରେ ମାହେଶ୍ୱରୀ ରୂପରେ ପୂଜା ପାଆନ୍ତି ।

ମସ୍‌ଜିଦ୍‌—

ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ପ୍ରତିମୂର୍ତ୍ତିର ଉତ୍ତରକୁ ଏସ୍.ଡ଼ି.ଓ. ବାସ-ଭବନର ପଶ୍ଚିମକୁ ବୈତରଣୀ ନଦୀର କୂଳବନ୍ଧ ନିକଟରେ ମୁସଲମାନମାନଙ୍କର ପ୍ରାର୍ଥନାପୀଠ ଦୁଇଟି-ଗମ୍ବୁଜ-ବିଶିଷ୍ଟ ଗୋଟିଏ ମସ୍‌ଜିଦ୍ ଅଛି । ଏହା ଆଉରଙ୍ଗଜେବଙ୍କ ଦ୍ୱାରା ନିର୍ମିତ ବୋଲି ଲୋକ-ମୁଖରୁ ଶୁଣାଯାଏ । ଏଠାରେ ମୁସଲମାନମାନେ ସେମାନଙ୍କ ପର୍ବପର୍ବାଣିରେ 'ନମାଜ' ବା ଆଲ୍ଲାଙ୍କୁ ପ୍ରାର୍ଥନା କରନ୍ତି ।

ଏହାଛଡ଼ା, ଏସ୍.ଡ଼ି.ଓ. ଙ୍କ ହତା ମଧ୍ୟରେ ଗୃହେଟି ପ୍ରକାଣ୍ଡ ପ୍ରସ୍ତର ମୂର୍ତ୍ତି ବିଦ୍ୟମାନ । ଏହାଙ୍କ ଗୃହପାଖରେ ଲୁହାବାଡ଼ ଦିଆଯାଇ ସୁରକ୍ଷିତ କରାଯାଇଅଛି । ସେମାନଙ୍କର ନାମ—(୧) ଚାମୁଣ୍ଡା (୨) ବାରାହୀ (୩) ଇନ୍ଦ୍ରାଣୀ (୪) ପଦ୍ମପାଣି ବା ବୁଦ୍ଧ ମୂର୍ତ୍ତି । ଏମାନେ କଳାପାହାଡ଼ ଦ୍ୱାରା ବିକଳାଙ୍ଗ ।

ଆହୁରି ମଧ୍ୟ କଚେରୀ ସମ୍ମୁଖରେ ପ୍ରଧାନ ରାସ୍ତାର ଦକ୍ଷିଣକୁ ଅବଚ୍ୟ ଦଶସହସ୍ର ବ୍ରାହ୍ମଣ ମାନଙ୍କର ଧର୍ମଶାସ୍ତ୍ର ଚର୍ଚ୍ଚା ପାଇଁ ତଥା ବ୍ୟବସ୍ଥା ଦେବା ପାଇଁ ଗୋଟିଏ ମଣ୍ଡପ ଥିଲା । ତାହାକୁ 'ମୁକ୍ତି ମଣ୍ଡପ' କୁହାଯାଉ ଥିଲା । ହିନ୍ଦୁ ଧର୍ମ ବିଦ୍ୱେଷୀ ଦୁର୍ଦ୍ଦାନ୍ତ କଳାପାହାଡ଼ ଏହାକୁ ଧ୍ୱଂସ କରି ଏଠାରେ ନିଜର ପ୍ରଧାନ ସେନାପତି 'ସୟଦ ଅଲ୍ଲି'ଙ୍କର ସମାଧି ପୀଠ ସ୍ଥାପନ କରି-ଥିବାର ଲୋକ ମୁଖରୁ ଶୁଣାଯାଏ । ଏହାକୁ 'ବଖାରୀ' ସାହେବଙ୍କ ସମାଧି ବୋଲି କେତେକ କହନ୍ତି । ବହୁ ଲୋକ ଏହାଙ୍କ ନିକଟରେ 'ଶିର୍ଣ୍ଣି' ମାନସିକ କରି ନିଜର ଅଭିଳଷିତ କାର୍ଯ୍ୟରେ ସିଦ୍ଧିଲାଭ କରୁଥିବାର ଜଣାଯାଏ ।

ବର୍ତ୍ତମାନ ଏହି ଧର୍ମସଭା ବା ବ୍ୟବସ୍ଥା ସଭା ସନ୍ତମାଧବ ଗ୍ରାମ ମଧ୍ୟ-ସ୍ଥିତ ସନ୍ତେଶ୍ୱର ଶିବଙ୍କ ମଣ୍ଡପ ( ମଣ୍ଡୁଅ ) ଉପରେ ସମାହୃତ ହୁଏ । ଏବେ ମଧ୍ୟ ଯଜମାନ ମାନଙ୍କର କର୍ମ କର୍ମାଣି ଦଶସହସ୍ର ବ୍ରାହ୍ମଣ ମାନଙ୍କ ସମ୍ମାନାର୍ଥେ 'ଦଶସହସ୍ର ମାନ୍ୟ'ର ପ୍ରଚଳନ ଅଛି ।

## ଶିବଙ୍କର ଅଷ୍ଟମୂର୍ତ୍ତି—ଅଷ୍ଟଶମ୍ଭୁ

"ଜଳଂବହ୍ନିସ୍ତଥା ଯଷ୍ଟା ସୂର୍ଯ୍ୟାଚନ୍ଦ୍ରମସୌ ତଥା ।
ଆକାଶୋ ବାୟୁରବନୀ ମୂର୍ତ୍ତୟୋଽଷ୍ଟୌ ପିନାକିନଃ" ॥

ଅଷ୍ଟମୂର୍ତ୍ତିରେ ବିଭକ୍ତ ଶିବ ଏହି କ୍ଷେତ୍ରର ବିଭିନ୍ନ ସ୍ଥାନରେ ବିଭିନ୍ନ ଶିବ ରୂପରେ ଆବିର୍ଭୂତ ହୋଇ ଅଛନ୍ତି । ଶିବଙ୍କର ଅଷ୍ଟମୂର୍ତ୍ତିରେ ଅଷ୍ଟ-ଲୋକପାଳଙ୍କୁ, ଅଷ୍ଟଗ୍ରହଙ୍କୁ (ରାହୁ କେତୁଙ୍କୁ ଏକଗ୍ରହ ବୋଲି ଧରାଯାଇ-ଥିବାରୁ) ଅଷ୍ଟବସୁଙ୍କୁ ଓ ଅଷ୍ଟୈଶ୍ୱର୍ଯ୍ୟଙ୍କୁ ଆରାଧନା କରାଯାଏ । ନିମ୍ନୋକ୍ତ ଶିବଲିଙ୍ଗ ମହାଦେବଙ୍କର ଅଷ୍ଟମୂର୍ତ୍ତି ଧାରଣ କରିଅଛନ୍ତି ।

୧ । ଶିବାୟ ଜଳମୂର୍ତ୍ତୟେ ନମଃ—'ଈଶାନେଶ୍ୱର' ଜଳମୂର୍ତ୍ତିଧାରୀ ଭବ ରୂପୀ ଶିବ ଅଟନ୍ତି ।

୨ । ରୁଦ୍ରାୟ ଅଗ୍ନି ମୂର୍ତ୍ତୟେ ନମଃ— 'ଲୋମହର୍ଷଣେଶ୍ୱର' ଅଗ୍ନିମୂର୍ତ୍ତି-ଧାରୀ ଶିବ ରୂପରେ ପ୍ରତିଷ୍ଠିତ ।

୩ । ପଶୁପତୟେ ଯଜମାନ ମୂର୍ତ୍ତୟେ ନମଃ—'ସିଦ୍ଧେଶ୍ୱର' ଯଜମାନମୟ ପଶୁପତିମୂର୍ତ୍ତି ରୂପରେ ବିଦ୍ୟମାନ ।

୪ । ଈଶାନାୟ ସୂର୍ଯ୍ୟମୂର୍ତ୍ତୟେ ନମଃ—'ତ୍ରିଲୋଚନ' ସୂର୍ଯ୍ୟମୂର୍ତ୍ତିଧାରୀ ଈଶାନ ଅଟନ୍ତି ।

୫ । ମହାଦେବାୟ ସୋମମୂର୍ତ୍ତୟେ ନମଃ— 'ପଦ୍ମେଶ୍ୱର' ଚନ୍ଦ୍ରମୂର୍ତ୍ତି-ଧାରୀ ମହାଦେବ ଅଟନ୍ତି ।

୬ । ଭୀମାୟ ଆକାଶମୂର୍ତ୍ତୟେ ନମଃ— 'ତିଳକେଶ୍ୱର' ଆକାଶମୟ ମୂର୍ତ୍ତି ଭୀମ ଅଟନ୍ତି ।

ତିଳକେଶ୍ୱରଙ୍କର ଇତିବୃତ୍ତ :—

ଏକଦା ଗଣେଶ ସ୍ୱକୀୟ କପୋଳକଣ୍ଡୂ ନିବାରଣ କରିବା ପାଇଁ ବୃକ୍ଷଆଡ଼େ ବୁଲି ବୁଲି ପରିଶ୍ରାନ୍ତ ହେବାରୁ ଶିବ ତାହାଙ୍କୁ ଅତି ସ୍ନେହରେ ଗାଢ଼ ଆଲିଙ୍ଗନ କଲେ । ଏହି ସମୟରେ କାର୍ତ୍ତିକେୟ ଆସି ଗଣେଶଙ୍କ

ମୁଖ ମଣ୍ଡଳରେ ବିଚିତ୍ର ତିଳକ ବା ଚିତା ରଚନା କରିବାରୁ ବ୍ରହ୍ମା ସେହି ଗଣେଶଙ୍କୁ 'ତିଳକେଶ୍ୱର' ନାମରେ ନାମିତ କଲେ । (ବ୍ରଃ ପୁଃ)

୭ । ଉଗ୍ରାୟ ବାୟୁମୂର୍ତ୍ତୟେ ନମଃ—'ପ୍ରାଣାୟାମେଶ୍ୱର' ବାୟୁ ମୂର୍ତ୍ତି-ଧାରୀ ଉଗ୍ର ଅଟନ୍ତି । ଏହାଙ୍କର ଅପର ନାମ ଗର୍ତ୍ତେଶ୍ୱର ଅଟେ ।

ଏହାଙ୍କର ଇତିବୃତ୍ତ:—

ଥରେ ଷଣ୍ଡ ଓ ଅର୍କନାମକ ଅସୁରଦ୍ୱୟ ଶୁକ୍ରାଚାର୍ଯ୍ୟ ଓ ଦେବତାଗଣଙ୍କ କୂଟଚକ୍ରରେ ପଡ଼ି ଅସୁର ଦଳରୁ ବାହାରି ଆସି ବ୍ରହ୍ମାଙ୍କ ଆଦେଶରେ ଭୂତଳରେ ଥିବା ବିରଜାକ୍ଷେତ୍ରକୁ ଆସିଲେ, ଯେଉଁଠାରେ ଶିବ ବାୟୁରୂପରେ ଅବସ୍ଥାନ କରୁଥିଲେ । ସେଠାରେ ଅସୁର ଦୁହେଁ ଧ୍ୟାନ ଧାରଣାଦି ଅଷ୍ଟାଙ୍ଗ ଯୋଗଦ୍ୱାରା ଯୋଗସାଧନ କଲେ । ସେ ଦୁହିଁଙ୍କର ଦୃଢ଼ ପ୍ରାଣାୟାମ ବଳରେ ପୃଥିବୀ ତଳକୁ ଖସିଗଲା । ସେଥିରେ ଶିବ ଓ ଅସୁରଦ୍ୱୟ ମଧ୍ୟ ତଳକୁ ପଶି-ଗଲେ । ସେହି ଦିନଠାରୁ ଶିବ 'ଗର୍ତ୍ତେଶ୍ୱର' ବା 'ପ୍ରାଣାୟାମେଶ୍ୱର' ନାମରେ ଖ୍ୟାତ ହେଲେ । ଏହି ଚମ୍ପାବାଗ ବା ଚମ୍ପାମଣ୍ଡେଇ ଗ୍ରାମର 'ପାରଦାରେଶ୍ୱର' ପଶ୍ଚିମରେ ଅବସ୍ଥିତ ।

୮ । ଶର୍ବାୟ କ୍ଷିତି ମୂର୍ତ୍ତୟେ ନମଃ--'ଆଖଣ୍ଡଳେଶ୍ୱର' କ୍ଷିତି ମୂର୍ତ୍ତିଧାରୀ 'ଶର୍ବ' ରୂପରେ ଅବତୀର୍ଣ୍ଣ ହୋଇ ଅଛନ୍ତି ।

( ଶ୍ଳୋକ ଅନୁସାରେ ଏମାନଙ୍କ ରୂପ ବର୍ଣ୍ଣନା କରାଯାଇ ଅଛି । )

ଏହିମାନେ ଅଷ୍ଟଶମ୍ଭୁ--ଯଥା--ତ୍ରିଲୋଚନ, ପଦ୍ମେଶ୍ୱର, ପ୍ରାଣାୟା-ମେଶ୍ୱର, ଈଶାନେଶ୍ୱର, ଲୋମହର୍ଷଣେଶ୍ୱର, ସିଦ୍ଧେଶ୍ୱର, ଆଖଣ୍ଡଳେଶ୍ୱର ଓ ତିଳକେଶ୍ୱର ।

ପଞ୍ଚାନନ ବା ପଞ୍ଚମୁଖ ବିଶିଷ୍ଟ ଶିବ ଶୀତଳେଶ୍ୱର ଗ୍ରାମରେ ଅବସ୍ଥିତ ।

ଏହାଙ୍କର ଚାରିଦିଗକୁ ଚାରିମୁଖ ଓ ଊର୍ଦ୍ଧ୍ୱକୁ ଏକମୁଖ । ନିମ୍ନରେ ପଞ୍ଚମୁଖର ଧ୍ୟାନ ଦିଆଗଲା ।

ପଶ୍ଚିମ ମୁଖଟି ଶୁକ୍ଳବର୍ଣ୍ଣ । ଏହି ମୁଖକୁ 'ସଦ୍ୟୋଜାତ' ମନ୍ତ୍ରରେ ପୂଜା କରାଯାଏ ।

ଧ୍ୟାନଂ– ପ୍ରାଲେୟାଚଳ ସିନ୍ଧୁକୁନ୍ଦ ଧବଳଂ ଗୋକ୍ଷୀର ଫେନ ପ୍ରଭଂ
ଭସ୍ମାଭ୍ୟଙ୍ଗ ମନଙ୍ଗ ଦେହ ଦହନଂ ଜ୍ୱାଳାବଳୀ ଲୋଚନମ୍ ।
ବ୍ରହ୍ମେନ୍ଦ୍ରାଦି ମରୁଦ୍ ଗଣୈଃ ସ୍ତୁତିପରୈରଭ୍ୟର୍ଚ୍ଚିତଂ ଯୋଗିଭିଃ
ବନ୍ଦେଽହଂ ସକଳଂ କଳଙ୍କ ରହିତଂ ଶମ୍ଭୋର୍ମୁଖଂ ପଶ୍ଚିମମ୍ ॥

ଉତ୍ତର ମୁଖ ପୀତବର୍ଣ୍ଣ । ଏହି ମୁଖକୁ ବାମଦେବାୟ ନମଃ ମନ୍ତ୍ରରେ ପୂଜା କରାଯାଏ ।

ଧ୍ୟାନଂ– ଗୌରଂ କୁଙ୍କୁମପିଞ୍ଜରଂ ସୁତିଲକଂ ବ୍ୟାପାଣ୍ଡୁ ଗଣ୍ଡସ୍ଥଳଂ
ଭ୍ରୂବିକ୍ଷେପ କଟାକ୍ଷ ବୀକ୍ଷଣ ଲସତ୍ ସଂସକ୍ତ କର୍ଣ୍ଣୋତ୍ପଳମ୍ ।
ସ୍ନିଗ୍ଧଦ୍ ବିମ୍ବଫଳାଦ୍ଧ ହାସିତତନୁଂ ନୀଳାକଲ୍ଲଳ ବୃତଂ
ବନ୍ଦେ ପୂର୍ଣ୍ଣଶଶାଙ୍କ ମଣ୍ଡଳନିଭଂ ବକ୍ତ୍ରଂ ହରସ୍ୟୋତ୍ତରମ୍ ।

ପୂର୍ବ ମୁଖ ରକ୍ତବର୍ଣ୍ଣ । ଏହି ମୁଖକୁ "ତତ୍ ପୁରୁଷାୟ ବିଦ୍ମହେ ମହାଦେବାୟ ଧୀମହି (୩) ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍" ମନ୍ତ୍ରରେ ପୂଜା କରାଯାଏ ।

ଧ୍ୟାନଂ– ସମ୍ୱର୍ତ୍ତାଗ୍ନି ତଡିତ୍ ପ୍ରଦୀପ୍ତ କଲସତ୍ ପ୍ରଧ୍ୱସ୍ତ ନେତ୍ରାରୁଣ-
ବାଳେନ୍ଦୁ ଦ୍ୟୁତିମିଶ୍ରିତୋଗ୍ରଦଶନ ପ୍ରୋଦ୍ଭାସି ଦାମୋଦରମ୍ ।
ଅର୍ଦ୍ଧେନ୍ଦୁ ଦ୍ୟୁତି ଲୋଳ ପିଙ୍ଗଳ ଜଟାଭାରଂ ପ୍ରବୃଦ୍ଧାରବଂ
ବନ୍ଦେ ସିଦ୍ଧ ସୁରାସୁରେନ୍ଦ୍ର ନମିତଂ ପୂର୍ବଂ ମୁଖଂ ଶୂଳିନଃ ॥

ଦକ୍ଷିଣ ମୁଖ କୃଷ୍ଣବର୍ଣ୍ଣ । ଏହି ମୁଖକୁ ଅଘୋର ମନ୍ତ୍ରରେ ପୂଜା କରାଯାଏ ।

ଧ୍ୟାନଂ– କାଳାଭ୍ର ଭ୍ରମରାଞ୍ଜନ ଦ୍ୟୁତିନିଭଂ ବ୍ୟାବୃତ୍ତ ପିଙ୍ଗେକ୍ଷଣଂ
ଗମ୍ଭୀର ଦ୍ୟୁତି ମିଶ୍ରିତୋଗ୍ରଦଶନ ପ୍ରୋଦ୍ଭାସି ଦଂଷ୍ଟ୍ରାଙ୍କୁରମ୍ ।
ସର୍ପପ୍ରୋତ କପାଳ ଶୁକ୍ତି ସକଳ ବ୍ୟାକୀର୍ଣ୍ଣମାଶେଖରଂ
ବନ୍ଦେ ଦକ୍ଷିଣମୀଶ୍ୱରସ୍ୟ ବରଦଂ ଭ୍ରୂଭଙ୍ଗୀ ରୌଦ୍ରଂ ମୁଖମ୍ ॥

ସର୍ବୋପରି ଶିବଙ୍କର ଊର୍ଦ୍ଧ୍ୱ ମୁଖ ସର୍ବବର୍ଣ୍ଣ ସମ୍ବଳିତ ବଚିତ୍ର ବର୍ଣ୍ଣ । ଏହି ମୁଖକୁ "ଈଶାନଃ ସର୍ବବିଦ୍ୟାନାମୀଶ୍ୱରଃ" ଏହି ମନ୍ତ୍ରରେ ପୂଜା କରାଯାଏ ।

**ଧ୍ୟାନଂ**— ବ୍ୟକ୍ତାବ୍ୟକ୍ତଗୁଣୋତ୍ତରଂ ଚ ପରମଂ ଷଟ୍ତ୍ରିଂଶତତ୍ତ୍ୱାତ୍ମକଂ ।
ତସ୍ମାଦୁତ୍ତମତତ୍ତ୍ୱମକ୍ଷରମିତି ଧ୍ୟେୟଂ ସଦା ଯୋଗିଭିଃ ।
ବନ୍ଦେ ତାମସବର୍ଜିତେନ ମନସା ସୂକ୍ଷ୍ମାତି ସୂକ୍ଷ୍ମାତ୍ ପରଂ ।
ଶାନ୍ତଂ ପଞ୍ଚମ ମୀଶ୍ୱରସ୍ୟ ବଦନଂ ଖବ୍ୟାପ୍ତତେଜୋମୟମ୍ ॥

## ବିରଜା ପଞ୍ଜିକା—

ପୁରୀ ମୁକ୍ତି ମଣ୍ଡପ ପଣ୍ଡିତ ସଭା ଦ୍ୱାରା ଅନୁମୋଦିତ ଖଡ଼ିରତ୍ନ ପଞ୍ଜିକା ପରି ଏହି ବିରଜାମଣ୍ଡଳରୁ ବିରଜା ପଞ୍ଜିକା ପ୍ରତିବର୍ଷ ଦୋଳ ପୂର୍ଣ୍ଣିମା ପୂର୍ବରୁ ଖଡ଼ିରତ୍ନ ୰ ଗୌରଙ୍ଗ ଚରଣ ମହାପାତ୍ରଙ୍କ ପୌତ୍ର ଶ୍ରୀ ଗଦାଧର ମହାପାତ୍ର ଓ ବାଲେଶ୍ୱର ଜିଲ୍ଲା ନିବାସୀ ଗ୍ରାମବାସୀ ଶ୍ରୀ ମାର୍କଣ୍ଡେୟ ଖଡ଼ି-ରତ୍ନଙ୍କ ଦ୍ୱାରା ବିଶୁଦ୍ଧ ଭାବରେ ପ୍ରକାଶିତ ହୁଏ । ଏହା ବହୁ ସ୍ଥାନରେ ଆଦୃତ ଓ ପ୍ରଚଳିତ ହୋଇଅଛି । ଏହା ଅଧିକ୍ୟ ବିରଜା ମନ୍ଦିର ପରି-ଚ୍ଛଳକଙ୍କ ଆନୁକୂଲ୍ୟରେ ବିରଜା ମଣ୍ଡଳ ପଣ୍ଡିତ ସଭାରେ ଅନୁମୋଦିତ ହୁଏ ।

## ଚୌଧୁରୀ ଙ୍କୀଉ—

ଆକବରଙ୍କ ଅମଳରେ ବଙ୍ଗ ଦେଶର କୃଷକମାନଙ୍କ ଠାରୁ କର ଆଦାୟ କରିବା ପାଇଁ ଜଣେ ସୁବାଦାର ନିଯୁକ୍ତ ହୋଇଥିଲେ । ଏମାନେ କ୍ରମେ ଭୂସ୍ୱାମୀ ପାଲଟି ଗଲେ । ଏହି ସମୟରୁ 'ସୁବାଦାର' ପଦର ସୃଷ୍ଟି । ଏହି ସମୟରେ ଜମିଦାରମାନେ ରାଷ୍ଟ୍ରର ମାଲିକମାନଙ୍କୁ କର ଦେଉଥିଲେ । ଏହି ଜମିଦାର ମାନେ ଗ୍ରାମର ପ୍ରଧାନ ବ୍ୟକ୍ତିଙ୍କୁ 'ମକଦ୍ଦମ' ବା 'ଚୌଧୁରୀ' ପଦବୀ ଦେଉଥିଲେ । ଏମାନେ ଜମିଦାରଙ୍କ ପାଇଁ ଗ୍ରାମ-ମାନଙ୍କରୁ ଖଜଣା ଆଦାୟ କରୁଥିଲେ । ଏମାନେ କାଳକ୍ରମେ ଭୂସ୍ୱାମୀରେ ପରିଣତ ହେଲେ । ଏବେ ମଧ୍ୟ ବହୁସ୍ଥାନରେ ଏହି ଚୌଧୁରୀ, ମକଦ୍ଦମ ଉପାଧିଧାରୀ ଜମିଦାର ବାସ କରୁଅଛନ୍ତି । ଜମିଦାରୀ ଲୋପ ହେବାଠାରୁ ଏମାନେ କେବଳ ନାମତଃ ଅଛନ୍ତି । ଏମାନଙ୍କର କାର୍ଯ୍ୟ ଆଉ ନାହିଁ । ଏହା

ଛଡ଼ା ମରହଟ୍ଟାଙ୍କ ରାଜତ୍ୱ କାଳରେ ପାଇକରାୟ, ରଣସିଂହ, କଦମ୍ବାସିଂହ, ଉତ୍ତରକବାଟ, ଦକ୍ଷିଣକବାଟ, ପ୍ରହରାଜ, ମଙ୍ଗରାଜ, ବାହୁବଳୀପତି ପ୍ରଭୃତି ରାଜଦତ୍ତ ଉପାଧିରେ ଭୂଷିତ ହୋଇ ବହୁବ୍ୟକ୍ତି ବାସ କରୁଅଛନ୍ତି । ଏମାନଙ୍କର ଗୁଣ କର୍ମ ଅନୁସାରେ ଏମାନଙ୍କୁ ସ୍ୱ ସ୍ୱ କର୍ମରେ ସମୁତ୍ସାହିତ କରିବାପାଇଁ ଏହି ଉପାଧି ମାନ ଦିଆଯାଉଥିଲା ।

ଏହି ଚୌଧୁରୀ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥପ୍ରତି ଲକ୍ଷ୍ୟଦେଲେ ଜଣାଯାଏ ଯେ, ଚାରୋଟି 'ଧୁର' ଅର୍ଥାତ୍ 'ଭାର' ସେମାନେ ବହନ କରୁଥିଲେ । ପ୍ରଥମେ ପ୍ରଜାମାନଙ୍କ ଠାରୁ ରାଜକର ଆଦାୟ କରିବା, ଦ୍ୱିତୀୟରେ ସଂଗୃହୀତ କରକୁ ଯଥା ସମୟରେ ରାଜ କୋଷରେ ଜମାଦେବା, ତୃତୀୟରେ ପ୍ରଜାମାନଙ୍କର ଭଲ, ମନ୍ଦ, ହାନି, ଲାଭ ପ୍ରତି ଦୃଷ୍ଟି ଦେବା, ଚତୁର୍ଥରେ ପ୍ରଜାମାନଙ୍କୁ ଏକତା ବଦ୍ଧ କରି ରଖିବା ଏହି ଚାରୋଟି ଭାରକୁ ବହନ କରି ସୁଚାରୁରୂପେ କାର୍ଯ୍ୟ କରୁଥିବାରୁ 'ଚୌଧୁରୀ' ଉପାଧି ଦିଆଯାଉଥିଲା !

ଏହି ସମୟରେ ୧୭୫୧ ମସିହା ଠାରୁ ୧୮୦୩ ପର୍ଯ୍ୟନ୍ତ ଏହି ମରହଟ୍ଟାମାନଙ୍କ ଶାସନ କାଳରେ ଭୋଗମାଧବ (ଡାକନାମ ବହୁଡ଼ି) ଗ୍ରାମରେ ଗୋବିନ୍ଦ ଖାଁଉଙ୍କର ମନ୍ଦିର ବିଦ୍ୟମାନ ଥିଲା ବୋଲି ଶୁଣାଯାଏ । ମରହଟ୍ଟାଙ୍କର ପ୍ରତିନିଧି ରଘୁଜୀ ଭୋନ୍‌ସଲ ଓ ଶମ୍ଭୁଜୀ ଭୋନ୍‌ସଲ୍ ଗୌରାଙ୍ଗ ରାୟ ନାମକ ଗୃହତ୍ୟାଗୀ ଗୋଟିଏ ଦରିଦ୍ର ବ୍ୟକ୍ତିର କାର୍ଯ୍ୟକଳାପ, ସ୍ୱଭାବ, ଚରିତ୍ରରେ ସନ୍ତୁଷ୍ଟ ହୋଇ ତାହାକୁ ସୁବାଦାର ପଦରେ ନିଯୁକ୍ତ କଲେ । ସେହି କାଳକଟି ଥିଲା ଗୋଟିଏ ଦରିଦ୍ର ବିଧବାର ପୁଅ । ମାଆର ତାଡ଼ନାରେ ସେ ଗୃହତ୍ୟାଗ କରି ଇତସ୍ତତଃ ଭ୍ରମଣ କରୁଥିଲା । ଭାଗ୍ୟ ଅନୁକୂଳ ହେଲେ ଅସାଧ୍ୟ କାର୍ଯ୍ୟ ସିଦ୍ଧ ହୁଏ । ଏ ଦିନେ ସୁବା ହେବ ଏହା ସ୍ୱପ୍ନରେ କେହି ଭାବିନଥିଲେ । ସୁବା କହିଲେ ଆଜିକାର ଅଞ୍ଚଳାଧିକାରୀ ବା ମଣ୍ଡଳାଧୀଶଙ୍କୁ ବୁଝାଏ । ସମଗ୍ର ଯାଜପୁରର ସେ ଅଖଣ୍ଡ ଶାସକ ହୋଇଥିଲେ । ସେତେବେଳେ ଯାଜପୁର ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ 'ସୋର' ଇନ୍ଦୁପୁର ପର୍ଯ୍ୟନ୍ତ ବୃନ୍ଦାବାଳାଠାରୁ ବଡ଼ଚଣା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ବିଶାଳ ମଣ୍ଡଳର ଅଧୀଶ୍ୱର ହୋଇ ଆସିବା ବେଳେ ସେ ମଥୁରାରୁ କଳା

ମୁଗୁନି ନିର୍ମିତ ସୁନ୍ଦର ସୁଠାମ ଓ ସୁଚିକ୍କଣ ଗୋବିନ୍ଦମୂର୍ତ୍ତିକୁ ନେଇ କରି ହାତୀ ଉପରେ ପାଟଛତା ତଳେ ବସାଇ ନିଜେ ଗୋଟିଏ ହାତୀରେ ବସି ଧମ୍‌ସା, ଡକ୍କା, ତୁରୀ, ମହୁରୀ ପ୍ରଭୃତି ବାଦ୍ୟଘୋଷରେ ଚତୁର୍ଦ୍ଦିଗ ବିକମ୍ପିତ କରି ଯାଜପୁରରେ ଆସି ପହଞ୍ଚିଲେ । ଗୌରାଙ୍ଗ ସୁବା ହୋଇ ଆସିବା କଥା କାହାରିକୁ ଅଜଣା ରହିଲା ନାହିଁ । ଏହି ସମ୍ବାଦ ତାଙ୍କ ମାଆଙ୍କୁ ଦେବାରୁ ସେ ପ୍ରଥମେ ଏ କଥାକୁ ଓ ନିଜକୁ ବିଶ୍ୱାସ କରିପାରିଲେ ନାହିଁ । ଯାହାହେଉ, ସୁବା ଏଠାକୁ ଆସି ପ୍ରଥମେ ସୁନ୍ଦର ସୁଦୃଢ଼ ପ୍ରସ୍ତର ଦ୍ୱାରା ମନ୍ଦିରଟିଏ ନିର୍ମାଣ କରାଇ ତହିଁରେ ଗୋବିନ୍ଦଜୀଉଙ୍କୁ ଓ ତୈଜସ ପ୍ରତିମା ଶ୍ରୀମତୀ ରାଧାରାଣୀଙ୍କୁ ପ୍ରତିଷ୍ଠା କରାଇ ସ୍ଥାପନ କଲେ । ଜୀଉଙ୍କର ଦୈନିକ ନୀତି ପାଇଁ ବର୍ଷର ୩୬୫ ଦିନକୁ ୩୬୫ଟି ପାଟଣା ଖଞ୍ଜି ଦେଇ-ଥିଲେ । ଗୋଟିଏ ପାଟଣାର ବାର୍ଷିକ ଆୟ ଗୋଟିଏ ଦିନରେ ଜୀଉଙ୍କ ସେବାରେ ଖର୍ଚ୍ଚ ହେଉଥିଲା । ସେବାରେ ଯାବତୀୟ ଉପକରଣ ଯୋଗାଇବା ପାଇଁ ଖଟଣୀଦାରଙ୍କୁ ନିଷ୍କର ଜାଏଗିର ଭୂସମ୍ପତ୍ତି ଖଞ୍ଜି ଦିଆଯାଇଥିଲା । ଦୋଳ ପୂର୍ଣ୍ଣିମା ପୂର୍ବଦିନ ଅର୍ଥାତ୍ ଚତୁର୍ଦ୍ଦଶୀ ଗୌଡ଼ଦୋଳଦିନ ଜୀଉ ନଗର ପରିକ୍ରମା କରୁଥିଲେ । ଫୁଲଝାଡ଼ି, ମସାଲସିଢ଼ି, ମସାଲ, ଢୋଲ, ତୁରୀ, ମହୁରୀ, ତାଳ, ମୃଦଙ୍ଗ, ସଂକୀର୍ତ୍ତନ ପ୍ରଭୃତି ବାଦ୍ୟବାଜଣାରେ ନଗର କମ୍ପି ଉଠୁଥିଲା । ଶହ ଶହ ଲୋକ ଜୀଉଙ୍କ ଶୋଭାଯାତ୍ରାରେ ଯୋଗ ଦେଉ-ଥିଲେ । ସ୍ୱତନ୍ତ୍ର ଭାବରେ ତାଙ୍କର ଅଭିର ଜୁଆଚନ୍ଦନ ଅତର ପ୍ରଭୃତି ସୁବାସିତ ଦ୍ରବ୍ୟରେ ପ୍ରସ୍ତୁତହୋଇ ଦେଖଣାହାରୀଙ୍କର ସର୍ବାଙ୍ଗରେ ତାହା ଲୋକ ବୋଳି ଦେଉଥିଲେ । ଏହା ଜନଶ୍ରୁତିରୁ ଜଣାପଡ଼େ । କିନ୍ତୁ କାଳର କରାଳ କବଳରୁ କେହି ମୁକ୍ତି ପାଇ ପାରିନାହାନ୍ତି ; ମନୁଷ୍ୟମାନଙ୍କ ଭାଗ୍ୟ ସହିତ ଦେବତାଙ୍କର ଅବସ୍ଥା ମଧ୍ୟ ପରିବର୍ତ୍ତିତ ହୋଇଥାଏ । କ୍ରମେ କ୍ରମେ ଜୀଉଙ୍କର ସେବାରେ ନାନା ବିଘ୍ନ ସୃଷ୍ଟି ହେଲା । ସୁବାଙ୍କର ଅବସାନ ପରେ ତାଙ୍କର ଉତ୍ତରାଧିକାରୀମାନେ କ୍ରମେ କ୍ରମେ ବିଳାସ ବ୍ୟସନରେ ଆସକ୍ତ ରହି ଭ୍ରଷ୍ଟାଚାରୀ ହୋଇ ବୃତ୍ତି ବାଡ଼ି ହସ୍ତାନ୍ତର କରିବାକୁ ଲାଗିଲେ । ଜୀଉଙ୍କର ଶେଷ ଦାୟାଦ କମନ୍ତ ସ୍ୱେଚ୍ଛାଚାରୀ ହୋଇ ସମସ୍ତ ସମ୍ପତ୍ତିକୁ ବିକି କରିବା ପରେ ଚନ୍ଦନ ପୋଖରୀରୁ, ଉଦ୍ୟାନ ପ୍ରଭୃତିରୁ ପଥର ଖୋଳି ବିକ୍ରି କଲେ । ନୀତି ମଧ୍ୟ ହ୍ରାସ ପାଇଲା । ଏଇ କେତେବର୍ଷ ହେଲା ଶ୍ରୀମତୀ ରାଧାରାଣୀଙ୍କୁ

କୌଣସି ଦୁର୍ବୃତ୍ତ ଚୋରେଇ ନେଇ ଥିବାରୁ ହୋଲାରେ ଜୀଉଙ୍କର ସାଧାରଣ ନଗର ପରିକ୍ରମା ବନ୍ଦ ହୋଇଗଲା। ମଠମନ୍ଦିର ଅଭାବରୁ ମନ୍ଦିର କ୍ରମେ ଶ୍ରୀହୀନ ହୋଇଗଲାଣି। ଏହାଙ୍କର ପୂର୍ବଗୌରବ ଫେରିବା ସୁଦୂର ପରାହତ ପରି ମନେହୁଏ।

ଜୀଉଙ୍କ ସମ୍ବନ୍ଧରେ ଆଉ ଗୋଟିଏ କମ୍ବଦନ୍ତୀ ଶୁଣାଯାଏ। ଗୌରାଙ୍ଗ ନିରୁଦ୍ଦିଷ୍ଟ ହୋଇଥିବା ସମୟରେ ଧର୍ମପରାୟଣା ଗୌରାଙ୍ଗଙ୍କ ମା ଧାନକୁଟି ପରଘରେ ନାନା ଖିଦମତ ବା କାମଧନ୍ଦା କରି ଉଦର ପୋଷଣ କରୁଥିଲେ। ଦିନେ ରାତିରେ ଜଣେ ସାଧୁ ତାଙ୍କର ଦ୍ୱାରସ୍ଥ ହୋଇ ସେଠାରେ ରାତିକ ରହିବାପାଇଁ ଅନୁରୋଧ କଲେ। ଗୃହକର୍ତ୍ତ୍ରୀ ନିଜର ଦୈନ୍ୟ ପ୍ରକାଶ କରିବାରୁ ସାଧୁ ନିଜ ଭିକ୍ଷାଲବ୍ଧ ଅରୁଆ ଚାଉଳ କିଛି ରନ୍ଧନ କରିବାକୁ ଦେଲେ। ବିଧବା ତାହା ଶୁଦ୍ଧ ପୂତ ଭାବରେ ରନ୍ଧନ କରି ସାଧୁଙ୍କୁ ଭୋଜନ ପାଇଁ ଦେବାରୁ ସାଧୁ ନିଜ ଥଳୀରୁ ଗୋବିନ୍ଦ ଜୀଉ ପ୍ରତିମାଙ୍କୁ ବାହାର କରି ଏହି ସିଦ୍ଧାନ୍ନକୁ ନୈବେଦ୍ୟ ରୂପରେ ଅର୍ପଣ କରି ପ୍ରସାଦକୁ ବିଧବାଙ୍କ ସହିତ ସ୍ୱୟଂ ସେବା କଲେ। ବିଧବା ସାଧୁଙ୍କର ସତ୍କାର କରି ନପାରି ଥିବାରୁ ମନ ଦୁଃଖେ ରାତି ଯାପନ କଲେ। ଭକ୍ତପ୍ରିୟ ମାଧବ କାହିଁକି କେଜାଣି ସକାଳେ ଏତେ ଭାରି ହେଲେ ଯେ ସାଧୁ ତାଙ୍କୁ ନେବାକୁ ଅସମର୍ଥ ହେଲେ। ତେଣୁ ସାଧୁ ବିଧବାଙ୍କୁ ଡାକି କହିଲେ—ମା, ଇଏ କାହିଁକି ତୋ ଭିଟାଛାଡ଼ି ଯିବାକୁ ମନ କରୁନାହାନ୍ତି। ନେ, ଏହାଙ୍କୁ ରଖ। ଦୈନିକ ଯାହା ଖାଇବୁ ତାହା ଜୀଉଙ୍କୁ ଅର୍ପଣ କରି ଖାଇବୁ। ସିଦ୍ଧ ଅନ୍ନ ନ ମିଳିଲେ ଆମାନ୍ନ (ଧୁଆ ଅରୂଆ ଚାଉଳ) ଗଣ୍ଡିଏ ଭୋଗ ଦେବୁ। ଏହା କହି ସାଧୁ ବାଟ ଧଇଲେ। ଗୋବିନ୍ଦ ବୁଢୀକୁଟୀରରେ ଆଶ୍ରୟ ନେଲେ। ଗୌରାଙ୍ଗ ସୁବାହୋଇ ଆସିବା ପରେ ଜୀଉଙ୍କର ସମସ୍ତ ପରିବର୍ତ୍ତନ ଘଟିଲା। ଆଉ ଗୋଟିଏ କଥା— ଗୌରାଙ୍ଗ ଅନପତ୍ୟ ଥିବାରୁ ଦିନେ ମନ ଦୁଃଖରେ ଶୋଇ ରାତିରେ ସ୍ୱପ୍ନରେ ଦେଖିଲେ ଯେ ଜୀଉ ପୁତ୍ରପରି ତାଙ୍କର ସମସ୍ତ କାର୍ଯ୍ୟ ସମ୍ପାଦନ କରିବେ ବୋଲି କହୁଛନ୍ତି। ଏଣୁ ପ୍ରତିବର୍ଷ ହୋଲି ପୂର୍ଣ୍ଣିମାଦିନ ନଗର ପରିକ୍ରମାରୁ ଫେରି ମେଷ ଗୃହ ( ମେଣ୍ଢାଘର ) ଦାହ ପରେ ମନ୍ଦିର ମଧ୍ୟରେ ଗୌରାଙ୍ଗଙ୍କ ଉଦ୍ଦେଶ୍ୟରେ ଜୀଉ ଶ୍ରାଦ୍ଧ ଦିଅନ୍ତି। ଶ୍ରାଦ୍ଧୋପକରଣ ମନ୍ଦିର ମଧ୍ୟରେ ରଖା-

ଯାଇ କିଛି ସମୟ ମନ୍ଦିର ଦ୍ୱାର ବନ୍ଦ କରାଯାଏ । ତତ୍ପରେ ଦ୍ୱାର ମୁକ୍ତକରି ଶ୍ରାଦ୍ଧୀୟ ସାମଗ୍ରୀକୁ ବ୍ରାହ୍ମଣଙ୍କୁ ଅର୍ପଣ କରାଯାଏ । ହିନ୍ଦୁଧର୍ମର ମୂଳ ହିଁ ବିଶ୍ୱାସ ।

## ବିରଜା ମନ୍ଦିର ନିର୍ମାଣ ବିଷୟରେ ଇତିବୃତ୍ତ—

ମହାଭାରତ ଯୁଦ୍ଧ ପ୍ରାୟ ଖ୍ରୀ:ପୂ: ଦୁଇ ହଜାର ବର୍ଷ ତଳର ଘଟଣା । ଏହି ମହାଭାରତ ଯୁଦ୍ଧ ଓ ମହାଭାରତ ରଚନା ପୂର୍ବରୁ ଆର୍ଯ୍ୟମାନେ ଓଡ଼ିଶାରେ ବସତି ସ୍ଥାପନ କରିଥିଲେ । ଏଥିରେ କୌଣସି ସନ୍ଦେହ ନାହିଁ । କାରଣ ଏହି ମହାଭାରତ ଯୁଦ୍ଧକୁ ତଦାନୀନ୍ତନ କଳିଙ୍ଗ ରାଜା ଶତାୟୁ ନିଜର ତିନିପୁତ୍ର ଭାନୁମାନ୍, କେତୁମାନ୍, ଓ ଶୁକଦେବଙ୍କ ସହିତ ସୈନ୍ୟ, ରଥ, ଗଜ ପଠାଇ ଥିବା କଥା ଇତିହାସରୁ ଜଣାଯାଏ ।

ବ୍ରହ୍ମାଙ୍କର ଗାର୍ହପତ୍ୟ ଯଜ୍ଞକୁଣ୍ଡରେ ବିରଜାଙ୍କର ଆବିର୍ଭାବ ତଥା ତତ୍ପୂର୍ବର ଈଶାନେଶ୍ୱରଙ୍କ ଉତ୍ପତ୍ତି ବିଷୟ ବ୍ରହ୍ମାଣ୍ଡ ପୁରାଣ ଅନୁସାରେ ନିରାଟ ସତ୍ୟ । ଏହା ମହାଭାରତ ପୂର୍ବ ଘଟଣା, ଏ ବିଷୟ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି । କିନ୍ତୁ ଏହି ଦେବୀ କେଉଁଠାରେ ପ୍ରତିଷ୍ଠିତ ହୋଇ ଅବସ୍ଥାପିତ ହୋଇଥିଲେ, ତାହାର କୌଣସି ତଥ୍ୟ ମିଳେ ନାହିଁ । ବ୍ରହ୍ମା ବିରଜା-ଦେବୀଙ୍କ ମନ୍ଦିର ନିର୍ମାଣ କରି ନଥିଲେ କି କରାଇ ନଥିଲେ, ଏହା ଧ୍ରୁବ ସତ୍ୟ । ଖ୍ରୀ:ପୂ: ୨୦୦୦ ବର୍ଷଠାରୁ ଖ୍ରୀ ପୂ. ୩୬୦ ପର୍ଯ୍ୟନ୍ତ କଳିଙ୍ଗରେ କେଉଁ କେଉଁ ରାଜା ରାଜତ୍ୱ କରୁଥିଲେ, ତାହାର ଠିକ ପ୍ରମାଣ ମିଳେନାହିଁ । ଖ୍ରୀ.ପୂ. ୩୬୦ ଠାରୁ ଖ୍ରୀ.ପୂ. ୩୨୨ପର୍ଯ୍ୟନ୍ତ ନନ୍ଦବଂଶ ରାଜତ୍ୱ କରୁଥିଲେ । ଚାଣକ୍ୟଙ୍କ କୂଟମନ୍ତ୍ର ବଳରେ ନନ୍ଦବଂଶ ଧ୍ୱଂସ ହେବା ପରେ ଖ୍ରୀ.ପୂ. ୩୨୦ ଠାରୁ ୨୨୦ ପର୍ଯ୍ୟନ୍ତ ମୌର୍ଯ୍ୟବଂଶ ରାଜତ୍ୱ କରୁଥିଲେ । ମୌର୍ଯ୍ୟବଂଶର ଶେଷ ରାଜା ଅଶୋକ ବୌଦ୍ଧ ଧର୍ମାବଲମ୍ବୀ ଥାଇ ଏହି ଧର୍ମ ପ୍ରଚାର କରିବା ପାଇଁ ନିଜର ପୁତ୍ର କନ୍ୟାଙ୍କୁ ସିଂହଳ ( ସିଲୋନ ) ଓ ଜାପାନ ପ୍ରଭୃତି ଭାରତ ବାହାର ଦେଶମାନଙ୍କୁ ପଠାଇଥିଲେ । ଅଶୋକ କଳିଙ୍ଗ ବିଜୟ ପରେ ଖ୍ରୀ.ପୂ ୨୫୬ ଅବ୍ଦରେ ଉତ୍ତରାଞ୍ଚଳରୁ ବହୁତ ଶୁଦ୍ଧପୂତ ବ୍ରାହ୍ମଣ ଓଡ଼ିଶାକୁ ଆସିଥିଲେ । ଖ୍ରୀ.ପୂ. ୨୨୦ ଠାରୁ ୧ମ ଶତାବ୍ଦୀ ପର୍ଯ୍ୟନ୍ତ ଚୈତ୍ରବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ।

ଆନ୍ଧ୍ରମାନଙ୍କ ରାଜତ୍ୱ କାଳରେ କିଛିକାଳ କଳିଙ୍ଗ ଗୁପ୍ତ ସାମ୍ରାଜ୍ୟ ଅଧୀନରେ ଥିଲା । ଏହି ସମୟରେ ନାଗାର୍ଜ୍ଜୁନ ନାମକ ଜଣେ ବୌଦ୍ଧ-ସନ୍ନ୍ୟାସୀ ବୌଦ୍ଧ ଧର୍ମ ପ୍ରଚାର କରି ହଜାର ହଜାର ଲୋକଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ । ଏମାନେ ବୌଦ୍ଧଧର୍ମାବଲମ୍ବୀ ଥିବାରୁ ଏମାନଙ୍କ ଅମଳରେ ବିରଜା ମନ୍ଦିର ହେବା ଅସମ୍ଭବ । ଖ୍ରୀ. ୫୨୦ ଠାରୁ ୧୦୪୨ ପର୍ଯ୍ୟନ୍ତ କେଶରୀ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଏହି ବଂଶର ପ୍ରଥମ ରାଜା ଯଯାତି କେଶରୀଙ୍କ ପିତା ଜନ୍ମେଜୟ ଚୌଦ୍ୱାରରେ ରାଜଧାନୀ ନିର୍ମାଣ କରିଥିଲେ । ସେ ଯାଜପୁରକୁ ବିଶେଷ ପସନ୍ଦ କରୁ ନଥିଲେ । ତତ୍ ପରେ ତାଙ୍କ ପୁଅ ଯଯାତି କେଶରୀ ପୁଣ୍ୟତୋୟା ବୈତରଣୀ କୂଳରେ ଅବସ୍ଥିତ ଯାଜପୁରକୁ ଅତି ଉତ୍କୃଷ୍ଟ ସ୍ଥାନ ମନେକରି ସେଠାରେ ରାଜଧାନୀ ନିର୍ମାଣ କରାଇଥିଲେ । ଗ୍ରନ୍ଥ ମଧ୍ୟରେ ଏହା ବିଶଦ ଭାବରେ ବର୍ଣ୍ଣନା କରା-ଯାଇଅଛି । ଏହାଙ୍କ ରାଜତ୍ୱ କାଳରେ ଅର୍ଥାତ୍ ଷଷ୍ଠ ଶତାବ୍ଦୀରେ ଯଜ୍ଞାଦି କ୍ରିୟାନୁଷ୍ଠାନ କରିବା ପାଇଁ କାନ୍ୟକୁବ୍ଜରୁ ଦଶ ସହସ୍ର ବ୍ରାହ୍ମଣ ଅଣାଇ ଦଶାଶ୍ୱମେଧ ଯଜ୍ଞ କରାଇଥିଲେ । ରାଜା ଶୈବ ଧର୍ମାବଲମ୍ବୀ ଥିବାରୁ ଶିବ ଓ ଶକ୍ତି ଉଭୟଙ୍କର ଉପାସକ ଥିଲେ ।

ଏଣୁ ଶିବ-ଶକ୍ତିର ଉପାସକ ଯଯାତି କେଶରୀ ଖ୍ରୀ. ୫୯୮ ଅର୍ଥାତ୍ ଷଷ୍ଠ ଶତାବ୍ଦୀ ମଧ୍ୟରେ ବିରଜା ମନ୍ଦିର ନିର୍ମାଣ କରାଇଥିଲେ ବୋଲି ଅନୁ-ମାନ କରାଯାଏ । କେଶରୀ ବଂଶ ରାଜତ୍ୱ ପରେ ଖ୍ରୀ. ୧୦୪୨ ଠାରୁ ୧୪୩୫ ପର୍ଯ୍ୟନ୍ତ କଳିଙ୍ଗରେ ଗଙ୍ଗ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଏହି ବଂଶର ଶ୍ରେଷ୍ଠ ରାଜା ଲାଙ୍ଗୁଳା ନରସିଂହ ଦେବ, ଅନଙ୍ଗଭୀମ ଦେବ ଓ ଚୋଡ଼ଗଙ୍ଗଦେବ ଅଟନ୍ତି । ମର୍କତ କେଶରୀ କଟକରେ କାଠଯୋଡ଼ି ପଥରବନ୍ଧ, ବାରବାଟୀ ଦୁର୍ଗ, ପୁରୀ, କୋଣାର୍କ, ଭୁବନେଶ୍ୱର ପ୍ରଭୃତି ସ୍ଥାନରେ ବହୁ ଦେବଦେବୀ ମନ୍ଦିର ନିର୍ମାଣ କରାଇଥିଲେ । ଖ୍ରୀ. ୧୪୩୫ ଠାରୁ ୧୫୩୪ ପର୍ଯ୍ୟନ୍ତ ସୂର୍ଯ୍ୟ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଏହି ବଂଶର ରାଜା କପିଳେନ୍ଦ୍ରଦେବ ସାରା ଜୀବନକୁ ଯୁଦ୍ଧରେ ଓ ଦେଶ ଜୟ କରିବା ଦିଗରେ କଟାଇଥିଲେ । ଏହାଙ୍କର ପରବର୍ତ୍ତୀ ରାଜା ପୁରୁଷୋତ୍ତମ ଦେବ ବିଦ୍ୟାଚର୍ଚ୍ଚା, ଭ୍ରାତୃବିବାଦ, କାଞ୍ଚୀ ବିଜୟରେ ଜୀବନ ଅତିବାହିତ କରି-ଅଛନ୍ତି । ଏହାଙ୍କ ପର ରାଜା ପ୍ରତାପରୁଦ୍ରଦେବଙ୍କ ରାଜତ୍ୱ ସମୟରେ

କଳିଙ୍ଗ ବିଧର୍ମୀ ମୁସଲମାନଙ୍କ ଦ୍ୱାରା ଅଧିକୃତ ହେଲା । ଖ୍ରୀ. ୧୫୩୪ ଠାରୁ ୧୫୬୮ ପର୍ଯ୍ୟନ୍ତ ମୁସଲମାନମାନେ ବାରମ୍ବାର ଏହି ଦେଶକୁ ଆକ୍ରମଣ କରିବାରୁ କଳିଙ୍ଗର ସ୍ୱାଧୀନତା କ୍ରମେ କ୍ରମେ ହ୍ରାସ ପାଇବାକୁ ଲାଗିଲା । ଖ୍ରୀ.୧୫୬୮ରେ ପ୍ରତାପ ରୁଦ୍ରଦେବଙ୍କ ପରବର୍ତ୍ତୀ ରାଜା ମୁକୁନ୍ଦଦେବଙ୍କ ସହିତ କଳାପାହାଡ଼ର ଘୋର ଯୁଦ୍ଧ ହୋଇଥିଲା । ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଧାମନଗର ନିକଟବର୍ତ୍ତୀ 'ଗୋହିରାଟିକିରି' ଠାରେ ମୁକୁନ୍ଦଦେବ କଳାପାହାଡ଼ ଦ୍ୱାରା ନିହତ ହେଲେ ଓ ଏହାଙ୍କ ସଙ୍ଗେ ଉତ୍କଳର ସ୍ୱାଧୀନତା ସମ୍ପୂର୍ଣ୍ଣ ଲୋପ ପାଇଲା । ଏହି ସମୟରେ ଧର୍ମବିଦ୍ୱେଷୀ ଦୁର୍ବୃତ୍ତ କଳାପାହାଡ଼ ବିଜୟ ଗୌରବରେ ଉନ୍ମତ୍ତ ହୋଇ ଉତ୍କଳର ପ୍ରାଚୀନ କୀର୍ତ୍ତି ମଣ୍ଡିତ ଦେବ-ଦେବୀ ମନ୍ଦିରମାନଙ୍କୁ ଭାଙ୍ଗି ଦେବଦେବୀଙ୍କୁ ବିକଳାଙ୍ଗ କରିବାରେ ବଦ୍ଧ-ପରିକର ହେଲା । ଏଣୁ ସମଗ୍ର ଉତ୍କଳର ଦେବଦେବୀ ପ୍ରାୟ ବିକଳାଙ୍ଗ । ସେହି ସମୟରୁ ବହୁଲିଙ୍ଗ ସ୍ଥାନଚ୍ୟୁତ ହୋଇ ଏଣେ ତେଣେ ପଡ଼ିଥିବାର ଦେଖାଯାଏ । ମା' ବିରଜା ମଧ୍ୟ ତାହାର କବଳରୁ ରକ୍ଷା ପାଇ ନାହାନ୍ତି । ତାଙ୍କୁ ଗୋଟିଏ ବାପିରେ ମଧ୍ୟରେ ନିକ୍ଷେପ କରିଥିବାର ସୂଚନା ପୂଜକ ବ୍ରାହ୍ମଣମାନେ ପାଇ ତହିଁରୁ ଉଦ୍ଧାର କରାନେଇ କଲଶପୁରରେ ସ୍ଥାପନ କଲେ । ଏ ପର୍ଯ୍ୟନ୍ତ କଲଶପୁରରେ ଠାକୁରାଣୀଙ୍କ ଅସ୍ଥାନ ଅଛି । ଏଠାରେ ବିରଜାଙ୍କ ପୂଜକମାନେ ବାସ କରନ୍ତି । ଠାକୁରାଣୀ କଲଶପୁରରେ ଥିବା ସମୟରେ ମୂଳ ସିଂହାସନରେ ଦେବୀଙ୍କ ଦ୍ରବ୍ୟନିଧି ପୂଜା ପାଉଥିଲେ । ଖ୍ରୀ ୧୫୬୮ଠାରୁ ମୁସଲମାନ ରାଜତ୍ୱର ଅବସାନ ଘଟିବାରୁ ଏହି ଯାଜପୁରର ନରହରିପୁର ଶାସନ ନିବାସୀ ପଣ୍ଡିତ ୮ ତ୍ର୍ୟମ୍ବକ ଅଗ୍ନିହୋତ୍ରୀ ନାମକ ଜଣେ ପ୍ରସିଦ୍ଧ ବୈଦିକ ଓ ତାନ୍ତ୍ରିକ ପଣ୍ଡିତଙ୍କ ଆନୁକୂଲ୍ୟରେ ଦେବୀଙ୍କୁ କଲଶପୁରରୁ ଆଣି ମୂଳ ସିଂହାସନରେ ପୁନଃ ପ୍ରତିଷ୍ଠିତ କଲେ ।

ଏହି କଳାପାହାଡ଼ କେତେକ ଦେବଦେବୀଙ୍କୁ ନଦୀ ଗର୍ଭରେ, କେତେକଙ୍କୁ ପୁଷ୍କରିଣୀ ବା କୂପ ମଧ୍ୟରେ ନିକ୍ଷେପ କରିଥିବାରୁ କେବଳ ସେମାନଙ୍କର ନାମ ମାତ୍ର ଅଛି । ଏବେ ମଧ୍ୟ କୌଣସି କୌଣସି କୂପ ତଡ଼ାଗାଦିରୁ ମୂର୍ତ୍ତି-ମାନ ଉଦ୍ଧାର କରାଯାଉଥିବାର ଦେଖାଯାଏ । ତୀର୍ଥଗୁଡ଼ିକର ମଧ୍ୟ ପୂର୍ଣ୍ଣ ପରିଚୟ ମିଳୁନାହିଁ । ବିରଜା ମନ୍ଦିର- ମୁଖଶାଳାର କେତେକ ଅଂଶ

ସ୍ଥାନୀୟ ବିଖ୍ୟାତ ଜମିଦାର ୰ନରସିଂହ ଚୌଧୁରୀଙ୍କ ପୂର୍ବ ପୁରୁଷ ୰ସୁଦର୍ଶନ ମହାପାତ୍ର ମରାମତି କରାଇଥିବାର କେତେକ କାଗଜପତ୍ର ମିଳିଥିଲା ବୋଲି ସେଠାକାର ଲୋକେ କହନ୍ତି । ଏହି ବିରଜା ମନ୍ଦିରର ଉଚ୍ଚତା ଫୁ୨୦, ୭ଇଞ୍ଚ, ଅର୍ଥାତ୍ ହା୪୭ତ । ସିଂହଦ୍ୱାରର ଦଶଇଞ୍ଚ ଚଉଡ଼ାର ସୁଦୃଢ଼ କଳା ମୁଗୁନି ପଥର ନିର୍ମିତ ବନ୍ଧ ତହିଁରେ ଅଙ୍କିତକଳା କାରୁକାର୍ଯ୍ୟ ପ୍ରାଚୀନକାଳର ସ୍ଥାପତ୍ୟକୁ ଜୀବନ୍ତ କରୁଅଛି । ସେଥିରେ ଲତା, ପତ୍ର, ପୁଷ୍ପ ଏପରି ଭାବରେ ଖୋଦିତ ହୋଇଛି, ଯାହା ପରିଷ୍କାର ଭାବେ ବର୍ତ୍ତମାନ ସୁଦ୍ଧା ପରିସ୍ଫୁଟ । ବନ୍ଧ କଡ଼ରେ ଦୁଇଟି ନାଗ ଫଣିଗୁ ରୂପେ ମୋଡ଼ି ମୋଡ଼ି ହୋଇ ତଳୁ ଉପରକୁ ଗତି କରିଛନ୍ତି । ଏମାନଙ୍କ ଦେହର 'କାନ୍ତି' ଚିତ୍ତାକର୍ଷକ, ଯାହା ଦେଖି ଯାତ୍ରୀ ତଥା ଶିଳ୍ପିମାନେ ବିସ୍ମିତ ହୁଅନ୍ତି । ଏପରି ବନ୍ଧ ଅନ୍ୟତ୍ର ଦେଖାଯାଏ ନାହିଁ ।

**ବେଢା ନିର୍ମାଣ**— ବିରଜା ମନ୍ଦିର ନିର୍ମାଣ ହେବା ସମୟରେ ବେଢ଼ା ନିର୍ମାଣ ହୋଇ ନ ଥିଲା । ଏହା ପ୍ରାୟ ୭୦।୮୦ ବର୍ଷ ତଳେ ୰ଭିକାରୀ ଦାସ ନାମକ ଜଣେ ସାଧୁ ମୂର୍ତ୍ତି ଭିକ୍ଷା କରି ଓ ବଦାନ୍ୟ ବ୍ୟକ୍ତିଙ୍କ ଠାରୁ କିଛି କିଛି ଚାନ୍ଦା ସଂଗ୍ରହ କରି ବେଢ଼ା ନିର୍ମାଣ କରାଇ ଅଛନ୍ତି । ଏଥିରେ ଲାଗିଥିବା କେତେକ ପଥର ଗୋବିନ୍ଦ ଜଉଙ୍କ ପରିତ୍ୟକ୍ତ କମାନେ ବ୍ୟବହୃତ କରିଥିଲେ ବୋଲି ଲୋକେ କହନ୍ତି ।

ଖ୍ରୀ: ୧୫୬୮ ଠାରୁ ୧୭୫୧ ପର୍ଯ୍ୟନ୍ତ କଳିଙ୍ଗ ମୋଗଲମାନଙ୍କ ଅଧୀନରେ ଥିଲା । ଖ୍ରୀ ୧୭୫୧ ଠାରୁ ୧୮୦୩ ପର୍ଯ୍ୟନ୍ତ ମରହଟ୍ଟାମାନେ କଳିଙ୍ଗରେ ରାଜତ୍ୱ ବିସ୍ତାର କରିଥିଲେ । ଏହାଙ୍କ ଅମଳରେ ବହୁଡ଼ର ୰ ଶୈରୀଙ୍କ ରାୟ ସୁବାଦାର ହୋଇ ଗୋବିନ୍ଦ ଜଉଙ୍କୁ ପ୍ରତିଷ୍ଠା କରିଥିଲେ । ଆହୁରି ମଧ୍ୟ ଏହାଙ୍କ ରାଜତ୍ୱରେ ଜଗନ୍ନାଥ ମନ୍ଦିର ଯାଜପୁରରେ ନିର୍ମିତ ହୋଇଥିବାର ଲୋକ ମୁଖରୁ ଶୁଣାଯାଏ । ଖ୍ରୀ ୧୮୦୩ ଠାରୁ ୧୯୪୭ ପର୍ଯ୍ୟନ୍ତ ଓଡ଼ିଶା ସମେତ ସମଗ୍ର ଭାରତ ଇଂରେଜଙ୍କ ଅଧୀନସ୍ଥ ହେଲା । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ତଥା ଅହିଂସା ଆନ୍ଦୋଳନ ଫଳରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖଠାରୁ ଦେଶ ସ୍ୱାଧୀନତା ଲାଭ କରିଅଛି ।

ଏହି ବିରଜାମନ୍ଦିରର ମଧ୍ୟରେ ଥିବା ଚଣ୍ଡି ମଣ୍ଡପ ଜମିଦାର ୰ ନରସିଂହ ଚୌଧୁରୀ ନିର୍ମାଣ କରାଇଥିଲେ । ଅନନ୍ତର ମଧ୍ୟ ୧୯୬୫-୬୬ ମଧ୍ୟରେ ବିରଜା ମନ୍ଦିର ଟ୍ରଷ୍ଟି (ପରିଚାଳକ) ସବ୍ ଡିଭିଜନାଲ ମାଜିଷ୍ଟ୍ରେଟ ( ଯାଜପୁର S.D.O. ) ସ୍ୱନାମଧନ୍ୟ ଲୋକପ୍ରିୟ ଧର୍ମପ୍ରାଣ, ମନ୍ଦିର ସୁପରିଚାଳକ ଶ୍ରୀଯୁକ୍ତ ରଘୁନାଥ ମିଶ୍ର O.A.S. ମହୋଦୟଙ୍କ ଆନୁକୂଲ୍ୟରେ ମନ୍ଦିର ଚଟାଣ, କାନ୍ଥର କେତେକ ଅଂଶ, ନାଭିଗୟା ମନ୍ଦିରର ଚଟାଣ ଓ କାନ୍ଥ,ଚଣ୍ଡି ମଣ୍ଡପ, ବଳି ମଣ୍ଡପ, ନାଭିଗୟାର ବହିର୍ମଣ୍ଡପ ବାରନ୍ଦି ତ, ମସୃଣ ଶ୍ୱେତ ମର୍ମର ( ମାର୍ବଲ ) ପ୍ରସ୍ତର ଦ୍ୱାରା ନିର୍ମାଣ କରାଇ ଅକ୍ଷୟ କୀର୍ତ୍ତି ଅର୍ଜନ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କର ପ୍ରିୟପାତ୍ର ଓ ପ୍ରାତଃ ସ୍ମରଣୀୟ ହୋଇ ପାରିଛନ୍ତି । ଏ ମହାଶୟଙ୍କ ତତ୍ତ୍ୱାବଧାନରେ ମନ୍ଦିରର ପରିଚାଳନା ଦେବୀଙ୍କର ନିତ୍ୟ ପୂଜା ତଥା ପର୍ବ ସମ୍ବନ୍ଧୀୟ ପୂଜା ସୁରୁଖୁରୁ ରୂପେ ନିର୍ବାହିତ ହେଉଥିଲା ଓ ହେଉଅଛି ।

## ଅଷ୍ଟତୀର୍ଥ—

ବାରୁଣେ ବାଜମେଧାଖ୍ୟେ ତୀର୍ଥ ଦ୍ୱାରେଽସ୍ଥି ସଙ୍କ୍ଷକେ ।
ନାରାୟଣାଖ୍ୟେ ଗଙ୍ଗାଖ୍ୟେ ସିଦ୍ଧେ ବେଣ୍ୟାଂ ନରଃ ଶୁଚିଃ
କୃତ୍ୱାଷ୍ଟତୀର୍ଥଂ ବିଧିବତ୍ ଅଶ୍ୱମେଧ ଫଳଂ ଲଭେତ ।
ନୃତ୍ୟୋମଷ୍ଟସୁତୀର୍ଥେଷୁ ଶ୍ରଦ୍ଧା ଭକ୍ତିମତାଂ ତଥା ।
ତର୍ପଣଂ ପିଣ୍ଡଦାନଂଚ ଦାତବ୍ୟଂ ଦ୍ୱିଜଭୋଜନମ୍ ॥

(କ. ସ. ୯୧.୯୨)

ଅର୍ଥାତ୍ ଶ୍ରଦ୍ଧାବାନ୍ ଭକ୍ତ ପବିତ୍ର ବ୍ୟକ୍ତିମାନେ ଶୁଦ୍ଧପୂତ ମନରେ ଯଥାବିଧି ଆଠୋଟି ତୀର୍ଥରେ ଅର୍ଥାତ୍—(୧) ବରୁଣେଶ୍ୱରଙ୍କ ନିକଟବର୍ତ୍ତୀ ବରୁଣ ତୀର୍ଥରେ,(୨) ଅଶ୍ୱମେଧ ତୀର୍ଥରେ,(୩) ତୀର୍ଥ ଦ୍ୱାରରେ (କ୍ଷେତ୍ରଦ୍ୱାର) ବରାହଙ୍କ ପୂର୍ବରେ, (୪) ଅସ୍ଥି କ୍ଷେପଣ ତୀର୍ଥରେ, [ସିଦ୍ଧେଶ୍ୱରଙ୍କର ଉତ୍ତର ପାର୍ଶ୍ୱସ୍ଥ ବୈତରଣୀ (ତୀରରେ) (୫) ନାରାୟଣ ତୀର୍ଥରେ ( କଲ୍ଲଭୀ ଘାଟ ବୈତରଣୀରେ ) (୬)ଗଙ୍ଗା ତୀର୍ଥରେ (ଗଙ୍ଗେଶ୍ୱରଙ୍କ ପାଖ ବୈତରଣୀରେ (୭) ସିଦ୍ଧ ତୀର୍ଥରେ (ସିଦ୍ଧେଶ୍ୱରଙ୍କ ନିକଟ) (୮) ବେ । ତୀର୍ଥରେ (ସିଦ୍ଧେ-

ଶ୍ୱରଙ୍କ ବାୟୁ କୋଣରେ ବୈତରଣୀରେ ) ଏହି ଅଷ୍ଟ ତୀର୍ଥରେ ସ୍ନାନ, ତର୍ପଣ, ପିଣ୍ଡଦାନ କରି ବ୍ରାହ୍ମଣ ଭୋଜନ କରାଇଲେ ଅଶ୍ୱମେଧ ଯଜ୍ଞର ଫଳ ଲାଭ କରନ୍ତି ।

## ଗ୍ରନ୍ଥ ସାଙ୍ଗ—

ଇତିହାସ ତଥା ପୁରାଣ ପ୍ରସିଦ୍ଧ ଏହି ବିଶାଳ ' ଯାଜପୁର କ୍ଷେତ୍ର-ପରିକ୍ରମା ' ନାମକ ଗ୍ରନ୍ଥଟିଏ ଲେଖିବାକୁ ଖୁବ ସାହସର ସହିତ ଅଗ୍ରସର ହେଲି ସତ । କିନ୍ତୁ, ଏହା ଲେଖିବା ମୋପରି ଜଣେ ସ୍ୱଳ୍ପମତି ପଣ୍ଡିତଂ ମନ୍ୟ ବ୍ୟକ୍ତି ପକ୍ଷରେ ' ପ୍ରାଂଶୁ ଲଭ୍ୟେ ଫଳେ ଲୋଭାଦୁଦ୍‌ବାହୁରିବ ବାମନଃ" ଭଳି ନିତାନ୍ତ ଅସମ୍ଭବ । କାରଣ ଏହାର ମହିମା ଅବର୍ଣ୍ଣନୀୟ । ଏହା ମଧ୍ୟରେ ନାନା ଦୋଷ ତ୍ରୁଟି ରହିଥିବା ସ୍ୱାଭାବିକ । କେବଳ "ନାହିଁ ମାମୁଁ ଠାରୁ କଣାମାମୁଁ ଭଲ" ଏହି ଢଙ୍ଗରେ ଯେଉଁଠାରୁ ଯାହା ଖୁଣ୍ଟି ସାଉଁଟି ପାଇଛି ତାହାକୁ ସମ୍ବଳ ତଥା ପାଥେୟ କରି ନିଜର ଯଥାଯଥ ଜ୍ଞାନ ବୁଦ୍ଧି ଅନୁସାରେ ଲିପିବଦ୍ଧ କରିଛି । ଧର୍ମଜ୍ଞ, ଶାସ୍ତ୍ରଜ୍ଞ, ପୁରାଣବିତ୍, ତନ୍ତ୍ରତନ୍ତ୍ରଜ୍ଞ ତଥା ତୀର୍ଥତତ୍ତ୍ୱ ବିଶାରଦ ଯେକୌଣସି ବ୍ୟକ୍ତି ମୋତେ ଏହାର ତ୍ରୁଟିପାଇଁ ସ୍ୱଗୁଣରେ କ୍ଷମାଦେବା ସଙ୍ଗେ ସଙ୍ଗେ ଯଦି ଆଉକିଛି ଉପଦେଶାତ୍ମକ ତଥ୍ୟ ପ୍ରଦାନ କରନ୍ତି, ତେବେ ମୁଁ ତାହାଙ୍କ ନିକଟରେ ନତମସ୍ତକ ଭାବରେ ଚିର କୃତଜ୍ଞ ରହିବି ।

ଏହି ଦେଶ ସଦାଗ୍ରହୀ, ସଂସ୍କୃତି, ଦାନ, ଧର୍ମ, ପରୋପକାର ତଥା ପୂଜ୍ୟ ପୂଜାତ୍ମକ ଆଧ୍ୟାତ୍ମିକ ସମ୍ପଦ ଉପରେ ପ୍ରତିଷ୍ଠିତ । ଏହାରି ମାଧ୍ୟମରେ ମାନବର ମାନବିକତା ବିକାଶ ଲାଭ କରିଛି, କରୁଛି ଓ କରୁଥିବ । ଏଣୁ-

" ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ॥ "

ଓଁ ସହନା ବବତୁ ସହନୌ ଭୁନକ୍ତୁ ସହବୀର୍ଯ୍ୟଂ କରବାବହୈ ।
ତେଜସ୍ୱି ନାବଧୀତମସ୍ତୁ ମା ବିଦ୍ୱିଷାବହୈ ।
ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ ॥

ଅର୍ଥାତ୍—ହେ ବ୍ରହ୍ମ ସନାତନ ! ଆମ୍ଭମାନଙ୍କୁ ସମାନ ଭାବରେ ପାଳନ କରନ୍ତୁ । ଆମକୁ ଏକତ୍ର ସମାନ ଭାବରେ ଫଳ ଭୋଗ କରାନ୍ତୁ । ସମାନ ଅର୍ଥାତ୍ ତୁଲ୍ୟରୂପେ ଆମ୍ଭେମାନେ ଯେପରି ବଳବୀର୍ଯ୍ୟ ସାମର୍ଥ୍ୟ ଲାଭ କରିବୁ, ସେ ସମ୍ବନ୍ଧରେ ଆଶୀର୍ବାଦ କରନ୍ତୁ । ଆମ୍ଭମାନଙ୍କର ବୈଷୟିକ କର୍ମ ଅଧିକ ବୀର୍ଯ୍ୟଶାଳୀ ତଥା ଶକ୍ତି ସମ୍ପନ୍ନ ହେଉ । ଆମ୍ଭେମାନେ ଯେପରି ପରସ୍ପର ଅସହଯୋଗ ବା ପ୍ରମାଦ ବଶତଃ ବିଦ୍ୱେଷଯୁକ୍ତ ନ ହେବୁ, ଆମକୁ ସେହିପରି ଆଶିଷ ଦାନ କରନ୍ତୁ । ଆଧ୍ୟାତ୍ମିକ, ଆଧିଦୈବିକ ତଥା ଆଧିଭୌତିକ ତ୍ରିବିଧ ବିଘ୍ନର ବିନାଶ ଘଟି ଶାନ୍ତି ପ୍ରତିଷ୍ଠିତ ହେଉ । ଇତିଶମ୍

ବିନୀତ
ଗ୍ରନ୍ଥକାର

ଗ୍ରନ୍ଥାରମ୍ଭ—୧୫ । ୧ । ୭୭
ଗ୍ରନ୍ଥସମାପ୍ତି—୩୧ । ୮ । ୭୭

**ଶ୍ରୀ ବୈକୁଣ୍ଠ ଚରଣ ଦାଶ**

ମୁଦ୍ରଣ—କଲ୍ୟାଣ ପ୍ରେସ୍, କଲ୍ୟାଣ ନଗର କଟକ–୩